ପ୍ରାଚୀଗ୍ରନ୍ଥମାଳା — ପ୍ରଥମ

# ବିଦଗ୍ଧ-ଚିନ୍ତାମଣି

ଅଭିମନ୍ୟୁ

୧

ଉତ୍କଳ ବିଶ୍ୱବିଦ୍ୟାଳୟ

An

Authenticated Edition

of

# VIDAGDHA-CHINTAMONI

by

**Abhimanyu Samantasinhar**

Edited with different reading, introduction

and notes by Late Dr. A. B. Mohanti, M. A. D. Litt.

## PART I

# ବିଦଗ୍ଧ-ଚିନ୍ତାମଣି

ରସିକଭକ୍ତ କବିବର ଅଭିମନ୍ୟୁ ସାମନ୍ତସିଂହାର ବିରଚିତ

## ପ୍ରଥମ-ଖଣ୍ଡ

ବିଶୁଦ୍ଧ ସଂସ୍କରଣ

ଚତୁର୍ଥ ମୁଦ୍ରଣ

ବହୁପାଠ, ମୁଖବନ୍ଧ ଓ ଟୀକା ସହ

ରେଭେନ୍ସା କଲେଜର ଭୂତପୂର୍ବ ଅଧ୍ୟାପକ

୬ ଡଃ. ଆର୍ତ୍ତବଲ୍ଲଭ ମହାନ୍ତି, ଏମ୍. ଏ. ଡି. ଲିଟ୍‌ଙ୍କ ଦ୍ୱାରା

ସଙ୍କଳିତ ଓ ପ୍ରକାଶିତ

1965

ମୂଲ୍ୟ ଟ ୩.୦୦

# ମୁଖବନ୍ଧ

ପ୍ରାୟ ଦୁଇ ବର୍ଷ ପୂର୍ବେ ବହୁ ବନ୍ଧୁଙ୍କ ଅନୁରୋଧରେ କଲେଜର କେମିଷ୍ଟ୍ରୀ ପ୍ରଫେସର ଶ୍ରୀମାନ୍ ବାବୁ ଗୁରୁଚରଣ ମହାନ୍ତି, ଏମ୍. ଏସ୍‌ସି. ଓ ମୋର ପ୍ରିୟ ଛାତ୍ର ଶ୍ରୀମାନ୍ ଜଗଦାନନ୍ଦଙ୍କ ସାହଚର୍ଯ୍ୟରେ "ବିଦଗ୍ଧ-ଚିନ୍ତାମଣି"ର ଟୀକା କରିବାରେ ପ୍ରବୃତ୍ତ ହେଲି । ଗୌରୀଶଙ୍କରଙ୍କ ସଙ୍କଳିତ ଗ୍ରନ୍ଥ ଓ ହରେକୃଷ୍ଣ ଦାସଙ୍କ ପ୍ରକାଶିତ ଗ୍ରନ୍ଥ ଦୁଇଖଣ୍ଡ ନେଇ କାର୍ଯ୍ୟ ଆରମ୍ଭ କରିଥିଲି । ସ୍ଥାନ ବିଶେଷରେ ଟୀକା କରିବାକୁ ବିଶେଷ ଶ୍ରମସ୍ୱୀକାର କରିବାକୁ ପଡ଼ିଥିଲା । ଏହିପରି ୩୪ ଛାନ୍ଦ ପର୍ଯ୍ୟନ୍ତ ଯଥାତଥା ଟୀକା କରି ଚାଲିଲି । କିନ୍ତୁ ବିବିଧର ମୂଳପାଠର ଶୁଦ୍ଧତା ପ୍ରତି ମୋର ସନ୍ଦେହ ଥାଏ । ହରେକୃଷ୍ଣ ଦାସଙ୍କ ଦ୍ୱାରା ପ୍ରକାଶିତ ଗ୍ରନ୍ଥଟି କିନ୍ତୁ ଗୌରୀଶଙ୍କରଙ୍କ ଗ୍ରନ୍ଥର ଅବିକଳ ନକଲ ମାତ୍ର । ତେଣୁ ଏହାକୁ ମୋତେ ବହୁପୂର୍ବରୁ ପରିହାର କରିବାକୁ ପଡ଼ିଥିଲା । ଇତିମଧ୍ୟରେ ମୋର ପ୍ରିୟଛାତ୍ର ଶ୍ରୀମାନ୍ କରୁଣାକର କର, ଏମ୍. ଏ. କାବ୍ୟ-ବ୍ୟାକରଣ-ତୀର୍ଥ ମୋର ଟୀକା କରିବା ସମୟରେ ଆସି ଉପସ୍ଥିତ ହୋଇଥିଲେ ଏବଂ ସ୍ଥଳବିଶେଷରେ ଟୀକାର ପୂର୍ବାପର ଅସଙ୍ଗତି ଦୃଷ୍ଟିରେ ମୁଁ ତାଳପତ୍ର ପୋଥି ସଂଗ୍ରହ କରିବାର ପ୍ରସ୍ତାବ କରନ୍ତେ, ବାବୁ କରୁଣାକର ସ୍ୱଗ୍ରାମରୁ ଖଣ୍ଡିଏ ପୋଥି ଆଣି ମୋତେ ଦେଇଥିଲେ । ସେ ପୋଥିର ପାଠ ସଙ୍ଗେ ଗୌରୀଶଙ୍କରଙ୍କ ମୁଦ୍ରିତ ପୁସ୍ତକର ପାଠମାନ ମିଳାଇ ଦେଖିବାରେ ମୁଦ୍ରିତ ଗ୍ରନ୍ଥର କେତେକ ପାଠ ଅପପାଠରୂପେ ପ୍ରତୀତ ହେଲା । ପ୍ରାପ୍ତ ପୋଥିରେ ସ୍ଥଳେ ସ୍ଥଳେ ପ୍ରମାଦ ଦେଖି ସେଥିରେ ମଧ୍ୟ ଆସ୍ଥା ସ୍ଥାପନ ନ କରି ଅନ୍ୟାନ୍ୟ ସ୍ଥାନମାନଙ୍କରୁ ପୋଥି ସଂଗ୍ରହ କରି ଆଦୌ ଗ୍ରନ୍ଥର ଶୁଦ୍ଧ ପାଠ ନିର୍ଣ୍ଣୟରେ ପ୍ରବୃତ୍ତ ହେଲି । ବହୁ ଚେଷ୍ଟା, ପ୍ରୟାସ, ଖୋସାମଦ ବଲ୍ମଦରେ ଭିନ୍ନ ଭିନ୍ନ ସ୍ଥାନରୁ ନଅ ଖଣ୍ଡ ପୋଥି ସଂଗ୍ରହ କଲି । ଏହି ନଅ ଖଣ୍ଡ ଓ ଗୌରୀଶଙ୍କରଙ୍କ ମୁଦ୍ରିତ ଗ୍ରନ୍ଥ, ଏହିରୂପେ ଦଶ ଖଣ୍ଡ ପୋଥି ମିଳାଇ ଶୁଦ୍ଧ ପାଠ ସଙ୍କଳନ କରିଅଛି ବୋଲି ମୋର ବିଶ୍ୱାସ । ବିଚାରଶୀଳ ପାଠକବୃନ୍ଦ ମୋର ଏହି ଗ୍ରନ୍ଥ ପାଠ କଲେ ଉକ୍ତିର ସମୀଚୀନତା ଜାଣି ପାରିବେ । ବର୍ତ୍ତମାନ ପୋଥିମାନଙ୍କ ପରିଚୟ ଓ ସେମାନଙ୍କ ଶୁଦ୍ଧତା ବିଷୟରେ ପଦେ ଅଧେ କହିବା ଯୁକ୍ତ ମନେ କରେ ।

ପ୍ରଥମ ପୋଥିକଥା କୁହା ହୋଇଅଛି । ତାହା 'କ' ପୋଥିରୂପେ ଗୃହୀତ । ଦ୍ୱିତୀୟ ପୋଥି ରାୟ ବାହାଦୂର ଶ୍ରୀଯୁକ୍ତ ରାଜକିଶୋର ଦାସଙ୍କଠାରୁ ପ୍ରାପ୍ତ । ତାହା 'ଖ' ରୂପେ ପଠିତ । ଉପରୋକ୍ତ ପୋଥି ଦୁଇଖଣ୍ଡ ପ୍ରାୟ ସମାନ କହିଲେ ଚଳେ । ସ୍ଥାନବିଶେଷରେ ପାଠର ଯାହା ବୈସାଦୃଶ୍ୟ ଅଛି, ତାହା ସାମାନ୍ୟ । ଶୁଦ୍ଧତା ବିଷୟରେ ପୋଥିଦ୍ୱୟ ମଧ୍ୟମ ଶ୍ରେଣୀୟ । ତୃତୀୟ ପୋଥି ଯାହା 'ଗ' ରୂପେ ଗୃହୀତ, ତାହା ରାୟ ବାହାଦୂର ଶ୍ରୀଯୁକ୍ତ ଦୟାନିଧି ଦାସଙ୍କ ଭାଗବତ ଗାଦିରୁ ଆନୀତ । ଏ ପୋଥି ମଧ୍ୟ ମଧ୍ୟମ ଶ୍ରେଣୀୟ । ଏ ପୋଥିର ବିଶେଷତ୍ୱ ଏହି ଯେ, ଏହାର ୮୦ ଛାନ୍ଦ ରାୟ ମହୋଦୟମାନଙ୍କ ଦ୍ୱାରା ମୁଦ୍ରିତ ଗ୍ରନ୍ଥର ପ୍ରଥମ ସଂସ୍କରଣର ୮୧ ଛାନ୍ଦ ଅଟେ । କିନ୍ତୁ ଉକ୍ତ ମୁଦ୍ରିତ ଗ୍ରନ୍ଥର ଅଶୀ ଛାନ୍ଦଟି 'ଗ' ପୋଥିରେ ନାହିଁ । ରାୟ ବାହାଦୂର ଶ୍ରୀଯୁକ୍ତ ରାମଶଙ୍କର ରାୟ ମହାଶୟ ଏହି ବିଦଗ୍ଧ-ଚିନ୍ତାମଣି ଗ୍ରନ୍ଥର ୧୩ଶ ସଂସ୍କରଣର ବିଜ୍ଞାପନରେ କହିଅଛନ୍ତି—"ପ୍ରଥମ ସଂସ୍କରଣରେ ପ୍ରକାଶିତ ହୋଇଥିବା ୮୧ ଛାନ୍ଦ, ଶେଷ ଦୁଇଛାନ୍ଦ ଯୋଗ ହୋଇ ଛପା ହେବା ସମୟରେ ଛାଡ଼ ହୋଇ ଯାଇଥିବା ଦେଖି ଆମ୍ଭେ ଏ ସଂସ୍କରଣରେ ତାହା ସନ୍ନିବେଶିତ କରି ପ୍ରକାଶିତ କଲୁଁ । ପ୍ରଥମ ସଂସ୍କରଣରେ କେବଳ ୯୫ ଛାନ୍ଦ ଛପା ହୋଇଥିଲା । ଏ ସଂସ୍କରଣରେ ପୂର୍ଣ୍ଣ ୯୭ ଛାନ୍ଦ ଛପା ହେଲା ।" କିନ୍ତୁ ରାୟ ମହାଶୟଙ୍କ ଗ୍ରନ୍ଥର ୮୦ ଓ ୮୧ ଛାନ୍ଦକୁ ମିଳାଇ ଦେଖିଲେ ସ୍ପଷ୍ଟ ଜଣାଯାଏ ଯେ, ବସ୍ତୁର ବିଷୟ ଏକ; ପଦମାନ ମଧ୍ୟ ଏକ; କିନ୍ତୁ ପଦବିନ୍ୟାସର ସ୍ଥାନ ମାତ୍ର ପୃଥକ୍ । ଏହା ନ ଜାଣି ଦୁଇ ଛାନ୍ଦକୁ ସଙ୍ଗେ ସଙ୍ଗେ ମୁଦ୍ରଣ କରିବା ଅବିବେକର କାର୍ଯ୍ୟ ହୋଇଅଛି କି ? ପାଠକମାନଙ୍କ କୌତୂହଳ ନିବାରଣ ଲାଗି ଉକ୍ତ ଛାନ୍ଦଦ୍ୱୟର ପଦମାନଙ୍କର ସମତ୍ୱ ନିମ୍ନରେ ପ୍ରଦର୍ଶିତ ହେଲା :—

୮୧ ଛାନ୍ଦର ୧ମ ପଦର ୩ୟ, ୪ର୍ଥ, ୫ମ ପାଦ ସହିତ ୮୦ ଛାନ୍ଦର ୨୮ଶ ପଦର ଉକ୍ତ ପାଦମାନ ସମାନ । ଅନ୍ୟାନ୍ୟ ପଦମାନଙ୍କ ସାମଞ୍ଜସ୍ୟ ଯଥା:—୮୧ ଛାନ୍ଦର ୨ୟ ପଦ=୮୦ ଛାନ୍ଦର ୨୯ଶ ପଦ । ୩ୟ=୩୦, ୪ର୍ଥ=୩୧, ୬=୩୨, ୭=୩୩, ୯=୨୩, ୧୦=୨୪, ୧୧=୨୫, ୧୨=୨୬, ୧୪=୨, ୧୫=୩, ୧୬–୪, ୧୭=୫, ୧୮=୬, ୧୯=୭, ୨୦=୮, ୨୧=୯, ୨୨=୧୦, ୨୩=୧୧, ୨୪=୧୨, ୨୫–୧୩, ୨୬=୧୪, ୨୭=୧୫, ୨୮=୧୬, ୨୯=୧୭, ୩୦=୧୮, ୩୧=୧୯, ୩୨=୨୦, ୩୩=୪୩, ୩୪=୪୪, ୩୫=୪୫, ୩୬=୪୬, ୩୭=୩୪, ୩୮=୩୫, ୩୯=୩୬, ୪୦=୩୭, ୪୧=୩୮, ୪୨=୩୯, ୪୪=୪୦, ୪୫=୪୨, ୪୬=୪୭, ୪୭=୪୮, ୪୯=୫୦ ।

ଅବଶିଷ୍ଟ ୫, ୮, ୧୩, ୪୩ ପଦମାନ ନିମ୍ନରେ ପ୍ରଦତ୍ତ କଲୁ :—

"ବୋଇଲେ କିଶୋରୀ ଦେଲେଣି ପାସୋରି ମୋ ପାଳିବା ଉପକାର । ଦେଇଛୁ ଯାହାକୁ ଭଜିଲେ ତାହାକୁ ଏ ଦୁର୍ଲ୍ଲଭ ଲାଭ ତୋର । ପ୍ରାଣସଜନି ଗୋ । ଅନାଦୃତ ହେଲି ଏବେ । କରି ତୁ ଲାଳନା ବିଶେଷ ପାଳନା ଭଜିବ କି ଦୃଢ଼ଭାବେ ।"

"ଏମନ୍ତ ବେଳରେ ଦୂତୀ ସେ ସ୍ଥଳରେ ପ୍ରବେଶ ସନ୍ଦେଶ ଘେନି । ମୁଖ ପରସନ୍ନ କରି ଦରଶନ ଆଗୁରତା ବନୋଦନୀ । ଦୂତୀ ବୋଇଲା ଗୋ । ଭାଗ୍ୟ-କଳ୍ପତରୁ ଫଳ । ହେଉଛୁ ସଫଳ ଭୋଗକୁ ବଫଳ କରୁଉଛୁ ବହୁ ବଳ" । ୮ ।

"ଦୂତୀକା ହସିଲା ଏତକ ଭାଷିଲା ନଶିରେ ବଧୂର ଯୋଗ । ନକର ସଙ୍କେତ ହୋଇଛୁ ନକେତ ତେଜ ହେବ ତାହା ଭୋଗ । ଶୁଣି ଧନୀର ସେ । ଆନନ୍ଦ ସିନ୍ଧୁ ବଢ଼ିଲା । ବନ ସନ୍ତପତ ନାଶନେ ସେ ପତ ଲୋଭେ ନଶାପେକ୍ଷା ହେଲା" ।୧୩।

"ବାଳକ କାଳରେ ଗୋବନ୍ଦ ମେଳରେ ରାଧା ଦେଖିବାର ବୃଦ୍ଧି । ମୁଦ ହୋଇ ବଧି କଲେ ବଭି ବଧି ଦୂବାସାଏ ଛନ୍ଦ କଦ୍ଧି । ପଦ ସନ୍ତକ ଯେ । ରାଧା ପିନ୍ଧାବାସେ ଥିଲା । କ ଭାବ ନରତ ହେଲେ ଅବରତ ସେ ଫଳ ଏବେ ଫଳିଲା" ।୪୩।

ଏଥିରୁ ଅନୁମିତ ହୁଏ, ଅଭିମନ୍ୟୁ ଏହି ଗ୍ରନ୍ଥଟି ପ୍ରଥମରେ ଲେଖାଇ ଥିଲେ' ପରେ କନ୍ତୁ ଉପଯୁକ୍ତ ସ୍ଥାନରେ ପଦମାନ ବନ୍ୟାସ କରି ଅଯୁକ୍ତ ପାଠ ପରହାର ପୂର୍ବକ ସମୀଚୀନ ପାଠ ୮୦ ଛାନ୍ଦ ରୂପେ ଗ୍ରହଣ କଲେ । ଅତଏବ "ଗ"ର ୮୦ ଛାନ୍ଦ ବା ରାୟ ମହାଶୟଙ୍କ ୧୩ଶ ସଂସ୍କରଣର ୮୧ ଛାନ୍ଦ ଆଦୌ ଉପେକ୍ଷିତବ୍ୟ ନୁହେ । ଏତଦ୍ଦୃଷ୍ଟିରେ ସୁବବେଚକ ଗୌଷାଣଙ୍କର ଉକ୍ତ ଛାନ୍ଦକୁ ପ୍ରଥମ ସଂସ୍କରଣ ପରେ ପରହାର କରିଥିଲେ । କନଷ୍ଟ ରାୟ ମହାଶୟ ସେ ଛାନ୍ଦକୁ ପୁନର୍ବାର ଗ୍ରହଣ କରି ଲୋକମାନଙ୍କ କୌତୂହଳ ଅଯଥା ବୃଦ୍ଧି କରିଅଛନ୍ତି । ମାତ୍ର 'ଝ' ପୋଥିରେ [ ଏହାର ପରିଚୟ ପରେ ଦଆଯିବ ] ଉକ୍ତ ଦୁଇଛାନ୍ଦ ୮୦ ଓ ୮୧ ଛାନ୍ଦରୂପେ ଗୃହୀତ ହୋଇଅଛୁ । ଝ ପୋଥି ବଷୟ ଉପଯୁକ୍ତ ସ୍ଥାନରେ କୁହାଯିବ ।

ଚତୁର୍ଥ ପୋଥି—ଏହା ମୁଁ 'ଘ' ରୂପେ ଗ୍ରହଣ କରିଅଛୁ । ମୋର ଛାତ୍ର ପୁରୁଣ୍ଡିଆ ନବାସୀ ଶ୍ରୀମାନ୍ ନଟବର ସାହୁ, ବି. ଏ.ଙ୍କ ଦ୍ୱାରା ପ୍ରଦତ୍ତ । ଏ ପୋଥି ବହୁ ପ୍ରମାଦ-ପୂର୍ଣ୍ଣ ହେଲେହେଁ ସ୍ଥଳବଶେଷରେ ଗ୍ରନ୍ଥସଙ୍କଳନ-କ୍ରିୟାରେ ବଶେଷ ସହାୟତା ପ୍ରଦାନ କରିଅଛୁ ।

'ଚ' ପୋଥି ପଞ୍ଚମ । ଏହା ମୋର ଛାତ୍ର ପୁରୁଷୋତ୍ତମା-ନବାସୀ ଜଗଦାନନ୍ଦ ତାଙ୍କ ଗ୍ରାମରୁ ଆଣିଥିଲେ । ଏହି ପୋଥି ରମ୍ଭାଠାରେ ଲିଖିତ । ଲେଖକଙ୍କ ପ୍ରମାଦ ସତ୍ତ୍ୱେ ଏହା ଶୁଦ୍ଧତା ବଷୟରେ 'ଗ' ପୋଥିର ସମସ୍ଥାନୀୟ ।

'ଛ' ପୋଥି ଅଲପୁଆ-ନବାସୀ ବାବୁ ଶ୍ରୀ ଗୌରବଲ୍ଲଭ ପଟ୍ଟନାୟକ ଆଣି ମୋତେ ଦେଇଥିଲେ । ଏ ପୋଥି ଉତ୍କୃଷ୍ଟ ।

'ଜ' ପୋଥି ମୋର ଛାତ୍ର ଢେଙ୍କାନାଳ-ନବାସୀ ଶ୍ରୀମାନ୍ ଦୁର୍ଗାଚରଣ ପଟ୍ଟନାୟକ, ବି. ଏ.ଙ୍କ ଦ୍ୱାରା ପ୍ରଦତ୍ତ । ଏ ପୋଥି ଶୁଦ୍ଧ ବଷୟରେ 'ଛ' ପୋଥିରୁ କଞ୍ଚିତ୍ ନ୍ୟୂନ ।

ଉପରୋକ୍ତ ସାତଖଣ୍ଡ ପୋଥି ଓ ଗୌରୀଶଙ୍କରଙ୍କ ମୁଦ୍ରିତ ଗ୍ରନ୍ଥ ସାହାଯ୍ୟରେ ମୁଁ ଶୁଦ୍ଧପାଠ-ଗ୍ରହଣପୂର୍ବକ ଗ୍ରନ୍ଥସଙ୍କଳନ ଏକପ୍ରକାର ଶେଷ କରିଥିଲି । ଏହି ସମୟରେ ବାବୁ ଗୁରୁଚରଣଙ୍କ ପ୍ରସ୍ତାବରେ ଅଭିମନ୍ୟୁଙ୍କ ଗୃହରୁ ପୋଥି ଆଣିବା ନିମିତ୍ତ ମୁଁ ଯାଜପୁର ସବ୍‌ଡିଭିଜନେଲ୍ ମାଜିଷ୍ଟ୍ରେଟ୍ ରାୟ ସାହେବ ଶ୍ରୀଯୁକ୍ତ ରାଧାଚରଣ ଦାସଙ୍କୁ ଅନୁରୋଧ କଲି । ସାମନ୍ତସିଂହାରଙ୍କ ବଂଶଧରମାନେ ପୋଥି ହସ୍ତାନ୍ତର କରିବାରେ ଅସ୍ୱୀକୃତ ହେବାରୁ ରାଧାଚରଣ ବାବୁ ସେ ଗ୍ରନ୍ଥର ନକଲ ଜଣେ ପଣ୍ଡିତଙ୍କ ଦ୍ୱାରା କରାଇ ମୋ ନିକଟକୁ ପଠାଇଥିଲେ । ନକଲ ପାଣ୍ଡୁଲିପିରେ ବିଶେଷ ଭ୍ରମ ଓ ପ୍ରମାଦ ଦେଖି ଉକ୍ତ ପୋଥି ନିମିତ୍ତ ମୁଁ ପୁନର୍ବାର ରାଧାଚରଣ ବାବୁଙ୍କୁ ଅନୁରୋଧ କଲି । ସେ ମହାଶୟ ବହୁ ଶ୍ରମ ଓ ଯତ୍ନରେ ପୋଥି ଖଣ୍ଡିକ ପଠାଇ ଦେଇଥିଲେ । ଅଭିମନ୍ୟୁଙ୍କ ଘରର ଏହି ପୋଥିକୁ ମୁଁ 'ଝ' ରୂପେ ଗ୍ରହଣ କରିଅଛି । ଏହା 'ଛ' ପୋଥିର ଅନୁରୂପ ଅନୁମିତ ହୁଏ, ଯେପରି କି 'ଛ' ଓ ଏହି 'ଝ' ପୋଥି ଉଭୟ ଏକ ମୂଳପୋଥିରୁ ଲେଖା ହୋଇଅଛନ୍ତି । ଅଭିମନ୍ୟୁଙ୍କ ଏହି ଘର ପୋଥି ମୂଳ ପୋଥି ନୁହେଁ; ଏଥିରେ ମଧ୍ୟ ସ୍ଥାନେ ସ୍ଥାନେ ପ୍ରମାଦ ଅଛି । ତାହା ମୁଁ ଛନ୍ଦର ଛାନ୍ଦମାନଙ୍କର ପାଦଟିପ୍ପଣୀରେ ସ୍ଥଳ ବିଶେଷରେ ଦର୍ଶାଇଅଛି ।

ନବମ 'ଟ' ପୋଥିଖଣ୍ଡିକ ରାୟ ବାହାଦୂର ସୁଦାମଚନ୍ଦ୍ର ନାୟକଙ୍କଠାରୁ ପ୍ରାପ୍ତ । ମୁଁ "ବିଦଗ୍ଧଚିନ୍ତାମଣି"ର ଶୁଦ୍ଧପାଠ ସଙ୍କଳନରେ ହସ୍ତକ୍ଷେପ କରିଅଛି, ଏହା ଶ୍ରବଣ କରି ସେ ମହୋଦୟ ବିନା ଅନୁରୋଧରେ ପୋଥିଟି ଜଣେ ଲୋକଙ୍କ ହସ୍ତରେ ମୋ ନିକଟକୁ ପଠାଇଥିଲେ । ଏଥିରୁ ସୁଦାମ ବାବୁ କିପରି ସାହିତ୍ୟପ୍ରାଣ ଥିଲେ ସୁସ୍ପଷ୍ଟ ପ୍ରତୀୟମାନ ହେଉଅଛି । ଏ ପୋଥିଟି ରାୟ ସଂକଳିତ ବିଦଗ୍ଧଚିନ୍ତାମଣିର ପ୍ରଥମ ମୁଦ୍ରଣର ନକଲ ମାତ୍ର ।

'ଠ' ଟି ଦଶମ । ଏହା ଗୌରୀଶଙ୍କରଙ୍କ ମୁଦ୍ରିତ ଗ୍ରନ୍ଥ ।

ଉପରୋକ୍ତ ପୋଥିମାନଙ୍କ ସାହାଯ୍ୟ ନେଇ ମୁଁ ଏହି ଗ୍ରନ୍ଥର ପାଠ ସଙ୍କଳନ କଲି ।

ଯେଉଁ ସହୃଦୟ ବ୍ୟକ୍ତିଗଣ ମୋତେ ପୋଥି ପ୍ରଦାନ କରିଅଛନ୍ତି, ତାଙ୍କଠାରେ ମୁଁ କୃତଜ୍ଞ ।

ଏହି ଗ୍ରନ୍ଥ ପ୍ରାୟ ୫୦ ବର୍ଷ ହେବ ମୁଦ୍ରିତ ହୋଇ ଉତ୍କଳରେ ପ୍ରଚରିତ ହୋଇ ଆସୁଅଛି । କିନ୍ତୁ ଦୁଃଖର କଥା, ତାହାର ଶୁଦ୍ଧ ସଂସ୍କରଣ କରିବାରେ ଏପର୍ଯ୍ୟନ୍ତ କାହାରି ଦୃଷ୍ଟି ପଡ଼ି ନ ଥିଲା । ଅଶିକ୍ଷିତ ସମ୍ପ୍ରଦାୟ ଛାଡ଼ି ଦେଇ ଶିକ୍ଷିତ ସମ୍ପ୍ରଦାୟର ବିଷୟ ବିଚାର କଲେ ମନରେ କ୍ଷୋଭ ଜାତ ହୁଏ ଯେ, କିପରି ସେମାନେ ଅସମ୍ବଦ୍ଧ ଅର୍ଥହୀନ ଅପପାଠମାନ ଏବଂବିଧ ଅବସ୍ଥାରେ ରଖିବାକୁ ପ୍ରଶ୍ରୟ ଦେଇଥିଲେ । ରାୟ ମହୋଦୟମାନଙ୍କ ମୁଦ୍ରିତ ଗ୍ରନ୍ଥରୁ ଦୁଇ ଚାରୋଟି ଅପପାଠ ନିମ୍ନରେ ପ୍ରଦତ୍ତ କଲି ।—

| ଗ୍ରନ୍ଥଙ୍କ ପୁସ୍ତକ ପାଠ | ଶୁଦ୍ଧ ପାଠ |
|---|---|
| ୧। ଖେଳଲ୍ଲାଳା ( ୧।୪୧ ) | ଖଳନନ୍ଦା |
| ୨। ରହ୍ମ କନ୍ୟାସ୍ପଦେ ଗୋକୁଳ ସମ୍ପଦେ<br>ବୃତ୍ତି କଳ୍ପତରୁ ମୂଳରେ । ( ୪।୧ ) | ରହ୍ମ ନନ୍ଦାସ୍ପଦେ···<br>ବୃତ୍ତି କଳ୍ପିତ ନୂତନରେ |
| ୩। ଆତ୍ମଭୂତ ଅନ୍ଧ ଜନ<br>ନସ୍ପନ ବେନ କ ? ( ୬।୪ ) | ଆତ୍ମଭୂ-ତମାନ୍ଧ ଜନ<br>ନସ୍ପନ ବେନ କ ? |
| ୪। ଶ୍ରୀରାଧା ବାରୁଳ ପ୍ରେମ<br>ରସାରୁଳ···  ( ୫୨।୧ ) | ···ପ୍ରେମରତ୍ନ ରୂଢ଼ |
| ୫। କମଠ ମଣ୍ଡୂକ ଧ୍ୟାନରେ<br>ବିବେକ କୋଣେ ପଣେ<br>ଦୂରକର ଆଶ•(୬୧।୨୫) | ···କୋପେ ପୋପେ<br>ଦୂରେ କର ବାସ |
| ୬। ବିବେକ ଚେତନା ଦେକ<br>ମୋଡ଼ାଇଲ୍ସ ( ୭୧।୬ ) | ବିବେକ ଚଢ଼ାଇ ଦେକ |

ଏହିପରି ସଂଖ୍ୟାତୀତ ଭ୍ରମରେ ମୁଦ୍ରିତ ଗ୍ରନ୍ଥଟି ବିଷ-ମୂର୍ଚ୍ଛିତ । ଏପରି ପୃଷ୍ଠା ନାହିଁ ଯାହା ଭ୍ରମଶୂନ୍ୟ । ଅଧିକ ଉଦାହରଣ ଦର୍ଶାଇ ଗ୍ରନ୍ଥର କଳେବର ବୃଦ୍ଧି କରିବା ଅନାବଶ୍ୟକ । ଆକ୍ଷେପର କଥା ପ୍ରବୀଣ ଖ୍ୟାତନାମା କଲିକତା ବିଶ୍ୱ-ବିଦ୍ୟାଳୟର ଅଧ୍ୟାପକ ମଜୁମଦାର ମହାଶୟ ମଧ୍ୟ ଏହି ଅଶୁଦ୍ଧ ପାଠମାନଙ୍କୁ "ଉତ୍କଳ ସାହିତ୍ୟ ପରିଚୟ" ରେ ପ୍ରକାଶିତ କରିଅଛନ୍ତି ।

# ଅଭିମନ୍ୟୁଙ୍କର ଜୀବନଚରିତ

ମୁଁ ଅଭିମନ୍ୟୁଙ୍କ ଜୀବନଚରିତ ସଂଗ୍ରହ କରିଥିଲେହେଁ ସ୍ୱର୍ଗୀୟ ମୃତ୍ୟୁଞ୍ଜୟ ରଥଙ୍କ ପ୍ରବନ୍ଧ ଜୀବନଚରିତକୁ ସାରବାନ୍ ମଣି ତାହାର ଉପାଦେୟ ଅଂଶମାତ୍ର ଏ ସ୍ଥାନରେ ବିବୃତ କଲି (ଉତ୍କଳ ସାହିତ୍ୟ ୧୮ଶ ଭାଗ ଦ୍ରଷ୍ଟବ୍ୟ) ।—

"ତାହାଙ୍କର ଆଦି ଜନ୍ମସ୍ଥାନ ଜୟପୁରଅନ୍ତର୍ଗତ ଭୁବନଗର । କେନ୍ଦ୍ରାପଡ଼ା କ୍ଷତ୍ରିୟବଂଶ ଯୋଧପୁରରୁ ଆସିଥିଲେ । ସାମନ୍ତସିଂହାର ବଂଶ ସେ ବଂଶର ଅନେକ ପରବର୍ତ୍ତୀ ବୋଲି ଅନୁମାନ ହୁଏ । ତାହାଙ୍କର ପିତାମହ ଓ ପ୍ରପିତାମହଙ୍କର ନାମ ଶୁଣିଲେ ପାଠକମାନେ ବୁଝିପାରିବେ ସେମାନେ ପଶ୍ଚିମରୁ ନବାଗତ । ସେ ନାମ ଉତ୍କଳପ୍ରଚଳିତ ନୁହେଁ । ଦ୍ୱିତୀୟତଃ ଏ ବଂଶ ଖୋର୍ଦ୍ଧାର ଭୋଇବଂଶୀୟ ରାଜାଙ୍କ-ଠାରୁ ବରୁଆ ପ୍ରଗନା-ଅନ୍ତର୍ଗତ ବାଲିଆ ଜମିଦାରୀ ପ୍ରାପ୍ତ ହୋଇଥିଲେ । ଉପାଧି କାହାଠାରୁ ପ୍ରାପ୍ତ ହୋଇଥିଲେ, ତାହା ନିଶ୍ଚିତରୂପେ ଜଣାଯାଏ ନାହିଁ । କେହି କେହି କହନ୍ତି, ତେତେବେଳେ ସେ ଅଞ୍ଚଳରେ ବରପଦା ପ୍ରଭୃତି ନାମରେ ସାତ

ଟପା ଥିଲା । ଏହି ସାତ ଟପାରେ ରଣସିଂହ ମହାପାତ୍ର, ଦକ୍ଷିଣେଶ୍ୱର ମହାପାତ୍ର ପ୍ରଭୃତି ବିଭିନ୍ନ ରାଜୋପାଧିଧାରୀ ସାତ ସାମନ୍ତ ପ୍ରଭୁତ୍ୱ କରୁଥିଲେ । ଅଭିମନ୍ୟୁଙ୍କ ପୂର୍ବପୁରୁଷ ଏହି ସାମନ୍ତ ମଧ୍ୟରେ ଗଣ୍ୟ ହେଉ ନ ଥିଲେହେଁ ଏକ ସମୟରେ ସେ ବଂଶର ଜଣେ କେହି ଅପର ସାତ ସାମନ୍ତଙ୍କୁ ଗୋଟିଏ ମହା ବିପଦରୁ ବୁଦ୍ଧି ବଳରେ ରକ୍ଷା କରିଥିଲେ । ଏଥିରେ ସାମନ୍ତମାନେ ସନ୍ତୁଷ୍ଟ ହୋଇ 'ସାମନ୍ତସିଂହାର' ଅର୍ଥାତ୍ ସାମନ୍ତଭୂଷଣ ଉପାଧି ପ୍ରଦାନ କଲେ । ସେହି ଉପାଧି ରାଜଦତ୍ତ ଉପାଧି ପ୍ରାପ୍ତ ସମ୍ମାନ ସହିତ ବଂଶପରମ୍ପରା ଚଳି ଆସୁଅଛି । ଉକ୍ତ ବାଲିଆ ନଗର ଅଭିମନ୍ୟୁଙ୍କ ଜନ୍ମସ୍ଥାନ । ଏହି ସ୍ଥାନଟି ବର୍ତ୍ତମାନ ଯାଜପୁର ସବ୍‌ଡିଭିଜନର ଅନ୍ତର୍ଗତ ।"

"କବିଙ୍କ ପ୍ରପିତାମହ ବିନ୍ଧକା ସାମନ୍ତ ବଡ଼ ରସିକ ଓ କାବ୍ୟଶାସ୍ତ୍ରଜ୍ଞ ଥିଲେ । ତଦୀୟ ପୁତ୍ର ଖୋସାଲ ସାମନ୍ତ ପିତାଙ୍କ ପରି ସୁଖ୍ୟାତି ଲାଭ କରି ପାରି ନ ଥିଲେ । କିନ୍ତୁ ତତ୍ପୁତ୍ର ଇନ୍ଦ୍ରଜିତ ଖ୍ୟାତିରେ ସମସ୍ତଙ୍କୁ ବଳି ପଡ଼ିଥିଲେ । ଅବଶ୍ୟ ସେ ପାଠରେ ବଡ଼ ନ ଥିଲେ । କିନ୍ତୁ ଶାଠରେ ବଡ଼ ଧୁରୀଣ ଥିଲେ । ସେ ଯେପରି ରସିକ, ସେହିପରି ମଧ୍ୟ ଧାର୍ମିକ ପୁରୁଷ ଥିଲେ । ବୀରପୁରୁଷ ବୋଲି ତାହାଙ୍କର ସମଧିକ ଖ୍ୟାତି ଥିଲା ।" ଅଭିମନ୍ୟୁ ନିଜର 'ବାଘଗୀତ' ରେ ତାହାର ପରିଚୟ ଦେଇଅଛନ୍ତି ।

ଇନ୍ଦ୍ରଜିତଙ୍କର ଅଷ୍ଟପତ୍ନୀ ଥିଲେ; କିନ୍ତୁ ପୁତ୍ର ଅଭାବ ହେତୁ ସେ ବଡ଼ ଦୁଃଖିତ ଥିଲେ । ଲୋକମୁଖରେ ପ୍ରକାଶ ଯେ, ସେ ଜଣେ ସାଧୁଙ୍କ ଅନୁଗ୍ରହରୁ ମନ୍ତ୍ରବଳରେ ପୁତ୍ରରତ୍ନ ଲାଭ କରିଥିଲେ । ଏହି ପୁତ୍ରରତ୍ନ ଆମ୍ଭମାନଙ୍କର ଅଭିମନ୍ୟୁ ।

କିନ୍ତୁ "ତଦୀୟ ବଂଶଧରମାନେ କହନ୍ତି ଯେ, ପୁତ୍ରୋତ୍ପତ୍ତିକାଳ ଅତିକ୍ରାନ୍ତ ହେବାର ଦେଖି ସଦାନନ୍ଦ କବିସୂର୍ଯ୍ୟବ୍ରହ୍ମା ତାଙ୍କୁ (ଇନ୍ଦ୍ରଜିତଙ୍କୁ) ଯଜ୍ଞାନୁଷ୍ଠାନ କରିବା ନିମିତ୍ତ ଉପଦେଶ ପ୍ରଦାନ କଲେ । ଯଜ୍ଞାନ୍ତେ ସାମନ୍ତଙ୍କର ଅଷ୍ଟମା ପତ୍ନୀ ସ୍ୱପ୍ନରେ ଦେଖିଲେ ଯେ ଜଣେ ବିଷ୍ଣୁଭକ୍ତ ଦିବ୍ୟ ପୁରୁଷ ତାଙ୍କ ହସ୍ତରେ ତୁଳସୀ-ମାଳ ଓ ଚନ୍ଦନ ଦେଇ ଅନ୍ତର୍ହିତ ହୋଇଥିଲେ । ଏହି ସ୍ୱପ୍ନ ଦର୍ଶନ ପରେ ସେହି ତୁଳସୀମାଳାଧାରିଣୀ ଜନନୀ ଗର୍ଭଧାରଣ ପୂର୍ବକ ଯଥାକାଳରେ ବିଷ୍ଣୁଭକ୍ତ ପୁତ୍ର ପ୍ରସବ କଲେ । ସନ ୧୧୬୪ ସାଲ ଅଥବା ୧୭୫୭ ଖ୍ରୀଷ୍ଟାବ୍ଦର ଏହି ଦିବସ ଗୋଟିଏ ସ୍ମରଣୀୟ ତିଥି ।"

'ଅଭିମନ୍ୟୁଙ୍କ ଜନନୀ ତୁଳସୀ ଦେବୀ ଉଦୟପୁର (ଲଉଖିଆ) ଗ୍ରାମର ବିଖ୍ୟାତ ପଟ୍ଟନାୟକବଂଶସମ୍ଭବା ଥିଲେ । ସପତ୍ନୀମାନଙ୍କ ମଧ୍ୟରେ ସେ ଅଧିକ ଧର୍ମପରାୟଣା ଥିଲେ । ଅଭିମନ୍ୟୁ ତାହାଙ୍କର ଗର୍ଭଜାତ ହେଲେହେଁ ଫଳରେ ଅଷ୍ଟମାତାଙ୍କର ପୁତ୍ର ଥିଲେ । ମୃତ୍ୟୁର କିଛିକାଳ ପୂର୍ବେ ତଦୀୟ ଜନକ ଆଉ

ଏକ ପୁତ୍ର ଲାଭ କରି ସୁଖୀ ହେଲେ ।" ଜାଣିବାର ସୁବିଧା ଲାଗି ରଥଙ୍କ ପ୍ରଦତ୍ତ ଅଭିମନ୍ୟୁଙ୍କ ବଂଶାନୁକ୍ରମଣିକା ନିମ୍ନରେ ଉଦ୍ଧୃତ ହେଲା :—

"ବଦ୍ଧକା ସାମନ୍ତସିଂହାର ମହାପାତ୍ର

ଖୋସାଲ୍ ସାମନ୍ତସିଂହାର

ଇନ୍ଦ୍ରଜିତ ସାମନ୍ତସିଂହାର

ଅଭିମନ୍ୟୁ ସାମନ୍ତସିଂହାର ମହାପାତ୍ର — ସୁରଥ ଗ୍ଲେଟସାସ୍ତ ।"

ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା—ବୈଷ୍ଣବ ନାମ ସାଧୁଚରଣ ଦାସ,—ଅଭିମନ୍ୟୁଙ୍କ ଗୁରୁ ଥିଲେ । ସେ ଯେ କେବଳ ବିଦ୍ୟାଗୁରୁ ଥିଲେ, ତାହା ନୁହେ, ଶିକ୍ଷାଗୁରୁ ମଧ୍ୟ ଥିଲେ । ବୈଷ୍ଣବ ସାଧୁଚରଣ ନିଜର ପରମାରାଧ୍ୟ ରାଧାକୃଷ୍ଣଙ୍କ ପ୍ରେମରସରେ ତାଙ୍କର ପ୍ରାଣକଳ୍ପ ଗ୍ରନ୍ଥ ଓ ଶିଷ୍ୟ ଅଭିମନ୍ୟୁଙ୍କୁ ନିମଜ୍ଜିତ କରିଥିଲେ । ସାଧୁଚରଣଙ୍କ ଗୁରୁ ପରମ୍ପରା ଦର୍ଶନ କଲେ ସ୍ପଷ୍ଟ ଜଣାଯାଏ ଯେ, ସେ ଗୌଡ଼ୀୟ ବୈଷ୍ଣବ ସମ୍ପ୍ରଦାୟର ଅନ୍ତର୍ଭୁକ୍ତ ଥିଲେ । ତାଙ୍କ କୃତ "ଚୌରଚନ୍ଦ୍ରାମଣି"ର ପ୍ରଥମ ଛାନ୍ଦରେ ଅଛୁ;

"ମହାପ୍ରଭୁ ଶ୍ରୀକୃଷ୍ଣ ଚୈତନ୍ୟ ସର୍ବେଶ୍ୱର ।
ସେ ଆଶ୍ରୟ ଗଦାଧର ପଣ୍ଡିତ ଗୋସ୍ୱାମୀ ।
ତଦନୁଗ ଶ୍ରୀ ଅନନ୍ତ ଆଚାର୍ଯ୍ୟ ଗୋସ୍ୱାମୀ ।
ସେ ଶିଷ୍ୟ ଶ୍ରୀ ରଘୁ ଗୋପାଳ ଗୋସ୍ୱାମୀ ପୁଣି ।
ତାଙ୍କ ଅନୁଗତ ଲକ୍ଷ୍ମୀପ୍ରିୟା ଠାକୁରାଣୀ ।
ଠାକୁରାଣୀ ଗଙ୍ଗାମାତା ତାଙ୍କ କୃପାପାତ୍ର ।
ଶ୍ରୀ ବନମାଳୀ ଦାସ ଗୋସ୍ୱାମୀ ସେ ଆଶ୍ରିତ ।
ତାଙ୍କ ସେବକ ଶ୍ରୀ କିଶୋର ଦାସ ନାମରେ ।
ସାଧୁଚରଣ ଦାସ ଆଶ୍ରୟ ସେ ପଦ୍ମରେ ।
ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ନାମେ ଖ୍ୟାତ ।"

ସାଧୁଚରଣ ଜଣେ ପ୍ରସିଦ୍ଧ କବି ମଧ୍ୟ ଥିଲେ । ତାହାଙ୍କର "ଯୁଗଳରସାମୃତଲହରୀ," "ଯୁଗଳରସାମୃତଭକ୍ତି," "ଚୌରଚନ୍ଦ୍ରାମଣି," "ନାମଚନ୍ଦ୍ରାମଣି," "ପ୍ରେମକଳ୍ପଲତା," "ନିଷ୍କାମିଳମଣି," ଆଦି ଗ୍ରନ୍ଥମାନ ପାଠ କଲେ ଜଣାଯାଏ, ତାଙ୍କର କବିତ୍ୱ ଉଚ୍ଚଧରଣର ଏବଂ ତହିଁରେ ସରସତା,

ସରଳତା, ମାଧୁର୍ଯ୍ୟ ଓ ଉପେନ୍ଦ୍ରଭଞ୍ଜୀୟ କାବ୍ୟଛଟାର ବିକାଶ ଶୋଭନରୂପେ ବିଳସିତ । ବଙ୍ଗୀୟ ଲେଖକ ଶ୍ରୀଯୁକ୍ତ ବିଜୟଚନ୍ଦ୍ର ମଜୁମଦାର ତାହାଙ୍କର ସୁଗଭୀର ପାଣ୍ଡିତ୍ୟ ଓ ଉତ୍କଳ ସାହିତ୍ୟରେ ବିଶାଳଦର୍ଶିତ୍ୱର ନିଦର୍ଶନ ସ୍ୱରୂପ କହିଅଛନ୍ତି ଯେ, କବିସୂର୍ଯ୍ୟ ଉପେନ୍ଦ୍ରଭଞ୍ଜଙ୍କ କାବ୍ୟ ସରଣୀରେ ପଥିକ ନ ଥିଲେ ଓ ଯଦି ଅଭିମନ୍ୟୁ "ପ୍ରେମକଳ୍ପଲତା"ରେ ତାଙ୍କୁ ନିଜର କାବ୍ୟଗୁରୁରୂପେ ଉଲ୍ଲେଖ କରି ନ ଥାନ୍ତେ, ତାହା ହେଲେ ତାଙ୍କ ନାମ ଅଧୁନା ବିସ୍ମୃତିର ଅନ୍ଧତମସରେ ବିଲୀନ ହୋଇଯାଇଥାନ୍ତା । ଧନ୍ୟ ମଜୁମଦାର ! ଧନ୍ୟ ତୁମ୍ଭର ଉତ୍କଳସାହିତ୍ୟଜ୍ଞାନ ! ମୋ ମତରେ ଯେ ଲୋକ ଉପର୍ଯ୍ୟୁକ୍ତ ଗ୍ରନ୍ଥମାନ ପାଠ କରିବ, ସେ ନିଶ୍ଚୟ କହିବ ସାଧୁଚରଣ ଦାସଙ୍କ ତୁଲ୍ୟ ଗୁରୁ ପାଇ ନ ଥିଲେ, ଅଭିମନ୍ୟୁ କବିରୂପରେ ଏତେ ପ୍ରସିଦ୍ଧି ଲାଭ କରି ପାରି ନ ଥାନ୍ତେ । ସେ ଉପଯୁକ୍ତ ଗୁରୁଙ୍କର ଉପଯୁକ୍ତ ଶିଷ୍ୟ । ଅଭିମନ୍ୟୁ ସାଧୁଚରଣଙ୍କୁ ବଳିପଡ଼ିଥିଲେ, ଏହା କହିବା ବାହୁଲ୍ୟମାତ୍ର ।

ବାଲ୍ୟକାଳରେ ଅଭିମନ୍ୟୁ ଅମରକୋଷ, ମେଦିନୀ, ବ୍ୟାକରଣ, କାବ୍ୟ-ଅଳଙ୍କାର, ଗଣିତ, ଜ୍ୟୋତିଷ ଆଦି ସଂସ୍କୃତ ଶାସ୍ତ୍ର ଉତ୍ତମରୂପେ ଅଧ୍ୟୟନ କରିଥିଲେ । ଉତ୍କଳର ପ୍ରାଚୀନ ସାହିତ୍ୟରେ, ବିଶେଷତଃ ଭଞ୍ଜୀୟ କାବ୍ୟ ଜଗତରେ ତାଙ୍କର ଗଭୀର ଗବେଷଣା ଥିଲା । ଭାଗବତ, ବ୍ରହ୍ମବୈବର୍ତ୍ତ, ପଦ୍ମ ଆଦି ବୈଷ୍ଣବ ପୁରାଣମାନଙ୍କରେ ବେଦ, ଉପନିଷଦ୍, ବ୍ରହ୍ମସଂହିତା ପ୍ରଭୃତିରେ, ଗୌଡ଼ୀୟ ବୈଷ୍ଣବ ଗ୍ରନ୍ଥମାନଙ୍କରେ ଓ ଜୟଦେବ, ବିଲ୍ୱମଙ୍ଗଳ, ବିଦ୍ୟାପତି, ଚଣ୍ଡିଦାସ ଆଦିଙ୍କ କୃତିରେ ସେ ପାରଦର୍ଶୀ ଥିଲେ । ଏତଦ୍‌ବ୍ୟତୀତ ବଙ୍ଗଳା, ହିନ୍ଦୀ, ମରହଟ୍ଟୀ ଓ ପାର୍ଶୀ ଭାଷାରେ ଏବଂ ଯୁଦ୍ଧବିଦ୍ୟା ଓ ଆନୁସଙ୍ଗିକ କଳା-ବିଦ୍ୟାରେ ମଧ୍ୟ ତାଙ୍କର ପ୍ରବେଶ ଥିଲା । ତାହାଙ୍କ ପାଣ୍ଡିତ୍ୟର ବିସ୍ତୃତ ବିବୃତି ଏହି ଗ୍ରନ୍ଥର ଟୀକାରେ ଏବଂ ଗ୍ରନ୍ଥୋଦ୍ଧୃତ ବିଷୟମାନ ଓ ତତ୍‌କୃତ ଅନ୍ୟାନ୍ୟ ଗ୍ରନ୍ଥମାନଙ୍କର ବିବରଣ ଏକ ସ୍ୱତନ୍ତ୍ର ପ୍ରବନ୍ଧରେ ପ୍ରକାଶ କରିବାର ବାସନା ରହିଲା ।

"ମାରୁଲାଳୟରେ ଅବସ୍ଥାନ କରୁଥିବା କାଳରେ ତତ୍‌ସତ୍ୟ ଟଙ୍କଧର ନାୟକଙ୍କ ସଙ୍ଗରେ ତାଙ୍କର ( ଅଭିମନ୍ୟୁଙ୍କର ) ପରିଚୟ ହୋଇଥିଲା । ସେହି ଦିନଠାରୁ ଟଙ୍କଧର ଆମରଣ ତାଙ୍କର ଜଣେ ପରମବନ୍ଧୁ ଥିଲେ । ଟଙ୍କଧର ଯେ କେବଳ ଜଣେ ପ୍ରସିଦ୍ଧ ସଂସ୍କୃତଜ୍ଞ ପଣ୍ଡିତ ଥିଲେ ତାହା ନୁହେଁ, ଅନେକ ଶାସ୍ତ୍ରରେ ତାଙ୍କର ଅଭିଜ୍ଞତା ଥିବାରୁ ସେ ଅଭିମନ୍ୟୁଙ୍କର ସମାଦର ଲାଭ କରିଥିଲେ ।"

ବାଲ୍ୟକାଳରୁ ଅଭିମନ୍ୟୁଙ୍କର କବିତ୍ୱର ସ୍ଫୂର୍ତ୍ତି ଓ ଭକ୍ତିର ସଞ୍ଚାର ହୋଇଥିଲା । ପ୍ରଥମେ ସେ କି ପ୍ରକାର କବିତା ରଚନା କରି ପାରୁଥିଲେ ତାହାର କେତେକ ନିଦର୍ଶନ ନିମ୍ନରେ ପ୍ରଦତ୍ତ ହେଲା—

୧— କର୍ମଙ୍ଗା ଗଛର ଗୁଇ ଗୋ ମୋର ହୁଁ ଗୋ
କରମ ଯାହାର ସୁଫଳ ହୋଇବ କୃଷ୍ଣଙ୍କୁ ଲଭିବ ସେହି ଗୋ,
ମୋର ହୁଁ ଗୋ ।

ଗଣ୍ଡେଇ ଗଛର ଗୁଇ ଗୋ ମୋର ହୁଁ ଗୋ
ବେଣୁବିନୋଦିଆ ଯେଣେ ଯାଉଥାଇ ତେଣେ ହୃଦ ପଡ଼ୁଥାଇ ଗୋ,
ମୋର ହୁଁ ଗୋ ।

୨—ଯୁଦ୍ଧରେ ସେ ଅଟେ ଗ୍ରାମ କଣ୍ଟକୀ
ଆନ କହୁଥିବା ବୋଲେ ମୋର ଢ଼ିଟୀ । ଇତ୍ୟାଦି ।

ଏ ସବୁ ନବବର୍ଷବୟସ୍କ ବାଳକର ରଚନା ।

ଅଭିମନ୍ୟୁଙ୍କ କବିତ୍ୱଲାଭ ସମ୍ବନ୍ଧରେ ବହୁ ପ୍ରବାଦ ଅଛି । ତାହା ୬ମୃତ୍ୟୁଞ୍ଜୟ ରଥ୍ ଲେଖିଅଛନ୍ତି । ସାଧୁଙ୍କ ମନ୍ତ୍ରୋପଦେଶ ବଳରେ ତାଙ୍କର କବିତ୍ୱସ୍ଫୂର୍ତ୍ତି ସେହି ପ୍ରବାଦମାନଙ୍କର ମର୍ମ୍ମ ।

ଚତୁର୍ଦ୍ଦଶ ବର୍ଷ ବୟସରେ ଅଭିମନ୍ୟୁ କେନ୍ଦ୍ରାପଡ଼ାର ସୁପ୍ରସିଦ୍ଧ ଭୂମ୍ୟଧିକାରୀ ରାଧାଶ୍ୟାମ ନରେନ୍ଦ୍ରଙ୍କ ପିତୃସ୍ୱସା ବା ସଦାଶିବ ଜେନାଙ୍କ ଭଗିନୀ ବିମଳା ଦେବୀଙ୍କୁ ବିବାହ କରିଥିଲେ । ଊନବିଂଶ ବର୍ଷ ବୟସରେ ସେ ପିତୃହୀନ ହୋଇ ସଂସାରପ୍ରତି ବୀତତୃଷ୍ଣ ହେଲେ ଏବଂ ସ୍ୱୀୟ ସମ୍ପତ୍ତିର ରକ୍ଷଣାବେକ୍ଷଣ ଭାର କନିଷ୍ଠଙ୍କଠାରେ ନ୍ୟସ୍ତ କରି ଇଷ୍ଟଦେବ ରାଧାମୋହନଙ୍କ ଉପାସନା ଓ ଲୀଳାର ଆଲୋଚନା ଓ ରଚନାରେ କାଳଯାପନ କରୁଥିଲେ । ଏହି ସମୟରେ ତତ୍କୃତ ବୈଷ୍ଣବ ଗ୍ରନ୍ଥମାନଙ୍କର ରଚନା ଆରମ୍ଭ ହୁଏ । ଗ୍ରନ୍ଥମାନଙ୍କ ମଧ୍ୟରୁ 'ସୁଲକ୍ଷଣା', 'ରସବତୀ', 'ପ୍ରେମକଳା', 'ପ୍ରେମ-ଚନ୍ଦ୍ରାମଣି', 'ବିଦଗ୍ଧ-ଚନ୍ଦ୍ରାମଣି' ପ୍ରଭୃତି ଗ୍ରନ୍ଥମାନ ଅଦ୍ୟାପି ବର୍ତ୍ତମାନ । ଦୁଃଖର କଥା 'ସୁଲକ୍ଷଣା' ଓ ଅସମ୍ପୂର୍ଣ୍ଣ 'ବିଦଗ୍ଧ-ଚନ୍ଦ୍ରାମଣି' ବ୍ୟତୀତ ତାହାଙ୍କର ଅପରାପର ଗ୍ରନ୍ଥମାନ ଏ ପର୍ଯ୍ୟନ୍ତ ପ୍ରକାଶିତ ହେଲା ନାହିଁ ।

ଅଭିମନ୍ୟୁ ଜୀବନର ଶେଷଦଶାରେ ପତ୍ନୀଙ୍କଠାରୁ ବିଦାୟ ନେଇ ବୃନ୍ଦାବନ ଯାତ୍ରା କଲେ । ମାତ୍ର ଗଡ଼ର ପ୍ରାୟ ଏକକୋଶ ଦୂରବର୍ତ୍ତୀ ହରିପୁର ଗ୍ରାମଠାରେ ତାହାଙ୍କ ଶରୀର ଏକାନ୍ତ ଅବଶ ହୋଇ ପଡ଼ିବାରୁ ସେ ସନ୍ଦେଶ ଦେଇ ଇଷ୍ଟଦେବ ରାଧାମୋହନଙ୍କ ପ୍ରତିମା ସେଠାକୁ ଅଣାଇଲେ ଏବଂ ସେହି ମୂର୍ତ୍ତି ନିରୀକ୍ଷଣ କରୁ କରୁ ଜୀବଲୀଳା ସମ୍ବରଣ କରି ଅମରଧାମକୁ ପ୍ରତ୍ୟାବର୍ତ୍ତନ କଲେ ।

# ବିଦଗ୍ଧ-ଚିନ୍ତାମଣି

ଊନବିଂଶତି ବର୍ଷ ବୟସରେ କବି "ବିଦଗ୍ଧ-ଚିନ୍ତାମଣି" କାବ୍ୟ ଆରମ୍ଭ କରିଥିବା ବିଷୟ ଗ୍ରନ୍ଥେ ଉଲ୍ଲେଖ କରିଅଛନ୍ତି । କିନ୍ତୁ ମୋ ମତରେ ତାହା ସମୀଚୀନ ବୋଧ ହୁଏ ନାହିଁ । କାରଣ "ବିଦଗ୍ଧ-ଚିନ୍ତାମଣି"ର ଆଦି ଛାନ୍ଦମାନ ଆଲୋଚନା କଲେ ଜଣାଯାଏ ଯେ, ତାହା ସିଦ୍ଧହସ୍ତର କୃତି । 'ସୁଲକ୍ଷଣା', 'ପ୍ରେମକଳା', 'ରସବତୀ', 'ପ୍ରେମଚିନ୍ତାମଣି' ପ୍ରଭୃତି କବିଙ୍କର ଅନ୍ୟାନ୍ୟ ଗ୍ରନ୍ଥମାନ ପାଠ କଲେ ଜଣାଯାଏ କି "ବିଦଗ୍ଧ"ର ଆଦିଛାନ୍ଦମାନଙ୍କର ରଚନା-ପଦ୍ଧତି ପ୍ରୋକ୍ତ କାବ୍ୟମାନଙ୍କର ରଚନାପଦ୍ଧତି ଅପେକ୍ଷା ଉଚ୍ଚତର କୋଟିରେ ଅବସ୍ଥିତ । ବିଶେଷତଃ ପ୍ରଥମ ଛାନ୍ଦରେ ପ୍ରଦର୍ଶିତ ପାଣ୍ଡିତ୍ୟ, ଭାବମଧୁରତ୍ୱ, ରଚନା-ପାଟବ, ପ୍ରାଞ୍ଜଳଭାଷା, ଔଦାର୍ଯ୍ୟ, ଗାମ୍ଭୀର୍ଯ୍ୟାଦି ଉତ୍କୃଷ୍ଟ କାବ୍ୟ ଲକ୍ଷଣମାନ ଊନବିଂଶ ବର୍ଷବୟସ୍କ ଯୁବକ ପକ୍ଷରେ ସୁଲଭ ବୋଲି ପ୍ରତୀୟମାନ ହୁଏ ନାହିଁ । ଏହାର ସବିସ୍ତର ବିଚାର ସୁବିଧା ଓ ଅବକାଶ ମିଳିଲେ କରିବାର ଆକାଙ୍କ୍ଷା ହୃଦୟରେ ପୋଷଣ କରି, ନିଜର ଆର୍ଥିକ ଅବସ୍ଥାର ମନ୍ଦତା ଦୃଷ୍ଟିରେ ଦୁଃଖିତ ହୋଇ ବର୍ତ୍ତମାନ ନିବୃତ୍ତ ହେଲି ।

(କବି 'ପ୍ରେମଚିନ୍ତାମଣି' କାବ୍ୟକୁ ୧୯ ବର୍ଷ ବୟସରେ ଆରମ୍ଭ କରି ଶେଷ କରିଥିବା ଉକ୍ତ କାବ୍ୟରେ ଉଲ୍ଲେଖ କରିଅଛନ୍ତି । ୨୦ ବର୍ଷ ବୟସରେ 'ପ୍ରେମକଳା' ଆରମ୍ଭ କରିଥିଲେ । ଏହା 'ପ୍ରେମକଳା'ରେ ଲିଖିତ ଅଛି । 'ରସବତୀ' ୨୪ ବର୍ଷ ବୟସରେ ଶେଷ କରିଥିଲେ । 'ସୁଲକ୍ଷଣା' ୨୭ ବର୍ଷ ବୟସରେ ଶେଷ କରିଥିବା କାଳ ଗଣନାରୁ ଜଣାଯାଏ ।)

ଅନେକଙ୍କର ପୂର୍ବ୍ବ ଧାରଣା, 'ବିଦଗ୍ଧ-ଚିନ୍ତାମଣି' ଶ୍ରୀମଦ୍ରୂପ ଗୋସ୍ୱାମୀକୃତ ସଂସ୍କୃତ 'ବିଦଗ୍ଧ-ମାଧବ' ନାଟକ ଅନୁକରଣରେ ଲିଖିତ । ଏହା ସମ୍ପୂର୍ଣ୍ଣ ସତ୍ୟ ନୁହେ । ଅଭିମନ୍ୟୁ 'ବିଦଗ୍ଧମାଧବ', 'ଲଳିତ-ମାଧବ', 'ଉଜ୍ଜ୍ୱଳ ନୀଳମଣି' 'ଭକ୍ତିରସାମୃତସିନ୍ଧୁ' ପ୍ରଭୃତି ବୈଷ୍ଣବ ଗ୍ରନ୍ଥ, ସାଧୁଚରଣ ଦାସଙ୍କ କୃତ "ଯୁଗଳ-ରସାମୃତଲହରୀ" "ଚୌରଚିନ୍ତାମଣି" ଆଦି ଗ୍ରନ୍ଥ; ବ୍ରହ୍ମବୈବର୍ତ୍ତ, ବିଷ୍ଣୁପୁରାଣାଦି ଓ ଉପେନ୍ଦ୍ର ଭଞ୍ଜଙ୍କ 'ଲାବଣ୍ୟବତୀ', 'ବୈଦେହୀଶବିଳାସ' ଆଦି ଗ୍ରନ୍ଥମାନଙ୍କ ଅନୁକରଣ ବା ଅବଲମ୍ବନରେ ବିଦଗ୍ଧ-ଚିନ୍ତାମଣିର ଆଧିକାରିକ ଓ ପ୍ରାସଙ୍ଗିକ ବା ଆନୁଷଙ୍ଗିକ ବିଷୟମାନ ରଚନା କରିଅଛନ୍ତି ସତ୍ୟ, କିନ୍ତୁ ନିଜର ଅଗାଧ ପାଣ୍ଡିତ୍ୟ ଓ ଅଲୋକସାମାନ୍ୟ ପ୍ରତିଭା ବଳରେ ସେ ଏକ ଅପୂର୍ବ, ଅଭିନବ, ମନୋହର ଭକ୍ତିରସାତ୍ମକ କାବ୍ୟ ନିର୍ମାଣ କରି ଉତ୍କଳଭାରତୀ କ୍ଷେତ୍ରକୁ ଅଲଂକୃତ କରିଅଛନ୍ତି ।

ଟୀକାରେ ଏ ବିଷୟର ବିସ୍ତାର କରିବାକୁ ମନସ୍ଥ କରି ବର୍ତ୍ତମାନ ଗ୍ରନ୍ଥର ବିଶାଳତା ଭୟରୁ ମୁଁ ଏଥିରୁ ନିବୃତ୍ତ ହେଲି ।

'ବିଦଗ୍ଧ-ଚିନ୍ତାମଣି'ର ନାୟକ ଶ୍ରୀକୃଷ୍ଣ, ନାୟିକା ଶ୍ରୀରାଧା, ବିଷୟ ବୃନ୍ଦାବନର ଲୀଳା । ଏଠାରେ କୃଷ୍ଣ କିଶୋର,—ରାଧା କିଶୋରୀ; ରସ—ଶୃଙ୍ଗାର, ଉଜ୍ଜ୍ୱଳ, ମଧୁର । କୃଷ୍ଣ ମାଧୁର୍ଯ୍ୟମୟ, ରାଧା ମାଧୁର୍ଯ୍ୟମୟୀ । ପ୍ରୌଢ଼ ପରକୀୟା, ନାରୀ ସମର୍ଥା । ପୂର୍ବରାଗର ବର୍ଣ୍ଣନ ଶୃଙ୍ଗାରମିଶ୍ରିତ କରୁଣାତ୍ମକ । ଶ୍ରୀକୃଷ୍ଣଙ୍କ ସହ କିଶୋରୀଙ୍କ ମିଳନ ଓ ବିରହ ଅତି ବିଚିତ୍ର ରୂପରେ ସମ୍ପାଦିତ । ମିଳନର ପୂର୍ବଭାବ ଓ ବିରହର ପରଭାବ ପାଠ କଲେ ହୃଦୟର ସନ୍ଧି ବିସନ୍ଧି କରୁଣ ରସରେ ପରିପ୍ଲୁତ ହୋଇଯାଏ । ଭବଭୂତି ସଦୃଶ ଅଭିମନ୍ୟୁ ବିପ୍ରଲମ୍ଭ ଶୃଙ୍ଗାରର ବର୍ଣ୍ଣନରେ ଅଦ୍ଭୁତ ଶକ୍ତିଶାଳୀ ଥିଲେ । ଏହି ବର୍ଣ୍ଣନ ପ୍ରକ୍ରିୟାରେ ସେ ବାହ୍ୟପ୍ରକୃତି ଓ ଚିତ୍ତପ୍ରକୃତିର ସାଧାରଣ ଓ ସୂକ୍ଷ୍ମ ବିଷୟମାନ ଏପରି ସହଜ, ସୁନ୍ଦର ଓ ସରଳ ଭାବରେ ସମନ୍ୱୟ କରି ନିଜର କାରୁଣ୍ୟମୟ ଭାବୋଚ୍ଛ୍ୱାସର ପ୍ରକାଶିକା ଭାଷାରେ ଅଭିବ୍ୟକ୍ତ କରିଅଛନ୍ତି ଯେ, ପାଠକ ମାନେ ପଠନ ବା ଶ୍ରବଣ କାଳରେ ସେହି ବାହ୍ୟ ଓ ଚିତ୍ତପ୍ରକୃତିରେ ବିଳାସୀ ହୋଇପଡ଼ିବ । ତାହିଁରେ ଗେଟେଙ୍କ ଉକ୍ତି, "By which the soul is moved, enraptured, feasted and fed" ଚରିତାର୍ଥ ହୋଇଅଛି ।

"ବିଦଗ୍ଧ-ଚିନ୍ତାମଣି" ଆଦିରସାତ୍ମକ । ଆଜିକାଲି ଶିକ୍ଷିତ ଲୋକମାତ୍ରେ ଏହି ରସର ଅତିମାତ୍ର ବିଶ୍ଳେଷଣ ପ୍ରତି ହତାଦର ପ୍ରକାଶ କରନ୍ତି । କରିବାର ତ କଥା; ସେମାନଙ୍କ ଏ ରୁଚି ଦୋଷାବହ ନୁହେଁ । କିନ୍ତୁ ଏହି ମତରେ ମୁଁ ଗତାନୁଗତିକତା ପ୍ରବାହଗତି ଦେଖେଁ । ବସ୍ତୁବିଶେଷର ଅତିମାତ୍ର ବିସ୍ତାର ଦୋଷାବହ—ତାହା ମୁଁ ସ୍ୱୀକାର କରେ । କିନ୍ତୁ ଦେଶକାଳପାତ୍ରର ବିସ୍ତାର ମଧ୍ୟ ତତ୍‌ସଙ୍ଗେ କରଣୀୟ ।

କାଳିଦାସ, ଭବଭୂତି, ବାଣଭଟ୍ଟ, ମାଘ, ଶ୍ରୀହର୍ଷଙ୍କ କୃତିରେ ଶୃଙ୍ଗାର ରସର ପ୍ରାଧାନ୍ୟ ଦେଖି ଭୋଜରାଜ "ରସସରସ୍ୱତୀକଣ୍ଠାଭରଣ"ରେ କହିଅଛନ୍ତି "ଶୃଙ୍ଗାରୀ ଚେତ୍, କବିଃ" ।

ଆଜି କାମଶାସ୍ତ୍ର ଉପେକ୍ଷିତ; କାରଣ ତଦ୍ୱାରା ସମାଜରେ ବିଶୃଙ୍ଖଳା ଓ ବ୍ୟଭିଚାରିତାର ଆଶଙ୍କା ଲୋକେ କରନ୍ତି । କାମସୂତ୍ରପ୍ରଣେତା ଜିତେନ୍ଦ୍ରିୟ ମହାପ୍ରାଣ ବାତ୍ସ୍ୟାୟନ ଜଗତର ସୁପ୍ରଜନନ ତଥା ପ୍ରକୃତ ମାନବ ଜୀବନର ସଙ୍ଗଠିତ ନିମିତ୍ତ କରୁଣୈକହୃଦୟରେ ଯେ ଶାସ୍ତ୍ର ଲେଖିଅଛନ୍ତି, ତାହା ପାଠ କଲେ ଜଣାଯାଏ, ତାହା କାମୁକ ନିମିତ୍ତ—ପାଶବବୃତ୍ତିର ଚରିତାର୍ଥତା ନିମିତ୍ତ ଲିଖିତ

ହୋଇ ନାହିଁ;—ତାହା ଜଗତର ମଙ୍ଗଳ ନିମିତ୍ତ, ଜୀବନକୁ ନିୟମିତ କରିବା ନିମିତ୍ତ । ମାନବଜୀବନର ସୂକ୍ଷ୍ମ ପର୍ଯ୍ୟାଲୋଚନା ଦ୍ୱାରା ଯେଉଁ ଆର୍ଯ୍ୟ ଧର୍ମ, ଅର୍ଥ, କାମ, ମୋକ୍ଷକୁ ଚତୁର୍ବର୍ଗ ବା ଜୀବନର ଅପରିତ୍ୟାଜ୍ୟ ମୁଖ୍ୟ ଉଦ୍ଦେଶ୍ୟ ଚତୁଷ୍ଟୟ ବୋଲି ନିର୍ଦ୍ଧାରଣ କରିଥିଲେ, ସେହି ଆର୍ଯ୍ୟ କାମର ଉପଯୋଗିତା ଉପଲବ୍ଧି କରି-ଥିଲେ ଏବଂ ତାହାର ବିଚାର ବିଶ୍ଳେଷଣରେ ପ୍ରବୃତ୍ତ ହୋଇଥିଲେ । ସାର୍ବଜନୀନ ମଙ୍ଗଳସାଧନପରାୟଣ ସେହି ଆର୍ଯ୍ୟ ମାନବ ପ୍ରକୃତିର କୌଣସି ଶକ୍ତିକୁ ଏକା-ବେଳେ ଉପେକ୍ଷା କରି ପାରି ନ ଥିଲେ ବା ଆଧୁନିକମାନଙ୍କ ପ୍ରାୟ ଅବଶ୍ୟମ୍ଭାବୀକୁ ତୁଚ୍ଛ ମନେ କରି ଚକ୍ଷୁ ମୁଦ୍ରିତ କରି ପାରି ନ ଥିଲେ । ଏତଦ୍ଦୃଷ୍ଟିରେ ମହାକବି କାଳିଦାସଙ୍କଠାରୁ ଶ୍ରୀହର୍ଷଙ୍କ ପର୍ଯ୍ୟନ୍ତ କବିମାନେ ସ୍ୱ କୃତିର ସ୍ଥଳବିଶେଷରେ କାମସୂତ୍ରାନୁଯାୟୀ ବାକ୍ୟମାନ ଯୋଜନା କରିଅଛନ୍ତି । ଏହି ଲୋକଶିକ୍ଷକମାନଙ୍କର ଏବଂବିଧ ଆଚରଣ ଦୋଷାବହ ନୁହେଁ, ବରଂ ଶ୍ରେୟସ୍କର ।

ଉତ୍କଳ-ସାହିତ୍ୟରେ ଆଦି ରସର ସୂତ୍ରପାତ ପ୍ରଥମତଃ ଶୂଦ୍ରମୁନି ଶାରଳା-ଦାସଙ୍କଠାରୁ ଆରମ୍ଭ ହୋଇଥିଲେହେଁ, ରାମାୟଣକାର ବଳରାମ ଦାସ ଏହାର ଅତିମାତ୍ର ବିଶେଷଣର ପଥପ୍ରଦର୍ଶକ । ଏହାର ପରିପୁଷ୍ଟିର ସୀମା ଉପେନ୍ଦ୍ର ଭଞ୍ଜଙ୍କ କୃତିରେ ପରିଦୃଷ୍ଟ । ଅଭିମନ୍ୟୁ ପ୍ରଭୃତି ପରବର୍ତ୍ତୀ କବିମାନେ ଏ ବିଷୟରେ ଭଞ୍ଜଙ୍କ ପଦାଙ୍କ ଅନୁସରଣ କରିଅଛନ୍ତି ମାତ୍ର । ଯାହା ହେଉ, "ସର୍ବମତ୍ୟନ୍ତଂ ଗର୍ହିତମ୍ ।" ସେଥିରେ ଦୋଷାରୋପ ନ କରିବା ମଧ୍ୟ ଅନୁଚିତ । ଦୋଷ ଅଛି । କିନ୍ତୁ କେବଳ ଦୋଷ ଦର୍ଶନ ଛଳରେ କବିଙ୍କର କୃତି ପାଠ କରିବା ଶୂକରର ବୃତ୍ତି ମାତ୍ର ସିନା ।

ଆଦିରସ "ବିଦଗ୍ଧ-ଚିନ୍ତାମଣି"ର ସ୍ଥାୟୀ ରସ ନୁହେ; ତାହା ମଧୁର । ମୁଁ "ରହସ୍ୟମଞ୍ଜରୀ"ର ମୁଖବନ୍ଧରେ କହିଅଛି, ରାଧାକୃଷ୍ଣବିଷୟକ ରତିକୁ ଶୃଙ୍ଗାର, ଉଜ୍ଜ୍ୱଳ, ମଧୁର ରସ କୁହାଯାଏ । ସେ ରତି ପରକୀୟା; ଶ୍ରୀକୃଷ୍ଣ ଭଗବାନ୍ ନରଦେହ ଆଶ୍ରୟ କରି ଆଦର୍ଶମାନବୋଚିତ ଲୀଳାମାନ କରିଅଛନ୍ତି । ରାଧା ମଧ୍ୟ ମାନବରୂପ ପରିଗ୍ରହପୂର୍ବକ ମାନବୋଚିତ କ୍ରିୟାକଳାପ କରିଅଛନ୍ତି । ସେ ଉଭୟଙ୍କ ଚରିତରେ ମାନବ ଧର୍ମ, ମାନବ ଆଚାର ପରିଦୃଷ୍ଟ ହୁଏ । ଗୋପୀମାନଙ୍କ ସହିତ ତାହାଙ୍କ ରମଣ ମାନବୋଚିତ—କାରଣ ସେ ମାନବ, ଗୋପୀମାନେ ମାନବୀ । ମାତ୍ର ଏହି ମାନବତ୍ୱ ମଧ୍ୟରେ ଦେବତ୍ୱ କେତେଦୂର ପରିସ୍ଫୁଟ ହୋଇ-ପାରେ, ତାହା ଏହି ଗୋପଲୀଳାରେ ପରିଦୃଷ୍ଟ । ଦ୍ୱାରବତୀ ଓ ମଥୁରାର ପ୍ରିୟାମାନେ ମଧ୍ୟ ମାନବୀ । ତାଙ୍କ ସହିତ ମଧ୍ୟ ମାନବୋଚିତ ରମଣ; କିନ୍ତୁ ତାହା ଗୋପଲୀଳା ପ୍ରାୟ ଉଚ୍ଚସ୍ଥାନୀୟ ନୁହେ । ସେହି ମାନବଧର୍ମରେ ତାରତମ୍ୟ ଅଛି । କୃଷ୍ଣ ସର୍ବତ୍ର ସମାନ ନୁହନ୍ତି । ପ୍ରିୟାମାନେ ମଧ୍ୟ ସମାନ ନୁହନ୍ତି । ରମଣରେ ମଧ୍ୟ ଭେଦ ଅଛି ।

ଭଗବାନଙ୍କର ଭକ୍ତ ପ୍ରିୟମାନଙ୍କ ରତିବର୍ଣ୍ଣନ ମାନବୋଚିତ କରିବାକୁ କବି ବାଧ୍ୟ । ପୁରାଣକାରମାନେ ତାହାହିଁ କରିଅଛନ୍ତି । ସେହି ହେତୁ ଶ୍ରୀକୃଷ୍ଣଙ୍କ ଗୋପଲୀଳା-ବିଷୟକ କାବ୍ୟମାନ ଶୃଙ୍ଗାରରସାଶ୍ରିତ । ବିଦ୍ୟାପତି ଚଣ୍ଡୀଦାସଙ୍କ ଠାରୁ ଆରମ୍ଭ କରି ପ୍ରାଚୀନ ଧରଣର ଅଧୁନାତନ କବିମାନଙ୍କ ପର୍ଯ୍ୟନ୍ତ ସମସ୍ତେ ସେହି ଶୃଙ୍ଗାର ରସକୁ ଅତିମାତ୍ର ବିଶ୍ଳେଷଣ କରି ଅଶ୍ଳୀଳତାର ସୀମାକୁ ଅଧିକାର କରିଅଛନ୍ତି । ସେହି ଅଶ୍ଳୀଳତାକୁ ଗ୍ରହଣ କରିବାରେ ମଧ୍ୟ ଭକ୍ତକବି ତତ୍ତ୍ୱବିଷୟର ବିଧିର ପ୍ରସଙ୍ଗରେ ବାଧ୍ୟ ହୁଅନ୍ତି । ତନ୍ମଧ୍ୟ ଜୟଦେବ 'ଗୀତଗୋବିନ୍ଦ'ରେ ଆପାତ ମାନବରୁଚିବିଗର୍ହିତ ପୁରୁଷାୟିତାଦିକୁ ସ୍ଥାନ ଦେଇଅଛନ୍ତି ।

ଶ୍ରୀକୃଷ୍ଣ ପରମ-ଆତ୍ମା, ରାଧା ପ୍ରକୃତି । ଯେତେବେଳେ ପ୍ରକୃତି କୃଷ୍ଣଙ୍କ ଅଧୀନ, ତେତେବେଳେ ପରମ ଉପରି ଏବଂ ପ୍ରକୃତି ଅଧଃ । ପ୍ରକୃତି ପୁରୁଷର ସମ୍ପର୍କରେ ବା ସମତାକୁ ଆପଣାକୁ ଆଣି ପାରିବାରେ ସ୍ୱତଃ ଅକ୍ଷମ—ଯାହା ଇଂରାଜୀ ଭାଷାରେ "God is transcendent" । ସେତେବେଳେ ଭଗବାନ୍ 'ଲୀଳାବିଧୃତକଳେବର' ନୁହନ୍ତି । ଯେତେବେଳେ ଭଗବାନ୍ ଲୀଳାବପୁ ଧାରଣ କରନ୍ତି, ସେତେବେଳେ ତାଙ୍କ ଲୀଳା ପ୍ରକୃତିରେ,—ପ୍ରକୃତିର ଅନ୍ତରରେ । ତାହା 'ଗୀତଗୋବିନ୍ଦ' କବି ଓ ଅନ୍ୟାନ୍ୟ କବିମାନେ ପ୍ରକୃତିର ପୁରୁଷାୟିତ ବୋଲି କହନ୍ତି । ଏହାକୁ ଇଂରାଜୀ ଭାଷାରେ "God is immanent" କୁହାଯାଏ । ପୂର୍ବୋକ୍ତ ଉଭୟବିଧ ବିଷୟର ପ୍ରପଞ୍ଚ-କ୍ରିୟାରେ ଘୋର ଅଶ୍ଳୀଳତା ଅବଲମ୍ବିତ ହୋଇଅଛି । ସାଧାରଣ ଦୃଷ୍ଟିରେ ଏହା ଅଶ୍ଳୀଳବତ୍ ପ୍ରତୀୟମାନ ହୁଏ; କିନ୍ତୁ ଉତ୍କଳର ପ୍ରତ୍ୟେକ ଭକ୍ତକବି ତାହା ବର୍ଣ୍ଣନ କରି ନିଜର ଲମ୍ପଟଭାବ ଅଭିବ୍ୟକ୍ତ କରିଅଛନ୍ତି କି ? ସେମାନଙ୍କ କାବ୍ୟପାଠ କରିବାରେ ସେମାନଙ୍କର ଯେ ହୃଦୟର ଭାବ ପ୍ରକାଶିତ ହୁଏ, ତାହା ଭକ୍ତି-ପ୍ରଣୋଦିତ ଏବଂ ଦୀନତା ଓ ହୀନତା ପ୍ରଖ୍ୟାପକ । ସେ ହୃଦୟରେ ବିଷୟବାସନାର ଗନ୍ଧ ଥିଲି ପରି କଣାଯାଏ ନାହିଁ । ତାହା ଥାଇ ପାରେ । ତାହାର ସ୍ଥାନ କିନ୍ତୁ ଅନ୍ୟତ୍ର; ଏ ପ୍ରସଙ୍ଗରେ ତାହାର ଅବକାଶ ନାହିଁ । ଯାହା କିଛି ପରିଦୃଷ୍ଟ ହୁଏ, ତାହା ପ୍ରସଙ୍ଗର ଅନୁରୋଧରେ ଓ ତଦ୍‌ବିଷୟକ ପରମ୍ପରାର ସଂରକ୍ଷଣରେ । ଦେବଦୁର୍ଲଭ, ଦୀନକୃଷ୍ଣ, ଭକ୍ତଚରଣ, ସାଧୁଚରଣ, ଦାଶରଥି, ବୈଦେହୀଶକାର ଉପେନ୍ଦ୍ର ଓ ବିଦଗ୍ଧଚନ୍ତାମଣିକାର ଅଭିମନ୍ୟୁଙ୍କର ହୃଦୟ ଲମ୍ପଟ ଭାବାଶ୍ରିତ କି ? ହଁ, ଲମ୍ପଟଭାବାଶ୍ରିତ; ତାହା ରାଧାକୃଷ୍ଣ ଓ ରାମଙ୍କ ରସଗ୍ରହଣରେ ।

> Then was not guilty shame, dishonest shame
> Of Nature's works. Honour dishonourable
> Sinbred, how have ye troubled mankind
> With shows instead, mere shows of seeming pure

And banished from man's life his happiest life
Simplicity and spotless innocence."

Milton

ବର୍ତ୍ତମାନ କବିଙ୍କ ଭାଷା ଓ ବାକ୍ୟଯୋଜନା ସମ୍ବନ୍ଧରେ ପଦେ ଅଧେ କହିବା ଆବଶ୍ୟକ । କବିଙ୍କ ଉକ୍ତିରେ, "ଦ୍ରବ୍ୟ ଅଦ୍ରବ୍ୟ ଭାଷାରେ ପଦ ହେବ ସିଦ୍ଧି; ଦେଖି ମହାଜନ ମାର୍ଗପରମ୍ପରା ବିଧି ।" ଏହା ଦଣ୍ଡାଚାର୍ଯ୍ୟଙ୍କର ସଂସ୍କୃତ "ଇହ-ଶିଷ୍ଟାନୁଶିଷ୍ଟା ନାଂ ଶିଷ୍ଟାନାମପି ସର୍ବଥା । ବାଚାମେବ ପ୍ରସାଦେନ ଲୋକଯାତ୍ରା ପ୍ରବର୍ତ୍ତତେ ।" ଉକ୍ତିର ପ୍ରତିଧ୍ୱନି । ସଂସ୍କୃତ, ପ୍ରାକୃତ ଓ ଦେଶୀୟ ପୂର୍ବପ୍ରଚଳିତ ସିଦ୍ଧଶବ୍ଦାବଳୀରେ କାବ୍ୟ ଲିଖିତ ହେବ ବୋଲି କବି ମୂଳରେ ସୂଚନା ଦେଇଅଛନ୍ତି । କବି ତାହା କରିଅଛନ୍ତି ମଧ୍ୟ । ଅଧିକନ୍ତୁ ଲୋକ-ବ୍ୟବହାର ହିନ୍ଦି, ଫାର୍ଶୀ ଶବ୍ଦମାନଙ୍କର ବିନ୍ୟାସରେ କୁପମଣ୍ଡୁକତ୍ୱ ମଧ୍ୟ ପରିହାର କରିଛନ୍ତି । ତାଙ୍କ ଭାଷାର ଗତି ବା ମାର୍ଗ ପ୍ରତି ଦୃଷ୍ଟିପାତ କଲେ ଜଣାଯାଏ, ସେ ଭାଷା ପ୍ରାକୃତିକ ( Natural ) ପରମ୍ପରାଗତ । ସେ ଭାଷାର ସଂସ୍ଥାନ ଆଧୁନିକ ଲେଖକଙ୍କର ଭାଷା ସଂସ୍ଥାନଠାରୁ ପୃଥକ୍ । ସେ ଭାଷାର ବଳ ଆଧୁନିକ ଲେଖକଙ୍କ ଭାଷାରେ ପରିଦୃଷ୍ଟ ହୁଏ ନାହିଁ । ଆଜି ଭାଷାର ଦୁର୍ବଳତା ଆସିଅଛି । ଭାଷା କ୍ଷୀଣ ଅଳ୍ପପ୍ରାଣ ଶିଶୁବତ୍ ସର୍ବଦା ପ୍ରତ୍ୟୟ-ଧାତ୍ରୀଙ୍କ ଆଲମ୍ବନ ଲୋଡ଼ୁଅଛି । ଭାଷାର ଏହି ଦୁର୍ବଳତା ଓ ପରିବର୍ତ୍ତନ ନିମିତ୍ତ ଆଧୁନିକ ଯୁଗର ପ୍ରାଥମିକ ଲେଖକମାନେ ଦାୟୀ । ସେମାନେ ଯେ ପ୍ରାଚୀନ ସାହିତ୍ୟ ପଢ଼ି ନ ଥିଲେ, ତାହା ନୁହେଁ, କିନ୍ତୁ ନିଜଠାରେ ପ୍ରାଚୀନତାର ଭ୍ରମ ରଖିବାରେ ଅପାରଗ ହୋଇଥିଲେ । ଆମ୍ଭେମାନେ ମଧ୍ୟ ଆଜିକାଲି ଆଧୁନିକ ଶିକ୍ଷା ଶୈଳୀର ବଶବର୍ତ୍ତୀ ହୋଇ ସେହି ଆଧୁନିକ ଲେଖକଙ୍କର ଗ୍ରନ୍ଥାଦି ବାଲ୍ୟକାଳରୁ ପାଠ କରି ପ୍ରାଚୀନ ଭାଷାର ସଂସ୍ଥିତି ଉପଲବ୍ଧିରେ ଅକ୍ଷମ ହୋଇ ପଡ଼ୁଅଛୁଁ । ମୋର ଏହି ଉକ୍ତି ଅଯୁକ୍ତରୂପେ ପ୍ରତୀୟମାନ ହୋଇପାରେ; କିନ୍ତୁ ବିଚାର କରି ଦେଖିଲେ ତାହା ସେପରି ନୁହେ । ଏହାର ଯଥାର୍ଥ୍ୟ ପ୍ରତିପାଦନ ନିମିତ୍ତ ପ୍ରାଚୀନ ଭାଷା ସଂସ୍ଥାନର କେତେ ଉଦାହରଣ ନିମ୍ନରେ ପ୍ରଦତ୍ତ ହେଲା—

୧—"ଆହେ ତ୍ରିଭୁବନ ମୋହନ । ଭବନ ଅନ୍ଧାର, ଜୀବନ ଯାଉଛି ।"

୨—"କହିବା, ପାଶବଶିକ ଗୋ, ତାରିବ ଆମ୍ଭଙ୍କୁ, କରିବ ଯେବେ କାର୍ଯ୍ୟ ।"

୩—"ତା କଥନ-ମୁଖ ଦେଖି ହରି ହୃଦେ ଆନନ୍ଦଚନ୍ଦ୍ର ଉଦ୍ଭିଲନ ।"

୪—କରି, କରି ମୁଁ ଧରୁଛି, ଉପାୟ ସରୁଛି ରାଧା ନା, କୃପା ବିସ୍ତାର, ତାର ।"

୫—"ହାସ ରସ ବେଶ ବାସ ଗ୍ରାସ ଆଶ ବିପ ସମାନ ରଚିଲାନ ।"

୬—"ଲାଜ ଧଇର୍ଯ୍ୟ କୁଳ ଶୀଳ ବିବେକ ଚଡ଼ାଇ ଦେକ ମୋଡ଼ିଲାନ ।"

୭—"ଜୀବ କି ପରମେ, ମନ ପୁରୁଷେ ମିଶେ ।"

ଶବ୍ଦାଲଙ୍କାର ଓ ଅର୍ଥାଲଙ୍କାର ବିଷୟରେ କବି ଉପେନ୍ଦ୍ରଭଞ୍ଜଙ୍କ ପଦାଙ୍କ ଅନୁସରଣ କରି ଅପ୍ରାକୃତିକତା ଦୋଷରେ ଦୋଷୀ ବୋଲି ପ୍ରତୀୟମାନ ହୁଅନ୍ତି । ୩୪ଶ ଛାନ୍ଦରେ ନାନା ଅଲଙ୍କାରଯୁକ୍ତ ପଦାବଳୀରେ ଦୁଇ ଅର୍ଥ, ତିନି ଅର୍ଥ, ଗୂଢ଼ ଅର୍ଥବିଶିଷ୍ଟ ବାକ୍ୟଯୋଜନାରେ କବି ଶ୍ରୀକୃଷ୍ଣ ବିଳାପ କରାଇଅଛନ୍ତି । ଏହା ଅପ୍ରାକୃତିକ ( unnatural ) ।ଶ୍ରୀକୃଷ୍ଣଙ୍କ ଭଳି ନାୟକମୁଖରେ ଏପରି ବାକ୍ୟଯୋଜନା ଦୋଷାବହ ନୁହେଁ ବୋଲି କିଛି ସମର୍ଥନ କରିବା ଉଚିତ ମନେ କରୁନାହିଁ । କିନ୍ତୁ କବିଙ୍କ ହୃଦୟ ଯେତେବେଳେ ରସପୂର୍ଣ, ସେତେବେଳେ ସେ କି ସହଜ ସରଳ ଭାଷାରେ ଦିବ୍ୟ କୋକିଳବତ୍ ଅମୃତଧାରା ଢାଳିଅଛନ୍ତି ! ଉପେନ୍ଦ୍ରଭଞ୍ଜଙ୍କ ଉକ୍ତିରେ "ପଦ ସରଳ ଧ୍ୱନିରେ ମାନସ ମୋହିବ ।" ଏଥିପ୍ରତି ଅଭିମନ୍ୟୁ ଯେ ଦୃଷ୍ଟି ଦେଇ ନ ଥିଲେ, ତାହା ନୁହେ, କିନ୍ତୁ ଯୁଗର ପ୍ରଭାବ, ତଥା ପାଣ୍ଡିତ୍ୟର ପ୍ରଭାବ, ବୁଦ୍ଧିମତ୍ତାର ପରିଚୟ, ବିଚିତ୍ର ବିନ୍ଧାଣୀର କୌଶଳ— ସମସ୍ତ ଏକାଧାରରେ କାର୍ଯ୍ୟ କରି କାବ୍ୟର ବିଶେଷ ଅଂଶକୁ ଅପ୍ରାକୃତିକ, ଦୁର୍ଭର ବେଶବିନ୍ୟାସରେ ଅଲଙ୍କୃତ କରିଅଛି ।

ଆଜିକାଲି ଆମ୍ଭେମାନେ ପ୍ରାୟ ସମସ୍ତେ ତରଳ ସରଳ ସହଜ ଭାଷାରେ ଆନନ୍ଦ ଉପଲବ୍ଧି କରୁଁ । ତାହା ତ କରିବାର କଥା । ଅଲଙ୍କାରବର୍ଜିତ ବିଷୟରେ ରୁଚି କଳାହୀନତାର ପରିଚାୟକ ସିନା । କଳା ଉତ୍କୃଷ୍ଟ ଜୀବନର ଅବଲମ୍ବନ । ତଦନୁଯାୟୀ ଆମ୍ଭମାନଙ୍କର ଏପରି ସାହିତ୍ୟିକ ରୁଚି ପ୍ରାକୃତ ଜୀବନର ପରିମାପକ ନୁହେ କି ? ପକ୍ଷାନ୍ତରେ ସ୍ୱଭାବସୁନ୍ଦର ବିଷୟରେ ଅତ୍ୟଧିକ ଅଲଙ୍କାରର ବିନ୍ୟାସ ମଧ୍ୟ ନିଷ୍ପ୍ରୟୋଜନ, ତଥା ଦୋଷାବହ । ତାହା ଭଞ୍ଜୀୟ ସାହିତ୍ୟରେ ବହୁଳ ପରିମାଣରେ ଦୃଷ୍ଟ ହୁଏ । ସାଧୁଚରଣ ଦାସଙ୍କ କୃତିରେ ମଧ୍ୟ ତାହା ସ୍ଥାନବିଶେଷରେ ପରିଲକ୍ଷିତ । ଉପେନ୍ଦ୍ର ଓ ସାଧୁଚରଣ ଅଭିମନ୍ୟୁଙ୍କ ଆଦର୍ଶ । ସେହି ଆଦର୍ଶଦ୍ୱୟର ପ୍ରଭାବରେ ଆକୃଷ୍ଟ ହୋଇ ସେ ଯେଉଁ ସ୍ଥାନରେ ଅବସ୍ଥାପିତ, ତାହା ହେୟ ଜ୍ଞାନ କରିବା ଉଚିତ ନୁହେଁ ।

ଆଧୁନିକ ସାହିତ୍ୟିକମାନେ ପ୍ରାଚୀନ ରାଗରାଗିଣୀ ଓ ବୃତ୍ତି ପ୍ରତି ବୀତସ୍ପୃହ ହୋଇ ପଡ଼ୁଅଛନ୍ତି । ଏହାର ପ୍ରଧାନ କାରଣ ଆଲୋଚନାର ଅଭାବ । ସ୍ଥଳ ବିଶେଷରେ ପଣ୍ଡିତମ୍ମନ୍ୟ ସାହିତ୍ୟମାନେ କହନ୍ତି, ସାହିତ୍ୟରେ ଆଉ ପ୍ରାଚୀନ ବୃତ୍ତି ନ ଦେଲେ ଚଳେ, ସେ ସବୁ ନିଷ୍ପ୍ରୟୋଜନ । କିନ୍ତୁ ମନେ ରଖିବା ଉଚିତ, ବୃତ୍ତି ସହିତ ସଙ୍ଗୀତର ଘନିଷ୍ଠ ସମ୍ପର୍କ ବିଦ୍ୟମାନ । ଉତ୍କଳର ଏହି ଶ୍ରମକାତର ଯୁଗରେ ମଧ୍ୟଯୁଗର ଶବ୍ଦନିଗଡ଼ନିବଦ୍ଧ କାବ୍ୟମାଳା ଯେ ଅଦ୍ୟାପି ପଲ୍ଲୀର ଜନସାଧାରଣଙ୍କ ଜୀବନରେ ଜାଗ୍ରତ ଅଛି, ତାହାର ପ୍ରଧାନ କାରଣ ସଙ୍ଗୀତମୟତ୍ୱ । ଯେ ଜାତିର ସାହିତ୍ୟ ଯେତେ ସଙ୍ଗୀତମୟ, ସେ ଜାତିର ପ୍ରାଣ ସେତିକି ଉଚ୍ଚ । ଆମ୍ଭର ଆଧୁନିକ ସହଜପନ୍ଥୀ ଜାତି ସେହି ସଙ୍ଗୀତମୟ ବୃତ୍ତି-

ମାନଙ୍କର ବ୍ୟବହାରନିୟମ ରକ୍ଷା କରିବା ଦୂରେ ଥାଉ, ତାହା ବୁଝିବାକୁ ସୁଦ୍ଧା ଅସମର୍ଥ । ନୋହିଲେ କି ରଥେ କହିଥାନ୍ତେ, "କେବଳ କାବ୍ୟ ଚର୍ଚ୍ଚାରେ କାଳେ ଅବସର ନ ସରିବ, ଏଥିପାଇଁ ତଦାନୀନ୍ତନ କବିମାନେ ସ୍ୱୀୟ କବିତାକୁ ଏପରି ସ୍ୱରବ୍ରିଗିଣୀରେ ଛନ୍ଦ ଦେଇଅଛନ୍ତି ଯେ, ସେ ଦଣା-ଜଣାରେ ଅନେକ ପାଠକଙ୍କର ବହୁ କାଳ କଟୁଥିଲା ?" ଏ ଉକ୍ତି ଯଥାର୍ଥ ନୁହେଁ । ସେ ସାହିତ୍ୟିକ-ମାନେ ସାଧକ ଥିଲେ, ନିଜର କବିତାକୁ ସଙ୍ଗୀତମୟ କରିବାରେ ଯତ୍ନ କରୁଥିଲେ । ତେଣୁ ସେମାନଙ୍କର ମଧୁର ସଙ୍ଗୀତମୟ ଆତ୍ମା ସେହି ମାଧୁର୍ଯ୍ୟରସ ଜନସାଧାରଣଙ୍କୁ ବିତରଣ କରିବାରେ ସର୍ବଦା ଉତ୍କଣ୍ଠିତ ଥିଲା ।

ଦୁଃଖର ବିଷୟ, କବି ଗ୍ରନ୍ଥଟି ସମାପ୍ତ କରି ପାରି ନାହାନ୍ତି । ତାଙ୍କର ବୃନ୍ଦାବନପ୍ରାପ୍ତି ଏହାର ଅନ୍ତରାୟ ହେଲା । "ବିଦଗ୍ଧ-ଚିନ୍ତାମଣି" ପ୍ରାୟ ରସମୟ ପ୍ରକାଣ୍ଡ ସଙ୍ଗୀତ ମନ୍ଦିର ଉତ୍କଳର ଦୁର୍ଭାଗ୍ୟବଶତଃ ଚିରଦିନ ଅପୂର୍ଣ୍ଣ ରହିଲା ।

କବି ଅଭିମନ୍ୟୁ ଉତ୍କଳର କବିମଣ୍ଡଳୀରେ ଏକ ଉଚ୍ଚ ଆସନ ଅଧିକାର କରିଅଛନ୍ତି । ଉପେନ୍ଦ୍ର ଯେଉଁ କାବ୍ୟପଦ୍ଧତିର ସ୍ରଷ୍ଟା ବା ଦେଶିକ ତାହାର ସେ ପଥିକ, ଉତ୍କୃଷ୍ଟ ପଥିକ, ଉପଯୁକ୍ତ ମର୍ମଗ୍ରାହୀ । ସାଧୁଚରଣ ଉପେନ୍ଦ୍ରଙ୍କ ତୁଲ୍ୟ କାବ୍ୟରେ ବୈଚିତ୍ର୍ୟ ବିଧାନାର୍ଥ ସୁନ୍ଦର ଶବ୍ଦାଲଙ୍କାର ଓ ଅର୍ଥାଲଙ୍କାର ସ୍ୱୀୟ ବିବେଚକତ୍ୱରେ ଗ୍ରହଣ କରି ନିଜ କାବ୍ୟମାନଙ୍କ ଉପାଦେୟତାକୁ ହୃଦ୍ୟ କରିଅଛନ୍ତି ଓ ସ୍ଥାନେ ସ୍ଥାନେ ମହାଯମକାଦିର ପ୍ରସ୍ତାବନାରେ ସ୍ୱୀୟ ପାଣ୍ଡିତ୍ୟ ଦେଖାଇ ଅଛନ୍ତି । ଅଭିମନ୍ୟୁ ସ୍ୱଗୁରୁଙ୍କ ବିବେଚକତ୍ୱର ସାହାଯ୍ୟରେ ଓ ସ୍ୱୀୟ ବିବେକ ତୁଳନାରେ ତୁଳିତ ହେଲେହେଁ ସ୍ଥଳବିଶେଷରେ ଉପେନ୍ଦ୍ରଭଞ୍ଜୀୟ ପାଣ୍ଡିତ୍ୟ ଦେଖାଇ ସ୍ୱଗୁରୁଙ୍କ ବଳି ଯାଇ ନିଜ ଶକ୍ତିର ପରିଚୟ ଦେଇଅଛନ୍ତି ସତ୍ୟ; କିନ୍ତୁ ସେ ପ୍ରସଙ୍ଗରେ ଅପଣାର ସ୍ୱାତନ୍ତ୍ର୍ୟ ଦେଖାଇବାରେ କୃତକାର୍ଯ୍ୟ ହୋଇ ନାହାନ୍ତି । ସ୍ଥାନେ ସ୍ଥାନେ ଉପେନ୍ଦ୍ରଭଞ୍ଜଙ୍କ ଭାବକୁ ଅବିକଳ ଅବଲମ୍ବନ କରି ପୋଷ୍ୟବତ୍ ଆଚରଣ କରିଅଛନ୍ତି । ସରଳଭାବରେ କିନ୍ତୁ ସେ ରସିକହାରାବଳୀ ଓ ଲାବଣ୍ୟବତୀର କବିଙ୍କୁ ବଳି ପଡ଼ିଅଛନ୍ତି । ଏଠାରେ ମଧ୍ୟ ସାଧୁଚରଣ ତାହାଙ୍କର ପଥପ୍ରଦର୍ଶକ । ରହସ୍ୟମଞ୍ଜରୀ ଓ ମଥୁରାମଙ୍ଗଳର ସହଜତା, ସରଳତା ଓ ରମଣୀୟତା ଏଥିରେ ସୁନ୍ଦରରୂପେ ବିଳସିତ । ଗୌଡ଼ୀୟ ବୈଷ୍ଣବ ଦର୍ଶନର ତତ୍ତ୍ୱ ସାଧୁଚରଣ ସଦାନନ୍ଦଙ୍କ ବ୍ୟତୀତ ଅଭିମନ୍ୟୁଙ୍କ ପୂର୍ବରୁ କୌଣସି କବି ସ୍ୱ କାବ୍ୟରେ ଯଥାଯଥ ସ୍ଥାନ ଦେଇ ନାହାନ୍ତି । କାବ୍ୟବସ୍ତୁ ଶ୍ରୀରାଧା କୃଷ୍ଣ ବିଷୟକ ହେତୁ ଲୋକଗ୍ରାହୀ । କରୁଣ ଓ ଶୃଙ୍ଗାର ରସ ସରଳ ସହଜ ଓ ହୃଦ୍ୟ ଭାଷାରେ ଅଭିବ୍ୟକ୍ତ ଲଭିଥିବାରୁ ଏହା ଭଞ୍ଜଙ୍କ କୃତିମାନଙ୍କଠାରୁ ମଧ୍ୟ ବିଶେଷ ଲୋକଗ୍ରାହୀ ଓ ଲୋକପ୍ରିୟ ହୋଇଅଛି । ଅଭିମନ୍ୟୁ, ଉପେନ୍ଦ୍ର ଓ ସାଧୁଚରଣଙ୍କଠାରୁ ଅଧିକ ଭାଗ୍ୟବନ୍ତ, କାରଣ 'ବିଦଗ୍ଧ'ର ଛାନ୍ଦ ଯେପରି ଲୋକପ୍ରିୟ, ଅନ୍ୟ କୌଣସି ସେପରି

ନୁହେଁ । ଅଭିମନ୍ୟୁଙ୍କ ସ୍ୱାତନ୍ତ୍ର୍ୟବିଷୟରେ ମୁଁ କହେ ଯେ ଉପେନ୍ଦ୍ର, ଭଞ୍ଜ ଓ ସାଧୁଚରଣଙ୍କୁ ଗୁରୁ କରି ସେ ଯେ କାବ୍ୟ ନିର୍ମାଣ କରିଅଛନ୍ତି, ତାହାର ଆସନ ଭକ୍ତି ବିଷୟ ହେତୁ ସେମାନଙ୍କ କୃତିଠାରୁ ଉଚ୍ଚ ଓ ହୃଦୟସ୍ପର୍ଶୀ ।

ଏହି ଗ୍ରନ୍ଥର ସଙ୍କଳନରେ ମୋର ପ୍ରିୟଶିଷ୍ୟ ଶ୍ରୀମାନ୍ ଜଗଦାନନ୍ଦ ମହାନ୍ତି, ବି. ଏ. ମୋର ପ୍ରଧାନ ସହାୟ । ପ୍ରାୟ ଦୁଇବର୍ଷରୁ ଅଧିକ ସେ ଏ କାର୍ଯ୍ୟ ମୋ ସଙ୍ଗରେ ଶ୍ରମସ୍ୱୀକାରପୂର୍ବକ କରିଅଛନ୍ତି । ସେ ସାହାଯ୍ୟ ନ କରିଥିଲେ ଏ ଗୁରୁତର କାର୍ଯ୍ୟ ଏତେ ଶୀଘ୍ର ସମ୍ପାଦିତ ହୋଇପାରି ନ ଥାନ୍ତା । ଭଗବାନ ତାଙ୍କର ଏହି ସାହିତ୍ୟିକ ବୃତ୍ତିକୁ ବର୍ଦ୍ଧିତ କରି ତାଙ୍କୁ ଦେଶ ସେବାରେ ଲଗାନ୍ତୁ. ଏହାହିଁ ମୋର ପ୍ରାର୍ଥନା ।

ଶ୍ରୀ ଆର୍ତ୍ତବଲ୍ଲଭ ମହାନ୍ତି
ତା। ୬-୭-୨୫

---

## ଦ୍ୱିତୀୟ ମୁଦ୍ରଣ

ସହୃଦୟ ପାଠକଗଣ,

ଏହି ସଂସ୍କରଣରେ ମୂଳ ପାଠ ସହ ଟୀକା ପ୍ରଦତ୍ତ ହେଲା । ଏହି ଟୀକା ଲେଖିବାରେ ପଣ୍ଡିତ ଶ୍ରୀ ଭୁବନେଶ୍ୱର ରଥ ମହୋଦୟ ପ୍ରଧାନ ସାହାଯ୍ୟକାରୀ ଅଟନ୍ତି । ମୋର ପ୍ରିୟ ଛାତ୍ର ସଂସ୍କୃତ କଲେଜର ପ୍ରିନ୍‌ସିପାଲ ପଣ୍ଡିତ ଶ୍ରୀ କରୁଣାକର କର, ଏମ୍. ଏ., କାବ୍ୟବ୍ୟାକରଣତୀର୍ଥ ମଧ୍ୟ ଏ ବିଷୟରେ ଯଥେଷ୍ଟ ସହାୟତା ଦାନ କରିଅଛନ୍ତି । ଏ ଅତୀବ କଠିନ ଗ୍ରନ୍ଥ । ଏହାର ଟୀକା ପ୍ରମାଦଶୂନ୍ୟ, ଏହା କହିବା ଧୃଷ୍ଟତା ମାତ୍ର । ସୁଧୀ ପାଠକବର୍ଗ ଅନୁଗ୍ରହପୂର୍ବକ କୌଣସି କୌଣସି ସ୍ଥଳରେ ମୂଳ ପାଠ ଓ ଟୀକାରେ ଭ୍ରମ ଦର୍ଶାଇ ଦେଲେ ଚିରଉପକୃତ ହେବ ।

ଶ୍ରୀ ଆର୍ତ୍ତବଲ୍ଲଭ ମହାନ୍ତି
ତା ୨୫-୮-୨୮

---

## ତୃତୀୟ ମୁଦ୍ରଣ

ଏହି ସଂସ୍କରଣରେ ପାଠାନ୍ତରମାନ ଉଠାଇ ଦିଆଯାଇଅଛି; କାରଣ ସେସବୁର ଆବଶ୍ୟକତା ନାହିଁ । ସ୍ଥଳବିଶେଷରେ ଭିନ୍ନ ଭିନ୍ନ ପାଠମାନଙ୍କ ବିଷୟ ଟୀକାରେ ଦିଆଯାଇଅଛି । ଟୀକାରେ ଯାହା ସ୍ଥାନେ ସ୍ଥାନେ ପ୍ରମାଦ ଥିଲା, ତାହା ଦୂର କରାଯାଇଅଛି । ପ୍ରିୟ ପାଠକବର୍ଗଙ୍କୁ ଅନୁରୋଧ ଯେ ଯଦି କୌଣସି ସ୍ଥାନରେ ଭ୍ରମ ପ୍ରମାଦ ଥାଏ, ତାହା ଦର୍ଶାଇଦେଲେ କୃତଜ୍ଞ ହେବ ।

ଶ୍ରୀ ଆର୍ତ୍ତବଲ୍ଲଭ ମହାନ୍ତି
ତା ୨୧-୮-୪୧

# ବିଦଗ୍ଧ-ଚିନ୍ତାମଣି

## ପ୍ରଥମ ଛାନ୍ଦ

## ମଙ୍ଗଳାଚରଣ

ରାଗ—ମଙ୍ଗଳ

( ପଞ୍ଚାଶବର୍ଣ୍ଣ ନିୟମ )

**ଅ**ପ୍ରାକୃତ ପ୍ରେମମୂର୍ତ୍ତି ଜୟ ରାଧା ହରି ।
ଅବ୍ୟକ୍ତ ଲୀଳାକୁ ବ୍ୟକ୍ତ କରି ଅବତରି । ୧ ।

---

ବିଦଗ୍ଧ ଦର୍ପଣ—ବିଦଗ୍ଧଚିନ୍ତାମଣି ଟୀକା

ବିଦଗ୍ଧ-ଚିନ୍ତାମଣି :—ବିଦଗ୍ଧ—"କଳାବିଳାସଦଗ୍ଧାତ୍ମା ବିଦଗ୍ଧ ଇତି କୀର୍ତ୍ତ୍ୟତେ," କଳାବିଳାସରେ ଚତୁର ଯେ, ସେ ବିଦଗ୍ଧ ଅର୍ଥାତ୍ ଲୀଳାପ୍ରିୟ; ଚିନ୍ତାମଣି—ଯେ ଅଭୀଷ୍ଟ ଅର୍ଥ ପ୍ରଦାନ କରେ, ସେ ଚିନ୍ତାମଣି [ ଏଠାରେ କୃଷ୍ଣଚନ୍ଦ୍ର ଚିନ୍ତାମଣି ନାମରେ କଥିତ ] । ବିଦଗ୍ଧ-ଚିନ୍ତାମଣି—ଲୀଳାଚତୁର କୃଷ୍ଣ ଯେଉଁ କାବ୍ୟରେ ନାୟକ, ସେ କାବ୍ୟ ବିଦଗ୍ଧଚିନ୍ତାମଣି ନାମରେ କଥିତ । ରୂପଗୋସ୍ୱାମୀ-କୃତ ବିଦଗ୍ଧ-ମାଧବ ନାଟକର ନାମ ଅନୁକରଣରେ ଏ ନାମ ପ୍ରଦତ୍ତ । ଏ କାବ୍ୟର କେତେକ ବିଷୟ ମଧ୍ୟ ବିଦଗ୍ଧମାଧବ ନାଟକରୁ ଗୃହୀତ ହୋଇଅଛି ।

କବି ଅଭିମନ୍ୟୁ ରାଧାକୃଷ୍ଣଲୀଳାତ୍ମକ ଏହି କାବ୍ୟର ପ୍ରାରମ୍ଭରେ ସେହି ରାଧା-କୃଷ୍ଣଙ୍କୁ ନମସ୍କାର କରି ମଙ୍ଗଳାଚରଣ କରିଅଛନ୍ତି ।

ପଞ୍ଚାଶବର୍ଣ୍ଣ ନିୟମ—ଅକାରାଦି ୫୦ ଗୋଟି ବର୍ଣ୍ଣର କ୍ରମାନୁସାରେ ଏ ଛାନ୍ଦ ରଚିତ ।

୧—ଅପ୍ରାକୃତ—ଦିବ୍ୟ, ଅଲୌକିକ । ପ୍ରେମମୂର୍ତ୍ତି—ପ୍ରେମମୟସ୍ୱରୂପ ରାଧାକୃଷ୍ଣ [ ଯୁଗଳମୂର୍ତ୍ତି ] । ଜୟ—ଜୟଯୁକ୍ତ ହୁଅନ୍ତୁ । ଅର୍ଥାତ୍ ତୁମେ ଦୁହେଁ ସମସ୍ତଙ୍କ ଉପରେ, ସର୍ବୋତ୍କୃଷ୍ଟ । ମୁଁ ଅତି ହୀନ । ଏହି ଅର୍ଥରେ କବିଙ୍କର ନମସ୍କାର ସୂଚିତ ହେଉଅଛି । କବି ଚୈତନ୍ୟଚନ୍ଦ୍ରଙ୍କୁ ମଧ୍ୟ ଏହାଦ୍ୱାରା ନମସ୍କାର କରିଅଛନ୍ତି । ସେ ରାଧାକୃଷ୍ଣ-ଯୁଗଳମୂର୍ତ୍ତି ଧାରଣ କରି ଅବତୀର୍ଣ୍ଣ ହୋଇଥିଲେ ।

ଅବ୍ୟକ୍ତ......ଅବତରି—ତୁମ୍ଭେ ପୃଥିବୀରେ ଅବତୀର୍ଣ୍ଣ ହୋଇ ଅପ୍ରକାଶିତ ଲୀଳାକୁ ପ୍ରକାଶ କରି ।

ଆଦି ଅନାଦି-କାରଣ ନିର୍ଗୁଣ ସଗୁଣ
ଆତ୍ମାରାମ ସନାତନ ବ୍ରହ୍ମନିରୂପଣ ହେ । ୨ ।
ଈଶ୍ୱର ସ୍ୱତନ୍ତ୍ର ସ୍ୱୟଂ ଭଗବାନ ତୁମ୍ଭେ ।
ଇଚ୍ଛାମୟ ସର୍ବଶକ୍ତିବନ୍ତ ତତ୍ତ୍ୱ ବିଧି ଯେ । ୩ ।
ଈଶ ଶେଷାଦି ସେବକ ସେବ୍ୟ ଏକା ତୁହି ।
ଇଷ୍ଟ ଅଭୀଷ୍ଟଦ ଦୟାନିଧି ଭାବଗ୍ରାହୀ ଯେ ।
ଉତ୍ପତ୍ତି ପାଳନାନ୍ତ ତୋ ଭ୍ରୂଭଙ୍ଗୀ ବିକାରେ ।
ଉତପ୍ଳୁତ ତନ୍ତୁବାୟୁପଟ ପରକାରେ ଯେ । ୫ ।

---

୨—ଆଦି—ପ୍ରଥମ, ସମସ୍ତଙ୍କର କାରଣ । ଅନାଦି—ଯାହାଙ୍କର ଆଦିକାରଣ ନାହିଁ । କାରଣ—ସଂସାରର କର୍ତ୍ତା ଉପାଦାନ ଓ ନିମିତ୍ତ କାରଣ । ନିର୍ଗୁଣ—ତୁମ୍ଭେ ପରଂବ୍ରହ୍ମ ଅବସ୍ଥାରେ ଗୁଣ—[ସତ୍ତ୍ୱ, ରଜ, ତମ—ତିନୋଟି ଗୁଣ] ଶୂନ୍ୟ । ସଗୁଣ—ଅବତାରବେଳେ ବା ବିଷ୍ଣୁ ପ୍ରଭୃତି ରୂପ ଧାରଣ ସମୟରେ ସେହି ଗୁଣଯୁକ୍ତ । ଆତ୍ମାରାମ—ସ୍ୱୟଂ ଆନନ୍ଦମୟ ବା ନିଜେ ନିଜେ କ୍ରୀଡ଼ା କର । ସନାତନ—ଚିରନ୍ତନ । ବ୍ରହ୍ମନିରୂପଣ—ବ୍ରହ୍ମରୂପରେ ନିରୂପିତ ହେଉଅଛ । (ବି-ଅ—କେତେକ ତୁମ୍ଭଙ୍କୁ ବ୍ରହ୍ମରୂପରେ ନିରୂପଣ କରନ୍ତି, କିନ୍ତୁ ବ୍ରହ୍ମ ତୁମ୍ଭର ଅଙ୍ଗପ୍ରଭା ।)

୩—ଈଶ୍ୱର—ଜଗତର ନିୟନ୍ତା । ସ୍ୱତନ୍ତ୍ର—ସ୍ୱାଧୀନ, ପ୍ରକୃତିର ବଶ ନୁହ । ସ୍ୱୟଂ ଭଗବାନ୍—'ଏତେ ଚାଂଶକଳାଃ ପୁଂସଃ କୃଷ୍ଣସ୍ତୁ ଭଗବାନ୍ ସ୍ୱୟଂ'—ଐଶ୍ୱର୍ଯ୍ୟାଦିଯୁକ୍ତ ବା ଐଶ୍ୱର୍ଯ୍ୟ ଓ ମାଧୁର୍ଯ୍ୟର ଆଧାର ।

ଇଚ୍ଛାମୟ—ନିଜ ଇଚ୍ଛାରେ ଲୀଳାକାରୀ । ତତ୍ତ୍ୱ ବିଧି—ପ୍ରକୃତି, ମହତ୍ ପ୍ରଭୃତି ଚତୁର୍ବିଂଶତି ତତ୍ତ୍ୱ ବିଧାନ କରିଅଛ ।

୪—ଈଶ—ମହାଦେବ । ଶେଷ ଆଦି—ବାସୁକି ପ୍ରଭୃତି । ଈଶ...... ତୁହି—ଶିବ, ବାସୁକି ପ୍ରଭୃତି ତୁମ୍ଭର ସେବା କରନ୍ତି । ତୁମ୍ଭେ କେବଳ ସମସ୍ତଙ୍କର ପୂଜ୍ୟ । ସେବକ—ଭୃତ୍ୟ । ସେବ୍ୟ—ପୂଜ୍ୟ । ଇଷ୍ଟ—ଅଭିଳଷିତ, କାମ୍ୟବସ୍ତୁ । ଅଭୀଷ୍ଟ—ଅତି ଉତ୍କଟ ଇଚ୍ଛାର ବିଷୟ (ଯାହା ନ ହେଲେ ନ ଚଳେ) ଦାନ କର । ଦୟାନିଧି—ଦୟାର ସାଗର । ଭାବଗ୍ରାହୀ—ଭକ୍ତର ଭାବକୁ ଗ୍ରହଣ କର ।

(ଇଷ୍ଟ ଅଭୀଷ୍ଟଦ—ନିଜ ଭକ୍ତର ବା ପ୍ରିୟର ବାଞ୍ଛା ପୂର୍ଣ୍ଣ କର)

୫—ତୁମ୍ଭର ଭ୍ରୂଭଙ୍ଗୀର ପରିବର୍ତ୍ତନ ହେଲେ [ଆଖିପତା ଲେଉଟାଇଲା ମାତ୍ରେ] ସଂସାରର ସୃଷ୍ଟି, ସ୍ଥିତି ଓ ପ୍ରଳୟ ଘଟୁଅଛି । ତୁମ୍ଭେ ଜଗନ୍ମୟ, ତୁମ୍ଭଠାରେ ସମସ୍ତ ଜଗତ୍ ରହିଅଛି; ସୂତାରାଂ ଲୁଗାରେ ତନ୍ତୀର ସୂତା ଆଡ଼ ଓ ଲମ୍ବାରେ ଟଣା ଓଟଣା ଭାବରେ ଗୁନ୍ଥାଗନ୍ଥି ହୋଇ ରହିଲା ପରି ତୁମ୍ଭଠାରେ ସମସ୍ତ ବିଶ୍ୱ ରହିଅଛି । "ନୈତଚ୍ଚିତ୍ରଂ ଭଗବତି ହ୍ୟନନ୍ତେ ଜଗଦୀଶ୍ୱରେ । ଓତପ୍ରୋତମିଦଂ ଯସ୍ମିଂସ୍ତନ୍ତୁଷ୍ୱଙ୍ଗ ଯଥା ପଟଃ ।" [ ଭା—୧୦-୧୫-୩୫ ]

ଊର୍ଣ୍ଣନାଭବତ ଖେଳୁ ଇଚ୍ଛାଶକ୍ତିବଳେ ।
ଉଦ୍ଭବ ହୋଇ ତୁ ଧର୍ମ ସ୍ଥାପୁ କାଳେକାଳେ ହେ । ୬ ।
ଋକ ଯଜୁ ସାମ ବହୁ ଶ୍ରୁତି ଶାସ୍ତ୍ରଭେଦେ ।
ରୂପ ଗୁଣ ଯଶ ଅଛି ଅଶେଷ ସମ୍ବାଦେ ହେ । ୭ ।
ରୁଚିର ଚରଣ ନଖ ଛଟାର ମହିମା ।
ଋକ୍ଷସଂଖ୍ୟା କଳ୍ପେ କଳ୍ପି ନ ପାଇଲେ ସୀମା ହେ । ୮ ।
ଲୁବ୍ଧକତାରକ ବ୍ରହ୍ମାହରଗର୍ବହର ।
ଲୁଟାଇପାର କୃପାରେ ମୁକତିଭଣ୍ଡାର ହେ । ୯ ।
ଲୁଠ ଅଳ କର କୋଳ ପାଇଁ ଯଶୋଦାଙ୍କୁ ।
ଲୋଲୁପ ଗୋପୀବଦନାମ୍ବୁଜପୀୟୂଷକୁ ହେ । ୧୦ ।

୭-୨ ସମ୍ବାଦେ କ, ଝ ।

---

୬—ବୁଢ଼ିଆଣୀ (ପୋକ) ନିଜ ମନକୁ ସୂତା କାଟି ତନ୍ତୁରେ ଖେଳି ତାକୁ ଗିଳିଲା ପରି ତୁମ୍ଭେ ନିଜର ଇଚ୍ଛାରେ ଲୀଳା (ସୃଷ୍ଟି, ସ୍ଥିତି, ଲୟ) କରୁଅଛ । "ତୁ ଏକରୂପୀ ଛନ୍ନଦେହା । ଜଗମୋହିନୀ ତୋର ମାୟା । ତେଣେ ଏ ସୃଷ୍ଟି ସ୍ଥିତି ଅନ୍ତ । କରୁ ତୁ ଊର୍ଣ୍ଣନାଭିବତ ।" [ କ, ଖ ] ।

ତୁମ୍ଭେ ଧର୍ମଗ୍ଲାନି ସମୟରେ ଜାତ ହୋଇ ଧର୍ମ ଥାପୁଅଛ । କବି ଏଠାରେ ଚୈତନ୍ୟଚନ୍ଦ୍ରଙ୍କୁ ଲକ୍ଷ୍ୟ କରି କହୁଅଛନ୍ତି ।

୭—ଶ୍ରୁତି—ବେଦ ଏବଂ ଭିନ୍ନ ଭିନ୍ନ ଶାସ୍ତ୍ରରେ ଓ ଅନେକ ସମ୍ବାଦରେ ( ଚରିତାଦିବର୍ଣ୍ଣନାତ୍ମକ ଗ୍ରନ୍ଥାଦିରେ ) ତୁମ୍ଭର ରୂପ, ଗୁଣ ଏବଂ ଯଶ ବର୍ଣ୍ଣିତ ହୋଇଅଛି ।

୮—ଋକ୍ଷସଂଖ୍ୟା—ନକ୍ଷତ୍ରସଂଖ୍ୟା ଅନନ୍ତ, ଅସଂଖ୍ୟ । କଳ୍ପ—ସହସ୍ର ଯୁଗ । ମନୁଷ୍ୟଙ୍କ ୪୩୨ ଲକ୍ଷ ଦିନ ତ ବ୍ରହ୍ମାଙ୍କର ଏକଦିନ । ବ୍ରହ୍ମାଦି ଦେବତାମାନେ ଅସଂଖ୍ୟ କଳ୍ପରେ କଳନା କଲେହେଁ ତୁମ୍ଭର ମନୋହର ଯେ ପାଦନଖ, ତାହାର ଶୋଭା ଯେ ମହିମା, ତାର ଶେଷ ସୀମା ପାଇଲେ ନାହିଁ ।

୯—ଲୁବ୍ଧକ—ଶବର । ଜରାଶବର ପାଦରେ ଶର ବିଦ୍ଧ କରିଥିଲେ ମଧ୍ୟ ତାକୁ ତାରିଅଛ । [ବତ୍ସାହରଣରେ] ବ୍ରହ୍ମାଙ୍କର ଏବଂ (ମୋହିନୀରୂପରେ) ଶିବଙ୍କର ଗର୍ବ ହରିଅଛ ।

୧୦—ଲୁଠ—ତଳରେ ଗଡ଼ ବା ଗଡ଼ିଥିଲ ।

ଲୋଲୁପ ···ପୀୟୂଷକୁ—ଗୋପୀମାନଙ୍କ ମୁଖପଦ୍ମର ଅମୃତ ( ମଧୁ ) ପାନ କରିବାକୁ ଲୋଭୀ ।

ଏମନ୍ତ ମହିମାବନ୍ତ ପ୍ରେମଭକ୍ତିରସ ।
ଏକନିଷ୍ଟେ ଅଭିମନ୍ୟୁ କିବା କରେ ଆଶ ହେ । ୧୧ ।
(ଇଚ୍ଛାବସ୍ତୁ—୧ ଦୈନ୍ୟବୋଧିକା, ୨ ପ୍ରାର୍ଥନାମୟୀ, ୩ ଲାଳସାମୟୀ)
ଐରାବତଗତି ଅଣିମାଦି ଭୋଗ ମୁକ୍ତି ।
ଐଶ୍ୱର୍ଯ୍ୟାଦିରେ ମୋ ଚିତ୍ତ ନୋହିବ ଆସକ୍ତ ହେ । ୧୨ ।
ଓଷଧୀଶାନନ ହେ ମାଗୁଛି ପଦ ଧରି ।
ଓ କରିବି ଆଲେ ଦାସି, ଡାକିବେ କିଶୋରୀ ଯେ । ୧୩ ।
ଔଦାର୍ଯ୍ୟ ଗାମ୍ଭୀର୍ଯ୍ୟାଦି ନିପୁଣ ପଦାଶ୍ରିତେ ।
ଔଷଧ ସେ ମୋର, ତୁମ୍ଭେ ବଶ ହେବ ସତେ ହେ । ୧୪ ।
ଅନନ୍ତକୋଟି ବ୍ରହ୍ମାଣ୍ଡ ଈଶ୍ୱରୀ ଈଶ୍ୱର ।
ଅକୈତବ କରୁଣାକୁ ପରସ୍ପରେ କର ହେ । ୧୫ ।

---

୧୧—ମହିମାବନ୍ତ—ଅଖିଳଗୁଣଯୁକ୍ତ । ପ୍ରେମଭକ୍ତିରସ—ମାଧୁର୍ଯ୍ୟରସ; ଅହୈତୁକ ଦିବ୍ୟ ପ୍ରୀତି ଭକ୍ତିର ରସ । ଏକନିଷ୍ଟେ-ଏକାଗ୍ରଚିତ୍ତରେ । ଆଶା କରେ—ବାଞ୍ଛା କରେ ।

୧୨—ଐରାବତ (ଗଜରାଜ) ପରି ଗତି ଯାହାର—ଗଜେନ୍ଦ୍ରଗମନା ନାରୀ—ଅତି ସୁନ୍ଦରୀ ଓ ସୁଲକ୍ଷଣବତୀ ସ୍ତ୍ରୀ । ଅଣିମାଦି ଅଷ୍ଟୈଶ୍ୱର୍ଯ୍ୟ, ସ୍ରକ୍‌ଚନ୍ଦନାଦି ଭୋଗ, ମୋକ୍ଷ ଏବଂ ରାଜ୍ୟାଦି ସମ୍ପତ୍ତିରେ ମୋହର ମନ ନ ବଳୁ । ଅଥବା ଐରାବତରେ ଗତି ଯାହାର—ଇନ୍ଦ୍ର; ଇନ୍ଦ୍ରଙ୍କ ଅଣିମାଦି ଭୋଗ ଇତ୍ୟାଦି ।

୧୩—ଓଷଧୀଶାନନ—( ଓଷଧୀଶ—ଚନ୍ଦ୍ର )—ଚନ୍ଦ୍ରମୁଖ । କିଶୋରୀ—ରାଧା । 'ଅଲେ 'ଦାସି' ବୋଲି ଡାକିଲେ ମୁଁ ଓ କରିବି (ଶୁଣିବି), ଅର୍ଥାତ୍ ରାଧାଙ୍କର ଦାସୀ' ହେବି;—"ରାଗାନୁଗା ଭକ୍ତି' ।

୧୪—ଉଦାରତା ଗମ୍ଭୀରତା ଗୁଣନିପୁଣ ! ତୁମ୍ଭେ ସତେ ପଦାଶ୍ରିତ ମୋଠାରେ ବଶ ହେବ ? ତୁମ୍ଭ ପଦାଶ୍ରୟ କେବଳ ମୋର ଔଷଧ ଅଟେ ।

ପୁଣି;—ଔଦାର୍ଯ୍ୟ—ପଦ ଓ ଅର୍ଥର ଲାଳିତ୍ୟ । ଗାମ୍ଭୀର୍ଯ୍ୟ—ଅର୍ଥର ଗୁରୁତା, ଏହିପରି ଗୁଣଯୁକ୍ତ ପଦାବଳୀ ଆଶ୍ରୟ କରିବାଦ୍ୱାରା ତୁମ୍ଭେ ସତେ କଣ ମୋର ବଶ ହେବ ? ତୁମ୍ଭଙ୍କୁ ବଶ କରିବା ପାଇଁ ସୁନ୍ଦର ପଦ୍ୟରେ ତୁମ୍ଭର ଲୀଳାଗାନ ମୋର ଏକମାତ୍ର ଔଷଧ [ଉପାୟ]; ଅର୍ଥାତ୍ ସୁନ୍ଦର କୋମଳ ଗମ୍ଭୀରାର୍ଥକ ପଦାବଳୀରେ ତୁମ୍ଭର ଲୀଳା ପ୍ରକାଶ କରିବି ।

୧୫—ଅକୈତବ—କପଟଶୂନ୍ୟ । କରୁଣା—କୃପା । ତୁମ୍ଭେ ମୋକ୍ଷାଦି ପ୍ରଦାନ କରି ଲୋକଙ୍କୁ ଭଣ୍ଡାଇ ଦିଅ । ମୁଁ ସେ କପଟପୂର୍ଣ୍ଣ କରୁଣା ଚାହେଁ ନାହିଁ । ପରସ୍ପରେ—ଉଭୟେ—ରାଧାକୃଷ୍ଣ ଦୁହେଁ ।

ଅନନ୍ତ ସିଦ୍ଧି ମୋହର ତୁମ୍ଭ ପଦାର୍ଚ୍ଚିତ ।
ଅବିଘ୍ନେ ହେଉ ସର୍ବଦା ଆଜ୍ଞା କର ଦତ୍ତ ହେ । ୧୬ ।

ଅନୁକ୍ରମଣୀ—

କାମନା-କଳପତରୁ ଚିନ୍ତାମଣି ନାମ ।
କଲ୍ପୁଛି କବିତେ ବର୍ଣ୍ଣିବାକୁ ତବ ପ୍ରେମ ହେ । ୧୭ ।
ଖଗପତି ପୂର୍ଣ୍ଣ କର ଏ ମୋର ମାନସ ।
କ୍ଷିତିପାବନ ମଙ୍ଗଳ ବର୍ଣ୍ଣିବି ତୋ ଯଶ ହେ । ୧୮ ।
ଗୁଣଗ୍ରାହକେ ପାଇବେ ଚିନ୍ତିଲ ସୁପ୍ରେମ ।
ଗୀତ ହେବ ବିଦଗଧଚିନ୍ତାମଣି ନାମ ହେ । ୧୯ ।
ଘୃଣାରେ ଘୋଷିଲେ ନରେ ପାଇବେ ନିର୍ବାଣ ।
ଘୃତବତ ରସିକହୃଦକୁ ରବି ଜାଣ ହେ । ୨୦ ।
ଙଆଁସ ଅନ୍ଧାର ଅଜ୍ଞାନକୁ ଏ ଚନ୍ଦ୍ରମା ।
ଉଇଁଲ ରବି ଏ ଧୀରଚକ୍ର ସୁଖସୀମା ହେ । ୨୧ ।

---

୧୬—ତୁମ୍ଭର ପଦାର୍ଚ୍ଚିତ—ପଦସେବା ମୋର ଅନନ୍ତ ସିଦ୍ଧି ଅଟେ । ସେହି ସିଦ୍ଧି ନିର୍ବିଘ୍ନରେ ହେଉ । ଏହି ଆଜ୍ଞା ଦିଅନ୍ତୁ ।

୧୭—କାମନାପୂରଣ କରିବାରେ କଳ୍ପବୃକ୍ଷ ଏବଂ ଚିନ୍ତାମଣି ପ୍ରସିଦ୍ଧ । ଦୁହିଁଙ୍କ ଯାହା ମାଗିବ, ତାହା ପାଇବ । ତୁମ୍ଭେ ନିଜେ କାମନା କଳ୍ପତରୁ ଓ ଚିନ୍ତାମଣି ନାମ ବହୁଛ ।

୧୮—ହେ ଖଗପତି—ଗରୁଡ଼ର ପ୍ରଭୁ, ଗରୁଡ଼ବାହନ କୃଷ୍ଣଚନ୍ଦ୍ର ! ହେ କ୍ଷିତିପାବନ—ସଂସାରର ପବିତ୍ରକାରୀ । ହେ ମଙ୍ଗଳ-ମଙ୍ଗଳମୟ ; ତା ମଙ୍ଗଳ ଯଶ ( ତୁମ୍ଭର ଲୀଳା ମଙ୍ଗଳମୟ, ) ତାହା ବର୍ଣ୍ଣିବ ।

୧୯—ଗୁଣଗ୍ରାହକେ—ଗୁଣ ଘେନିଲା ଲୋକମାନେ । କୃଷ୍ଣଭାବରେ ମଜ୍ଜିବା ଲୋକେ ।

୨୦—ଘୃଣାରେ—ଅନାଦରରେ । ନିର୍ବାଣ -- ମୁକ୍ତି । ଘୃତ ପରି ସାରବାନ୍ ସରସ ରସିକମାନଙ୍କର ହୃଦସ୍ଥ ତରଳାଇବାକୁ ଏ ଗ୍ରନ୍ଥ ସୂର୍ଯ୍ୟ ପରି ହେବ । ସୂର୍ଯ୍ୟ ଯେପରି ଘିଅକୁ ତରଳାଏ, ସେପରି ଏ ଗ୍ରନ୍ଥ ରସିକହୃଦସ୍ଥକୁ ତରଳାଇବ ।

୨୧—ଙଆଁସ—ଅମାବାସ୍ୟାର ଗାଢ଼ ଅନ୍ଧକାର ତୁଲ୍ୟ ଅଜ୍ଞାନ ନାଶ କରିବାକୁ ଏହି ଗ୍ରନ୍ଥ ହେଲା ଚନ୍ଦ୍ର । ଉଇଁଲା ସୂର୍ଯ୍ୟ ଯେପରି ରାତିରେ ବିରହବିଧୁର ହୋଇଥିବା ଚକ୍ରବାକର ସୁଖ ବଢ଼ାଏ, ସେପରି ଏ ଗ୍ରନ୍ଥ ପଣ୍ଡିତ ମଣ୍ଡଳୀର ସୁଖ ବଢ଼ାଇବ ।

ଧୀର—ପଣ୍ଡିତ । ଚକ୍ର—ସମୂହ । ଧୀର—ଶାନ୍ତ । ଚକ୍ର—ଚକ୍ରବାକ ପକ୍ଷୀ ।

ଚନ୍ଦ୍ରରୁ ଶୀତଳ ସ୍ୱାଦୁ ସୂର୍ଯ୍ୟରୁ ବିମଳ ।
ଚରିତ ଗଙ୍ଗାନିର୍ମଳ ସିନ୍ଧୁରୁ ଅଥଳ ହେ । ୧୨ ।
ଛନ୍ଦାର୍ଥିକ ଦମ୍ଭଧର ଚୂରଣକୁ ପବି ।
ଛଇଳ ଲୋକର ନବ ଗୁଣବନ୍ତ ଛବି ହେ । ୧୩ ।

ଲକ୍ଷଣଯମ—

ଯମକାଦି ଚିତ୍ରକାବ୍ୟ ପ୍ରବନ୍ଧ ପ୍ରବନ୍ଧ ।
ଯଥାଜାତ ଧନ୍ଦା ଏହି ବୁଧ ମନବୋଧ ହେ । ୧୪ ।

ବୁଧ ଅଜ୍ଞବୋଧକ—

ଝଳ ମାର୍ଗ ପାଇବେ ପଥିକ ହେଲେ ଶ୍ରମୀ ।
ଝଗଡ଼ା ବାଟେ ପଶିଲେ ମୂର୍ଖେ ହେବେ ଦମୀ ହେ । ୧୫ ।
ନ୍ୟାୟାଦି ଶାସ୍ତ୍ର ପୁରାଣ ବେଦାଗମ କାବ୍ୟ ।
ନ୍ୟାସ କଲା ଲୋକର ଏ ହୋଇବଟି ଶ୍ରାବ୍ୟ ହେ । ୧୬ ।

---

୧୨—ସ୍ୱାଦୁ—ମନୋହର, ରୁଚିକର । ବିମଳ—ଉଜ୍ଜ୍ୱଳ । ଚରିତ—ରାଧାକୃଷ୍ଣଚରିତ । ଗଙ୍ଗାନିର୍ମଳ—ଗଙ୍ଗା ପରି ବିଶୁଦ୍ଧ । ସିନ୍ଧୁରୁ ଅଥଳ—ସମୁଦ୍ରଠାରୁ ବେଶି ଗଭୀର ।

୧୩—କପଟରେ ଅର୍ଥ କରୁଥିବା ଲୋକଙ୍କର ବା ଯେଉଁମାନେ ନିଜକୁ ଅର୍ଥକାରୀ ବୋଲି ମିଛରେ ରଟନା କରନ୍ତି, ସେମାନଙ୍କର ଗର୍ବରୂପ ଧର [ ପର୍ବତ ] କୁ ଚୂର୍ଣ୍ଣ କରିବାକୁ ଏ ଗ୍ରନ୍ଥ ପବି [ ବଜ୍ର ] ଅଟେ । ଏ ଗ୍ରନ୍ଥ ଛଇଳ [ ରସିକ ] ଲୋକ ପକ୍ଷରେ ନୂତନ ଗୁଣଯୁକ୍ତା ସ୍ତ୍ରୀର ଶୋଭାକୁ ଧାରଣ କରିଅଛି । ଏହା ଛବି ନୂତନ—ଏପରି ଶୋଭାମୟୀ କାବ୍ୟାଙ୍ଗନା ପୂର୍ବରୁ ନ ଥିଲା, ତନ୍ତୁ କାବ୍ୟରସିକର ଏହା ଆସ୍ୱାଦ୍ୟ ।

୧୪—ଏ ପ୍ରବନ୍ଧ—[ ଗ୍ରନ୍ଥ ] ଯମକାଦି ଚିତ୍ରକାବ୍ୟରେ ବନ୍ଧା ହୋଇଅଛି । ଏ ଗ୍ରନ୍ଥଟି ଯଥାଜାତ [ ମୂର୍ଖ ] ଲୋକର ଧନ୍ଦା [ କ୍ଳେଶଜନକ ] ଅଟେ, ପଣ୍ଡିତମାନଙ୍କର ପ୍ରୀତିକାରକ ।

୧୫—କାବ୍ୟରେ ପଥିକ ଲୋକେ ପରିଶ୍ରମ କଲେ ଝଳ [ ସଫା ] ବାଟ ପାଇବେ । ଝଗଡ଼ା ବାଟେ—ଅକଲ ବାଟରେ, କଳିଆ ବାଟରେ, ତଥା ଅବାଟରେ । ଦମୀ—ଦବିସିବେ, ବୁଦ୍ଧିବଣା ହୋଇସିବେ ।

୧୬—ନ୍ୟାୟାଦି—ନ୍ୟାୟ, ବୈଶେଷିକ, ବେଦାନ୍ତ ପ୍ରଭୃତି । ଶାସ୍ତ୍ର—ମନୁ, ଯାଜ୍ଞବଲ୍କ୍ୟ ପ୍ରଭୃତି ଧର୍ମଶାସ୍ତ୍ର । ପୁରାଣ—ପଦ୍ମ, ବ୍ରହ୍ମବୈବର୍ତ୍ତ, ବ୍ରହ୍ମ, ସ୍କନ୍ଦ ପ୍ରଭୃତି । ବେଦ—ଋକ୍, ସାମ, ଯଜୁ, ଅଥର୍ବ । ଆଗମ—ବେଦ, ଷଡ଼ଙ୍ଗ, ଉପନିଷଦ, ମନ୍ତ୍ରାଦି ଶାସ୍ତ୍ର ପ୍ରଭୃତି । କାବ୍ୟ—କାଳିଦାସ, ମାଘ ପ୍ରଭୃତିକୃତ ଷଟ୍‌କାବ୍ୟାଦି । ନ୍ୟାସ କଲା [ ହୃଦରେ ଲାଭ କଲା ] ଲୋକର ଏ ଗ୍ରନ୍ଥ ଶ୍ରାବ୍ୟ [ ଶୁଣିବାଯୋଗ୍ୟ ] ହେବ ।

ଝାଣ ଚଣା ଚବଣ ନା- ରଦ କଲ ପର ।
ଝେକ ଓଜ ଭଜବ ଅବଶ୍ୟ ଶ୍ରମ କର ହେ । ୨୭ ।

ଠକ ନୋହେ ଗୁରୁ କୃଷ୍ଣ ବଇଷ୍ଣବେ ଯେହୁ ।
ଠିକେ ଏଥି ମର୍ମ ଜାଣି ପାରବେଟି ସେହୁ ହେ । ୨୮ ।

ଡାକ କହୁଛୁ ମୁଁ ରାଗମାର୍ଗ ଭକ୍ତ ଜନେ ।
ଢେର କର୍ଣ୍ଣ ସସ୍ନେହତା କର ମୋ ବଚନେ ହେ । ୨୯ ।

ଢମପଣେ ବର୍ଣ୍ଣୁଛୁ ମୁଁ ଗୋବଦ୍ଧଚରତ ।
ଢ଼ଗ ଢମାଳ ହେଲେହେଁ ସାକ୍ଷାତେ ଅମୃତ ହେ । ୩୦ ।

ଅମ୍ବୁ ଯେ ହେଉ ସେ ହେଉ ଶାଳଗ୍ରାମ ସ୍ନାନେ ।
ଆଗ୍ରାହ୍ୟ କାହାର ପାଦୋଦକ ନାମ ଜ୍ଞାନେ ହେ । ୩୧ ।

---

୨୭—[ନା—ରଦ] ଦାନ୍ତ ନ ଥିଲ ଲୋକ ଝାଣୁଆ ଚଣା ଯେପର ଚୋବାଇ ପାରେ ନାହିଁ—ହରବର ହୁଏ, ସେହୁପର ଶାସ୍ତ୍ରଙ୍କ ଲୋକର ହୃଦରେ ଯଦ ଅନୁରାଗ ନ ଥାଏ, ସେ ଏ କାବ୍ୟପାଠରେ କେବଳ ବୃଥାଶ୍ରମ କର ହଇରାଣ ହେବ, କନ୍ତୁ ମର୍ମ ବୁଝି ପାରବ ନାହିଁ; ତହୁଁ ତାର ଝେକ [ ଗର୍ବ ], ଓଜ [ ବଳ ] ଭଜବ [ ନଷ୍ଟ ହେବ ] ।

୨୮—ପୁନଶ୍ଚ, ଯେ ଗୁରୁ, କୃଷ୍ଣ ଓ ବୈଷ୍ଣବଙ୍କ ସେବାରେ ଆତ୍ମସମର୍ପଣ କରଛୁ, ସେ ଏହୁ ଗ୍ରନ୍ଥର ମର୍ମ ଜାଣିପାରବ ।

୨୯—ରାଗମାର୍ଗ [ ରାଗ—ଅନୁରାଗ ]—ପ୍ରୀତଭକ୍ତର ମାର୍ଗ । ସସ୍ନେହତା—ସ୍ନେହ ।

୩୦—ଢମ—ଗର୍ବ । ଢଗ—ଉପକଥା; ସ୍ତ୍ରୀ ବା ସାମାନ୍ୟ ଲୋକଙ୍କ ପ୍ରବଚନ [ ପହଳ ] । ଢମାଳ—କବତ୍ୱହୀନ ରଚନା ।

୩୧—ଯେ କୌଣସି ଅମ୍ବୁ [ ଜଳ ] ଶାଳଗ୍ରାମ ସ୍ନାନ କରବାଦ୍ୱାରା ବଷ୍ଣୁଙ୍କ ପାଦୋଦକ ବୋଲ ଜଣା ପଡ଼ିଲେ କାହାର ଅଗ୍ରାହ୍ୟ ହୁଏ ? ଅର୍ଥାତ୍ ସମସ୍ତଙ୍କର ଗ୍ରାହ୍ୟ ହେବ । ନଦର୍ଶନ—ବଦଗ୍ଧମାଧବର ଶ୍ଲୋକ—

ତତ୍ତ୍ୱ ଏ ପରାପ୍ରେ ଭାବ ଏ ଗୀତେ ରସିବ ।
ଭୁଞ୍ଜ ମୋ ବଚନୁ ଚ୍ୟୁତ ବୋଲି ନ କରିବ ହେ । ୩୨ ।
ଥୋକେ ସ୍ଥଳ ହେବ ଦ୍ରାକ୍ଷାଗୁଡ଼କୃତ ପାକ ।
ଥୋକେ ପାକ ନାରିକେଳ ଖର୍ଜୁରରୋଚକ ହେ । ୩୩ ।
ଦ୍ରବ୍ୟ ଅଦ୍ରବ୍ୟ ଭାଷାରେ ପଦ ହେବ ସିଦ୍ଧି ।
ଦେଖ ମହାଜନମାର୍ଗ-ପରମ୍ପରା ବିଧି ହେ । ୩୪ ।
ଧ୍ରୁବ ଶବ୍ଦ ସାକ୍ଷାତ ଉପମା ଅନୁମାନ ।
ଧରି ବିଗ୍ରହିଲେ ହେବ ଏଥି ଅର୍ଥଜ୍ଞାନ ହେ । ୩୫ ।
ନୀରସ ଗୋରସ ପରିପାକ ପରା ହୋଇ ।
ନିଷ୍ଠା ବେଳୁଁ ବେଳ ବୃଦ୍ଧି ହେବ ସ୍ୱାଦୁଦାୟୀ ହେ । ୩୬ ।

---

୩୨—ତତ୍ତ୍ୱ—ଈଶ୍ୱରଙ୍କର ମାହାତ୍ମ୍ୟକୁ ଏପରି [ ସବୁ ପବିତ୍ର କରିପାରେ ] ଭାବ । ବଚନୁ ଚ୍ୟୁତ—ମୋ ବାକ୍ୟରୁ ବାହାରିଛୁ ।

୩୩—ପାକ—ରସୋଚିତ ଶବ୍ଦନ୍ୟାସ । ଦ୍ରାକ୍ଷାପାକ—ସର୍ବାଂଶ କୋମଳ ମଧ୍ୟରେ ଅଳ୍ପ କଠିନ । ଗୁଡ଼ପାକ—ସର୍ବାଂଶ କୋମଳ । ନାରିକେଳପାକ—ବାହାର କଠିନ, ଭିତର କୋମଳ । ଖର୍ଜୁରପାକ—ବାହାର କୋମଳ, ଭିତର କଠିନ ।

ଏ ଗ୍ରନ୍ଥରେ ଭିନ୍ନ ଭିନ୍ନ ସ୍ଥାନରେ କବିତାଗୁଡ଼ିକ ଏହିପରି ଚାରି ପ୍ରକାରେ ରଚିତ ହୋଇଅଛି ।

୩୪—ଦ୍ରବ୍ୟ—ସଂସ୍କୃତ । ଅଦ୍ରବ୍ୟ—ପ୍ରାକୃତ ବା ପରାକୃତ । ମହାକବି-ମାନଙ୍କର ରଚନାମାର୍ଗରେ ଏହିପରି ବିଧାନ ରହିଅଛି । ପରମ୍ପରା—ଶ୍ରେଣୀ ।

ଇହ ଶିଷ୍ଟାନୁଶିଷ୍ଟାନାମନୁଶିଷ୍ଟାନାଂ ସର୍ବଥା ।
ବାଚାମେବ ପ୍ରସାଦେନ ଲୋକଯାତ୍ରା ପ୍ରବର୍ତ୍ତତେ ॥

[ କାବ୍ୟାଦର୍ଶଃ—ଦଣ୍ଡ୍ୟାଚାର୍ଯ୍ୟ ]

୩୫—ଶବ୍ଦ—ବେଦାଦି ଆଗମ । ସାକ୍ଷାତ—ପ୍ରତ୍ୟକ୍ଷ; ଅର୍ଥାତ୍—ଶବ୍ଦ [ ଆଗମ ], ପ୍ରତ୍ୟକ୍ଷ, ଉପମାନ ଓ ଅନୁମାନ ଏହି ଚାରିପ୍ରକାର ପ୍ରମାଣ ଜାଣି ବିଗ୍ରହ କଲେ ଏଥିରେ ଅର୍ଥଜ୍ଞାନ ହେବ । ଏହା ଧ୍ରୁବ [ ଯଥାର୍ଥ ] ଅଟେ ।

୩୬—ନୀରସ [ ଅସ୍ୱାଦୁ ] ଗୋରସ [ ଦୁଗ୍ଧ ] ପାକ ହେଲେ ବେଶି ସ୍ୱାଦୁ ହୁଏ, ସେପରି ଏଥିରେ ନିଷ୍ଠା [ ଆସକ୍ତି ] ଦିନକୁ ଦିନ ବଢ଼ିବ ଏବଂ କ୍ରମେ କ୍ରମେ ବିଶେଷ ଆନନ୍ଦଦାୟକ ହେବ ।

ସାଧୁ ସ୍ତୁତି—

ପ୍ରେମପରିପାକ ଧୀର ଜନ ପରସ୍ପେ ତ ।
ପାଣି-ଖାର କ୍ଷୀର ଦୂଇ କରନ୍ତି ଏକତ୍ର ହେ । ୩୭ ।
ଫନ୍ଦା ମୁଁ କରିଛି ଏତ୍ବଢେନ ତୁମ୍ଭ ପଦ ।
ଫୁଲ ପରି ଶିରୋଧାର୍ଯ୍ୟ ହେବ ମୋର ପଦ ହେ । ୩୮ ।
ବିବେକ ଗ୍ରାହକ କୋଟି କବି ଆୟୁ ଯେନ ।
ବର୍ତ୍ତିଥିଲେ କବି କବିତ୍ୱ କି ହେବ ମ୍ଳାନ ହେ । ୩୯ ।
ଭାବେ ବୈଶ୍ୟ ପରିପ୍ରେ ମୁଁ ମେଲାଛି ପସରା ।
ଭାବ, ସବୁ ଦ୍ରବ୍ୟକୁ ଗ୍ରାହକ ଲୋଡ଼ା ପରା ହେ । ୪୦ ।

ଖଳନିନ୍ଦା—

ମହ୍ନର କବିତ୍ୱ ଦୋଷ ପସରାରେ ଥାଇ ।
ମଜ୍ଜିବେ ନାହିଁ କି ଖଳେ ତାହା ନିନ୍ତ ଧାପ୍ସି ହେ । ୪୧ ।
ଯଥାଜାତ ବୁଦ୍ଧି ଶୁମାପୁଚ୍ଛ ପ୍ରାୟେ ଯେନ ।
ଯଥୋଚିତ ନୋହେ ତାଙ୍କ ନିନ୍ଦନ ବନ୍ଦନ ହେ । ୪୨ ।
ରାହୁ ବଡ଼ ବୋଲିବା କି ବିଧୁନ୍ତୁଦ ହେଲେ ।
ରସ ନିନ୍ଦକେ ସେପରି ବୋଲନ୍ତି ଅଖିଳେ ହେ । ୪୩ ।

---

୩୭—ପ୍ରେମପରିପାକ ଧୀର—ଯେଉଁ ପଣ୍ଡିତମାନେ ଈଶ୍ୱରପ୍ରେମରେ ନିଷ୍ଠା ଲଭିଅଛନ୍ତି । ସେମାନେ ମେଘପରି । ମେଘ ଯେପରି ଖାର ଓ ମଧୁର ପାଣି ଏକା କରେ, ଅର୍ଥାତ୍ ସମୁଦ୍ରର ଲୁଣି ପାଣି ନେଇ ମଧୁର କରି ବରଷେ, ସେପରି ପଣ୍ଡିତମାନେ ଦୋଷକୁ ମଧ୍ୟ ଗୁଣ ପରି ଗ୍ରହଣ କରନ୍ତି । ଉଃ

୩୯—ବିବେକ [ ବିବେକୀ ] ଗ୍ରାହକମାନେ (ଭାବୁକ—Critics) କୋଟି କୋଟି କବିଙ୍କର ପରମାୟୁ ଯେନ ବଞ୍ଚିଥିଲେ କବିତାର ମ୍ଳାନ [ଅନାଦର] ହେବନାହିଁ ।

୪୦—ମୁଁ ବୈଶ୍ୟ (ବଣିଆ) ପରି ରାଧାକୃଷ୍ଣଙ୍କ ଭାବରେ ପସରା (ଦୋକାନ) ମେଲିଛି । ଭାବ—ବିଚାର କର ।

୪୧—ବଣିଆ ପସରାରେ ବିଷ ଥିଲା ପରି ଏହି କବିତାରେ ଦୋଷ ଥାଇ ପାରେ । ଖଳ ଲୋକମାନେ ତାହା ନିତ୍ତ ଧାପ୍ସି [ ସେହି ଦୋଷକୁ ସବୁବେଳ ଭାବି ] ତହିଁରେ ମଜ୍ଜିବେ ନାହିଁ କି ? ଅର୍ଥାତ୍ ଖଳମାନେ କେବଳ ଦୋଷ ଦେଖାଇବେ ।

୪୨—ଯଥାଜାତ [ ମୂର୍ଖ ]ଙ୍କର ବୁଦ୍ଧି କୁକୁରଲାଙ୍ଗୁଳ ପରି ସବୁବେଳେ ବଙ୍କା ? ସେମାନଙ୍କର ସ୍ତୁତି ବା ନିନ୍ଦା ଉଚିତ ନୁହେ, ଏହା ଯେନ [ଜାଣ] ।

୪୩—ରାହୁ ବିଧୁ ନୁଦ ହେଲ [ ଚନ୍ଦ୍ରଙ୍କୁ ଗ୍ରାସ କଲା ] ବୋଲି କିଏ ତାକୁ ବଡ଼ ବୋଲିବ ? ଅଖିଳେ [ସମସ୍ତେ] ରସନିନ୍ଦକେ [ ରସନିନ୍ଦାକାରୀମାନଙ୍କୁ ] ସେପରି [ବଡ଼] ବୋଲନ୍ତି କି ? ବୋଲନ୍ତି ନାହିଁ ।

ଲଭ ନ ଥିଲେହେଁ ସର୍ପ ପରଶେ ଦଂଶନ୍ତି
ଲୀଳା କରି ରସ ଦେଲେ ବିଷ ଉଦ୍‌ଗାରନ୍ତି ହେ । ୪୪ ।
ବାଇ ବୋଲିବେ ତ ବନ୍ଧୁ ନିନ୍ଦିଲେ ତାହାଙ୍କୁ ।
ବଡ଼ ରସ ନୋହେ ପିପୀଲିକା ବିନାଶକୁ ହେ । ୪୫ ।
ସୁଜନେ ଆଦର ମିଷ୍ଟପରି ଏ କବିତ୍ୱ ।
ସର୍ବ ସୁମନା ସୁରସ କରିଛି ଏକତ୍ର ହେ । ୪୬ ।
ସରଘା ପରାଏ ଅଳ୍ପବୁଦ୍ଧି ଶକ୍ତିହୀନ ।
ସଂସାରେ କେବଳ ମଧୁକୋଷ କୀର୍ତ୍ତି ଯେମନ ହେ । ୪୭ ।
ସ୍ୱାଦ ଆସ୍ୱାଦନ କଲେ ଚିତ୍ତ ମଗ୍ନ ହେବ ।
ସଂସାର ସାଗରବୁଡ଼ା ବାଧ ବ୍ୟାଧି ଯିବ ହେ । ୪୮ ।
ହରେକୃଷ୍ଣ ରାମନାମ ଯହିଁ ସେହି ତତ୍ତ୍ୱ ।
ହରଷେ ରସ ଏ ଯେମନ ସାଧବ ଏ ଗୀତ ହେ । ୪୯ ।
କ୍ଷମାନିଧି କୃଷ୍ଣ ଅବଧାନରେ ପୂର୍ଣ୍ଣ କର ।
କ୍ଷେମେ ଭଣେ ଅଭିମନ୍ୟୁ ସାମନ୍ତସିଂହାର ହେ । ୫୦ ।

୪୮—୨ ବାଧା ବ୍ୟାଧି—ଜ

---

୪୪—ବିନା ଲାଭରେ ସାପ ପରି କାମୁଡ଼ନ୍ତି । ସାପଙ୍କୁ କୌତୁକରେ ରସ [ ଦୁଗ୍ଧ ] ଦେଲେ ବିଷ ବାନ୍ତି କରନ୍ତି; ସେପରି ରସନିନ୍ଦକଙ୍କୁ ରସମୟବାକ୍ୟ ଦାନ କଲେ ସେମାନେ ଦୋଷ ଦେଖାନ୍ତି ।

୪୫ ବାଇ—ବାଇଆ, ପାଗଳ । ପିପୀଲିକା ବିନାଶ—ପିମ୍ପୁଡ଼ି ମାରିବା [ ଦୃ ] ।

୪୬—୪୭—ଅଳ୍ପବୁଦ୍ଧି ଓ ଶକ୍ତିହୀନ ହେଲେ ମଧ୍ୟ ସରଘା [ ମହୁମାଛି ] ଯେପରି ସବୁ ଫୁଲରୁ ରସ ନେଇ ଏକାଠି କରି ମହୁଫେଣା ତିଆରି କରି ସଂସାରରେ କୀର୍ତ୍ତି [ପ୍ରଶଂସା] ଲଭ କରେ, ସେପରି ମୁଁ ଅଳ୍ପବୁଦ୍ଧି ଓ ଶକ୍ତିଶୂନ୍ୟ ହେଲେ ମଧ୍ୟ ସମସ୍ତ ପଣ୍ଡିତ ଗ୍ରନ୍ଥରୁ ସାର ନେଇ ମଧୁକୋଷ [ ରସର ଭଣ୍ଡାର ] ଏହି ଗ୍ରନ୍ଥ କରି କୀର୍ତ୍ତି ଲଭ କରିବି । ଏହା ଯେନ [ ଜାଣ ]।

ସୁମନା—ଫୁଲ, ପଣ୍ଡିତ । ସୁରସ—ମଧୁ, ପୁଷ୍ପରସ ଓ କାବ୍ୟରସ । ମଧୁକୋଷ—ମହୁଫେଣା, ରସଭଣ୍ଡାର ।

୪୮—ସ୍ୱାଦ—ମହୁପରି ରସ ।

ସଂସାରରୂପକ ସମୁଦ୍ରରେ ବୁଡ଼ି ରହିବାରୁ [ ବାଧ ] ଦୁଃଖରୂପକ ଯେଉଁ ରୋଗ ହୋଇଅଛି, ତାହା ଗୁଡ଼ିଯିବ । ମହୁ ମଧ୍ୟ ରୋଗ ନାଶ କରେ ।

୪୯—ତତ୍ତ୍ୱ—ସାର ବା ପରମ ପଦାର୍ଥ । ରସ—ଆସକ୍ତି ହୁଅ ।

୫୦—କ୍ଷମାନିଧି—ଦୟାସାଗର । କ୍ଷେମେ—କ୍ଷାନ୍ତଭାବରେ, ଦୀନଭାବରେ କିମ୍ବା କ୍ଷେମେ—କୁଶଳରେ ବା କୁଶଳ ପାଇଁ ।

୧୧ ପଦ ପରେ—

ଇଚ୍ଛାତ୍ରସ୍ଥ—ଏହା ବଙ୍କପ୍ରିରୂପରେ 'ଭକ୍ତିରସାମୃତ ସିନ୍ଧୁ'ରେ କଥିତ । ଏହା ଜଣାଶବ୍ଦରୂପେ ଜାଣିବାକୁ ହେବ ।

"ହରମୁଦ୍ଦିଶ୍ୟ ଯତ୍କଞ୍ଚିତ୍ କୃତଂ ବଙ୍କାପନଂ ଗିର
ମୋକ୍ଷଦ୍ୱାରର୍ଗଲାନ୍ମୋକ୍ଷାପ୍ତେନୈବ ବଦ୍ଧତଃ ସ୍ତବଃ ।"

ଭ. ର. ସି.—ପୂ. ସର୍ଗ ୨ୟ ଲହରୀ ।

ଦୈନ୍ୟବୋଧିକା—ନିଜର ଦୀନତା ଓ ହୀନତା ଜଣାଇବା । "ଐଶ୍ୱର୍ଯ୍ୟତ-ଗତ······କଣୋଖି ଯେ ।" ମୁଁ ସଂସାରର ଐଶ୍ୱର୍ଯ୍ୟାଦି ଚାହୁଁ ନାହିଁ—ଦାସଭାବରେ କାଳ କଟାଇବାକୁ ଚାହେଁ । [" ଓ କରବ······କଣୋଖି"—ଏହାର ମଧ୍ୟ ଅର୍ଥ ହୋଇପାରେ, ଆପଣ ମୋତେ "ଅଲେ" ବୋଲି ଡାକବେ ମୁଁ ଦାସୀ ( ରୂପରେ ) କଣୋଖିଭାବରେ ଓ କରବ, ବା ମୋତେ ଦାସୀ ବୋଲି ଡାକବେ, ମୁଁ କଣୋଖିଭାବରେ ଓଁ କରବ ବା କୈଶର ଗୁଣବିଶିଷ୍ଟ ଯେ ଆପଣ ଯେବେ "ଅଲେ" ବୋଲି ଡାକବେ, ମୁଁ ଦାସୀ ରୂପରେ ଓ କରବ ] । ଏଠାରେ ଦାସ ରୂପରେ ସେବା ଦୀନତା ବୁଝାଉଛି ।

ପ୍ରାର୍ଥନାମୟୀ—ଭଗବାନଙ୍କଠାରେ ନିଜର ମନୋଭାବ ବ୍ୟକ୍ତ କରିବା—"ଔଦାର୍ଯ୍ୟ··· ପରସ୍ପରେ କର ହେ ।"

ଲଲସାମୟୀ—ନିଜର ଅଭୀଷ୍ଟ ତଥା ଆତ୍ମାର ଆକାଂକ୍ଷା ପରିପୂରଣ ନିମନ୍ତେ ଆବେଦନ "ଅନନ୍ତ···କର ଦଉ ହେ ।"

୧୬ ପଦ ପରେ—

ଅନୁକ୍ରମଣୀ—ଅବତରଣିକା, ପ୍ରସ୍ତାବନା, ଗ୍ରନ୍ଥର ବିଷୟ ସୂଚନା—"କାମନା···ଯଣ ହେ ।"

୨୩ ପଦ ପରେ—

ଲକ୍ଷଣକ୍ରମ—କାବ୍ୟର ସ୍ୱରୂପ ଯେଉଁ ଧାରା ବା ଖଣ୍ଡରେ ସୂଚିତ ହୁଏ ।

୨୪ ପଦ ପରେ—

ବୁଧ ଅଜ୍ଞବୋଧକ—ପଣ୍ଡିତ ଓ ମୂର୍ଖଙ୍କଦ୍ୱାରା ବୁଝାଯାଏ । ଶାସ୍ତ୍ରଜ୍ଞାନ ବଳରେ ପଣ୍ଡିତମାନେ ଏହା ବିଚାରକୁ ଆଣି ପାରନ୍ତି, ମୂର୍ଖମାନେ ତାହା କରି ପାରନ୍ତି ନାହିଁ । ମୂର୍ଖ ଓ ଭକ୍ତିହୀନ ପଣ୍ଡିତ ମଧ୍ୟ ଏହାର ମର୍ମ ବୁଝି ପାରନ୍ତି ନାହିଁ ମୂର୍ଖ ହେଉ ବା ପଣ୍ଡିତ ହେଉ ଗୁରୁ, କୃଷ୍ଣ, ବୈଷ୍ଣବଠାରେ ଭକ୍ତିବନ୍ତ ହେଲେ ସାରତତ୍ତ୍ୱ ବୁଝିବ ।—"ଝଳ ମାର୍ଗ······ପାରିକତି ସେତୁ ।"

୩୬ ପଦ ପରେ -

ଯେ "ସାଧୁ ସ୍ତୁତ" ଓ "ଖଳନିନ୍ଦା" ବିଷୟକ ପଦମାନ କଥିତ ଅଛି, ତାହା କବିମାନଙ୍କ କାବ୍ୟର ଆଦ୍ୟରେ ପ୍ରାୟ ପ୍ରଦତ୍ତ ହୋଇଥାଏ—

"ଆଦୌ ନମସ୍କ୍ରିୟାଶୀର୍ବା ବସ୍ତୁନିର୍ଦ୍ଦେଶ ଏବ ବା
କ୍ୱଚିନ୍ନିନ୍ଦା ଖଲାଦୀନାଂ ସତାଞ୍ଚ ଗୁଣକୀର୍ତ୍ତନମ୍ ।"

ସାହିତ୍ୟଦର୍ପଣ—୬ଷ୍ଠ ପରିଚ୍ଛେଦ ।

# ଦ୍ୱିତୀୟ ଛାନ୍ଦ

## କୃଷ୍ଣଙ୍କ ବାଳପୌଗଣ୍ଡ ଲୀଳା

### ରାଗ—ମଙ୍ଗଳ

[ ଆଦ୍ୟ ଯମକ; ସଙ୍ଗମଢଆଶ୍ର ବାଣୀ ]

**ଧୀ**ରେ ଧୀରେ ଶୁଣ ଏ ଉତ୍ତରୁ ଚରିତ୍ରୀ
ପୁଣ୍ୟ ପୁଣ୍ୟଜନେ କଲେ ସଂସାରୁ ହତ । ୧ ।
ମହୀ ମହୀଶଙ୍କ ତାପ ଅମାପ ହେଲା ।
ନାଗ ନାଗରେ ଅବନୀ ବୁହା ନ ଗଲା । ୨ ।
ପର ପରଜାଙ୍କ ବିତ୍ତ ହରିଲେ ବନେ ।
ସୁର ସୁରଦ୍ୱେଷି-ତ୍ରାସେ ବିରସ ହେଲେ । ୩ ।
ନରଙ୍କ ନରକ ଅତିଶୟ ହୋଇଲା ।
ତପ ତପବନ୍ତଙ୍କର ଥପୁ ନୋହିଲା । ୪ ।
ବିଧିରେ ବିଧୀରେ ମୁନି ଯାଇଁ କହିଲେ ।
ଅସୁର ଅସୁରଦର୍ପେ ଦେବେ ତ ହେଲେ । ୫ ।

---

୧—ଧୀରେ—ପଣ୍ଡିତମାନେ । ଧୀରେ—ସ୍ଥିରଭାବରେ ।

ପୁଣ୍ୟଜନେ (ରାକ୍ଷସମାନେ) ସଂସାରରୁ ପୁଣ୍ୟ [ ଧର୍ମକାର୍ଯ୍ୟ ] ହତ ନଷ୍ଟ କଲେ ।

୨—ମହୀ [ ପୃଥିବୀ ] ଓ ମହୀଶ [ ରାଜା ]ଙ୍କର, ତାପ [ ଦୁଃଖ ], ଅମାପ [ଅପରିମିତ, ଅତି ବେଶି] ହେଲା । ନାଗ—ସର୍ପ, ବାସୁକି ଓ ନାଗ—ପର୍ବତଦ୍ୱାରା କିମ୍ବା ହସ୍ତୀଦ୍ୱାରା [ବାସୁକିକୁ ହସ୍ତୀସବୁ ଧରିଥାନ୍ତି] । ଧରଣୀ—ପୃଥିବୀ । ଅର୍ଥାତ୍—ବାସୁକି ଓ ପର୍ବତମାନେ ମଧ୍ୟ ପୃଥିବୀ ବହିପାରିଲେ ନାହିଁ ।

୩—ପର—ଶତ୍ରୁମାନେ । ପରଜାଙ୍କ ବିତ୍ତ—ପ୍ରଜାଙ୍କର ଧନ । ସୁର—ଦେବତାମାନେ । ସୁରଦ୍ୱେଷି-ତ୍ରାସେ ଅସୁରମାନଙ୍କ ଭୟରେ । ସୁରଙ୍କଠାରେ ଦ୍ୱେଷ ଯେଉଁମାନଙ୍କର, ସୁରଦ୍ୱିଷ ଓ ସୁରଦ୍ୱେଷୀ ମଧ୍ୟ ଏହି ଅର୍ଥରେ ପ୍ରଯୋଜ୍ୟ] । ବିରସ—ଦୁଃଖିତ, ଆନନ୍ଦଶୂନ୍ୟ ।

୪—ନରଙ୍କ···ହୋଇଲା—ଲୋକଙ୍କର ନରକ [ ପୀଡ଼ା, କଷ୍ଟ ] ବେଶି ହେଲା କିମ୍ବା ଲୋକମାନେ ପାପ କରିବାରୁ ସେମାନଙ୍କର ନରକ ବେଶି ହେଲା । ତପବନ୍ତଙ୍କର ତପ—ମୁନିଋଷିମାନଙ୍କର ତପସ୍ୟା ।

୫—ବିଧିରେ—ବ୍ରହ୍ମାଙ୍କୁ । ବିଧୀରେ—ବିଶେଷ ଧୀରଭାବରେ କିମ୍ବା ଯଥାବିଧି, କିମ୍ବା ଅଧୀରଭାବରେ । ବିଧୀରେ—ବିଗତ ହୋଇଛି ଧୀରଭାବ ଯହିଁରେ । ଅସୁର—ଦେବତ୍ୱହୀନ କିମ୍ବା ଅଶୂର—ବଳହୀନ । ଅସୁରଦର୍ପେ—ରାକ୍ଷସମାନଙ୍କର ଉପଦ୍ରବରେ ।

ଲୋକେ ଲୋକେଶ ଯେ ବସ୍ଥା କଲ ବିଗ୍ରହ ।
ସର୍ବ ସର୍ବସୁର ମୁନି ଯେତେ ବାହାର । ୬ ।

ଚିତ୍ତେ ଚିନ୍ତେ କ୍ଷୀରସିନ୍ଧୁତଟରେ ବିଧାତା ।
ହର ହରଷରେ ହର ସକଳ ଚିନ୍ତା । ୭ ।

ଅନନ୍ତ ଅନନ୍ତଶୟନରେ ତା ଜାଣି ।
ଲୋକେ ଲୋକେ ଜନମି ତାରିବ ମୁଁ ପୁଣି । ୮ ।

ନିଦରେ ନିଦରେ ଥାଅ, ବିଧିରେ କହ ।
ସିତାସିତାଙ୍ଗଜ ରୋମ ଦେଲେ ଯେ ତହିଁ । ୯ ।

ବ୍ରହ୍ମା ବ୍ରହ୍ମାଣ୍ଡକରତା ଆଦେଶ ପାଇ ।
ଚିତ୍ତେ ଚିନ୍ତେ ଏରୂପେ ଜନ୍ମିବେ ଗୋସାଇଁ । ୧୦ ।

ସୁମନସେ ସୁମନସେ ବିଧାତା ହୋଇ ।
ଦର ଦରଧର ବିନାଶିବେ ବୋଲଇ । ୧୧ ।

ଅରି ଅରି ଧରି ହରି କରିବେ ନାଶ ।
ଶ୍ରବଣେ ଶ୍ରବଣେ ସୁର ମୁନିଏ ତୋଷ । ୧୨ ।

ଜୟ ଜୟ କହି ନିଜ ପୁରକୁ ଗଲେ ।
ସାତ୍ୱତ ସାତ୍ୱତକୁଳେ ଜାତ ଇଚ୍ଛିଲେ । ୧୩ ।

---

୬—ଲୋକେଶ—ବ୍ରହ୍ମା । ଲୋକେ—ଲୋକମାନଙ୍କଠାରେ । ସର୍ବ—ମହାଦେବ । ସର୍ବସୁରମୁନି—ସମସ୍ତ ଦେବତା ଓ ମୁନିମାନଙ୍କ ।

୭—ବିଧାତା (ବ୍ରହ୍ମା) କ୍ଷୀରସିନ୍ଧୁତଟରେ—ଦୁଗ୍ଧସମୁଦ୍ର କୂଳରେ ମନରେ ବିଗ୍ରହ କଲେ ବା ଧ୍ୟାନ କଲେ । ହର—ଦୂର କର । ହରି ହେ ଭଗବାନ୍ ବିଷ୍ଣୁ ।

୮—ଅନନ୍ତ—ନାରାୟଣ । ଅନନ୍ତଶୟନରେ—ଶେଷ (ବାସୁକି) ଶଯ୍ୟାରେ । ଲୋକେ ମର୍ତ୍ତ୍ୟଲୋକରେ । ଲୋକେ—ଲୋକଙ୍କୁ ତାରିବ ।

୯—ନିଦ୍ରାରେ—ନିର୍ଭୟରେ (ଦର—ଭୟ) । ନିଦରେ—ନିଦ୍ରାରେ । ବିଧିରେ - ବ୍ରହ୍ମାଙ୍କୁ । ସିତାସିତାଙ୍ଗଜ ରୋମ—ନିଜଦେହର ଧଳା ଓ କଳା ରୋମ ଦୁଇଟି ।

ସେଥିପାଇଁ କଳା [କୃଷ୍ଣ] ଧଳା [ବଳଭଦ୍ର] ରୂପରେ ଦୁଇ ମୂର୍ତ୍ତି ଧରି ଜନ୍ମିଲେ ।

୧୦—ବ୍ରହ୍ମାଣ୍ଡ କରତା—ବିଷ୍ଣୁଙ୍କର । ଏରୂପେ—ଏପରି ଧଳା ଓ କଳା ରୂପରେ । ଗୋସାଇଁ—ପ୍ରଭୁ ।

୧୧—ସୁମନସେ—ଦେବଙ୍କଠାରେ । ସୁମନସେ—ଆନନ୍ଦିତ ମନ । ବିଧାତା ହୋଇ—ଜାତ କରାଇ । ଦରଧର—ଶଙ୍ଖଧାରୀ ବିଷ୍ଣୁ । ଦର—ଭୟ ।

୧୨ - ହରି ଅରି [ଚକ୍ର] ଧରି ଅରି—[ଶତ୍ରୁଙ୍କୁ] ନାଶିବେ । ଶ୍ରବଣେ କର୍ଣ୍ଣରେ । ଶ୍ରବଣେ—ଶୁଣି ।

୧୩—ସାତ୍ୱତ - ସନାତନ ବିଷ୍ଣୁ । ସାତ୍ୱତକୁଳରେ—ଯଦୁବଂଶରେ । ଜାତ—ଜନ୍ମ ।

ଦେବଙ୍କ ଦେବକନ୍ନରେ ତାରଣ ପାଇଁ ।
ଜନନିବାସ ଜନମାବାସକୁ ଧାଇଁ । ୧୪ ।

ଲୋକେ ଲୋକେ ଜନ୍ମବାଦ ପ୍ରକାଶ କରି ।
ଧରାଧର ଜାତ ମାତାଧରାର ପୁରୀ । ୧୫ ।

ଜନକ ଜନଙ୍କ ନ ଜାଣିମାରେ ନେଇ ।
ଗୋପେ ଗୋପେଂ ନନ୍ଦଘରେ ବହନ ଥୋଇ । ୧୬ ।

ନନ୍ଦନନ୍ଦନ ଯେ ମାୟା ଆଶ୍ରିତ ହୋଇ ।
ଜାତ ଯାତନାକୁ ଥିଲେ ସ୍ୱହତେ ପାଇ । ୧୭ ।

ଅଙ୍ଗ ଅଙ୍ଗ ଘନ-ବଦ୍ୟୁ ପ୍ରାୟେ ମିଶିଲା ।
ପର ପରମାତ୍ମାରେ କି ଜୀବ ପଶିଲା । ୧୮ ।

ଶକ୍ତି ଶକ୍ତିବନ୍ତ ତାତେ ପାଲଟ ଦେଲେ ।
ମାୟା ମାୟାରେ ତା ବସୁଦେବ ଯେ ନେଲେ । ୧୯ ।

କଂସ କଷଣ ବହଳ ପ୍ରାତେ ତା ଜାଣି ।
ଖରେ ଖ-ରେ ଅନ୍ତର୍ଦ୍ଧାନ ସେ ଠାକୁରାଣୀ । ୨୦ ।

---

୧୪—ଦେବଙ୍କାଙ୍କୁ ଏବଂ ଦେବତା ଓ କନ୍ନରମାନଙ୍କୁ ଉଦ୍ଧାର କରିବା ଲାଗି, ଜନନିବାସ—(ଲୋକାଧାର ବିଷ୍ଣୁ), ଜନମାବାସକୁ ଧାଇଁ ଅର୍ଥାତ୍ ମାତୃଗର୍ଭରେ ରହିବାକୁ ଚଳିଲେ ।

୧୫—ଲୋକେ ଲୋକେ—ସଂସାରରେ ମନୁଷ୍ୟମାନଙ୍କ ମଧ୍ୟରେ ଧରାଧର [ବିଷ୍ଣୁ ; ସେ ବରାହରୂପରେ ଦନ୍ତାଗ୍ରରେ ପୃଥିବୀ ଧାରଣ କରିଥିଲେ] ମାତାଧରାର [ଦେବକୀଙ୍କୁ ବନ୍ଦୀ କରିଥିବା କଂସର] ପୁରୀ [ମଥୁରାରେ] ଜାତ ହେଲେ ।

୧୬—ଜନକ—ପିତା ବସୁଦେବ । ଗୋପେ—ଗୋପପୁରରେ । ଗୋପ୍ୟେ ଗୁପ୍ତଭାବରେ । ବହନ—ଶୀଘ୍ର ।

୧୭—ନନ୍ଦନନ୍ଦନ (ଶ୍ରୀକୃଷ୍ଣ) ଯୋଗମାୟା ଆଶ୍ରୟ କରି ତାଙ୍କ ସହିତ ଜାତ ଯାତନାକୁ—ଜନ୍ମକଷ୍ଟକୁ ସ୍ୱହତେ - ନିଜର ଲୀଳାମୟ ଆନନ୍ଦ ଉପଭୋଗ କରିବା ଓ କରାଇବା ରୂପ ମଙ୍ଗଳ ପାଇଁ—ପାଇଥିଲେ ।

୧୮—ନନ୍ଦଘରେ ଅଙ୍ଗ ଅଙ୍ଗ ନନ୍ଦନନ୍ଦନ ଶ୍ରୀକୃଷ୍ଣଙ୍କ ଅଙ୍ଗରେ ବସୁଦେବ ନନ୍ଦନ କୃଷ୍ଣଙ୍କ ଅଙ୍ଗ ମେଘ ଓ ବିଜୁଳି ପରି ମିଶିଗଲା । ଜୀବାତ୍ମା ପର (ଉତ୍କୃଷ୍ଟ) ପରମାତ୍ମାଙ୍କଠାରେ ମିଶିଲା କି ? ପ୍ରାବଶଦ୍ ବାସୁଦେବ ସ୍ତୁ ଶ୍ରୀଲୀଳା ପୁରୁଷୋତ୍ତମମ୍
(ଲ: ଭା: ୪୫୪)

୧୯—ଶକ୍ତିବନ୍ତ—ସର୍ବଶକ୍ତିଯୁକ୍ତ କୃଷ୍ଣ ଶକ୍ତି—ନନ୍ଦକନ୍ୟାରୂପରେ ଜାତ ଯୋଗମାୟାଙ୍କୁ, ତାତେ ପିତା ବସୁଦେବଙ୍କୁ ବଦଳ ଦେଲେ । ବସୁଦେବ ଯୋଗମାୟାଙ୍କର ମାୟା ବଳରେ ସେହି କନ୍ୟାଶକ୍ତିଙ୍କୁ ନେଲେ ।

୨୦—କଷଣ—କଷ୍ଟ । ଖରେ—ବେଗରେ । ଖ-ରେ—ଆକାଶରେ । ଅନ୍ତର୍ଦ୍ଧାନ—ଅଭେଇଗଲେ

ଶଶି ଶଶଧର ତୋର ଜାତ ଭୂଲୋକେ ।
ଜୀବ ଯିବ ଦୁଷ୍ଟଙ୍କର, ଶୂନ୍ୟରେ ଡାକେ । ୨୧ ।

ଶ୍ରବଣେ ଶ୍ରବଣେ କଂସ ଦେବୀଭାରତୀ ।
ବୁଦ୍ଧି ବୁଦ୍ଧି ବସୁବାଦେ କଲା ସେ ନତି । ୨୨ ।

ବଳଭଦ୍ର ବଳଭଦ୍ର ରୋହିଣୀ-ସୁତ ।
ଅନନ୍ତ ଅନନ୍ତ ମୂର୍ତ୍ତି ଆଗହୁଁ ଖ୍ୟାତ । ୨୩ ।

କୃଷ୍ଣ କୃଷ୍ଣମୂର୍ତ୍ତି ଧରି ପୁଣି ଜନ୍ମିଲେ ।
ଯଶୋଦୟା ଯଶୋଦୟାକାନ୍ତ ସେ ହେଲେ । ୨୪ ।

ସିତାସିତାମ୍ବୁଜମୁଖଯୁଗଳ ଦେଖି ।
ଜନନୀ ଜନନିଚୟ ଅତ୍ୟନ୍ତ ସୁଖୀ । ୨୫ ।

ରାମ ରାମଶ୍ୟାମ ବାଳକାଳ ପାଳନ ।
ଶେଷ ଶେଷ କରିବେ କି କଲେ କଥନ । ୨୬ ।

ଆନ ଆନନ୍ଦକୁ ଲକ୍ଷ୍ୟ ଦେବାର ନୋହେ ।
ଜନ ଜନକ ଜନନୀ ମନକୁ ମୋହେ । ୨୭ ।

ପୂତନାମା ପୂତନାମାରଣକୁ କଲେ ।
ଶକଟ ସଙ୍କଟରୁ ନିଃଶଙ୍କେ ତରିଲେ । ୨୮ ।

---

୨୧—ତୋର ଶଶି—ଶତ୍ରୁ, ଶଶଧର-[ଚନ୍ଦ୍ରଧର] ହର ଭୂଲୋକରେ ଜାତ ହୋଇଅଛନ୍ତି । ଜୀବ—ପ୍ରାଣ । ଶୂନ୍ୟରେ—ଆକାଶରେ ।

୨୨—ଶ୍ରବଣେ ଶ୍ରବଣେ—କର୍ଣ୍ଣରେ ଶୁଣି । ଦେବୀଭାରତୀ ଯୋଗମାୟାଙ୍କ ବଚନ । ସେ ବସୁବାଦରେ—ଶ୍ରୀକୃଷ୍ଣଙ୍କ ପିତାର ବିବାଦରେ । ବୁଦ୍ଧି ବୁଦ୍ଧି କଲା—ମନ ବଳାଇଲା ।

୨୩—ବଳଭଦ୍ର—ଅତି ବଳବାନ୍ । ବଳଭଦ୍ର—ବଳରାମ । ଅନନ୍ତ—ଅବିନାଶୀ । ଅନନ୍ତମୂର୍ତ୍ତି—ଶେଷାବତାର । ଖ୍ୟାତ—ପ୍ରକାଶ ହୋଇଅଛନ୍ତି ।

୨୪—କୃଷ୍ଣମୂର୍ତ୍ତି - ଶ୍ୟାମଳ ରୂପ । ଯଶୋଦୟା ଯଶୋଦୟାକାନ୍ତ—ଯଶୋଦାଙ୍କର ଯଶ ଓ ଦୟାର କାରଣ ହେଲେ ବା ଯଶ ଉଦୟର କାରଣ ହେଲେ ।

୨୫ ସିତାସିତାମ୍ବୁଜମୁଖଯୁଗଳ—ଶ୍ରୀକୃଷ୍ଣ ଓ ବଳରାମଙ୍କର କଳା ଓ ଧଳା ପଦ୍ମ ପରି ମୁହଁ ଦୁଇଟି । ଜନନୀ—ମାତା, ଯଶୋଦା ଓ ରୋହିଣୀ । ଜନନିଚୟ—ଲୋକସମୂହ ।

୨୬—ରାମ—ରମଣୀୟ । ରାମଶ୍ୟାମ—ବଳରାମ ଓ ଶ୍ରୀକୃଷ୍ଣ । ଶେଷ—ଅନନ୍ତ ସହସ୍ର ମୁଖରେ । ଶେଷ—ସମାପ୍ତି ।

୨୭—ଲକ୍ଷ୍ୟ—ତୁଳନା । ଜନ ...ମୋହେ—ଲୋକମାନଙ୍କର ଏବଂ ବାପମାଆଙ୍କର ମନକୁ ମୋହିତ କଲେ ।

୨୮—ପୂତନାମା—ପବିତ୍ରନାମଧାରୀ ଶ୍ରୀକୃଷ୍ଣ ।

ପୂତନାମାରଣକୁ—ପୂତନା ରାକ୍ଷସୀର ବିନାଶକୁ [ରସକଲ୍ଲୋଳ ଟୀକା ଦେଖ] ଶକଟ-ସଙ୍କଟରୁ—ଶକଟାସୁରର ଉପଦ୍ରବରୁ । ନିଃଶଙ୍କେ—ନିର୍ଭୟରେ । ର. କ. ଟୀକା ।

ତୃଣା ତୃଣାବଳୀ ପରି ହେଲା ବିନାଶ ।
ବତ୍ସା ବତ୍ସାରଖ ଠାରେ ହୋଇଲା ନାଶ । ୨୯ ।

ବକ-ବକଣ୍ଠ ଚିରିଲେ ଦ୍ୱି ଫାଳ କରି ।
ଅଘ ଅଘମର୍ଷଣ ତାଙ୍କୁ ବିଦାରି । ୩୦ ।

ଯାମଳା ଯାମଳା ପରି ଶାପୁଁ ତରିଲ ।
ବୃଷ ବୃଷଶ୍ରେୟେ ହରିହସ୍ତରେ ମଲ । ୩୧ ।

ଧେନୁକ ଧେନୁକପାଳ ତାଳାର୍ଥେ ନାଶି ।
ଫୁଟି ଫୁଟିଲାର ପରି ନାଶିଲ କେଶୀ । ୩୨ ।

କାଳି କାଳିଆଚରଣେ ଦଳି ହୋଇଲା ।
ଧର ଧରଣରେ ଇନ୍ଦ୍ର ବାଦେ ହାରିଲା । ୩୩ ।

ବିଧୀରେ ବିଧିରେ ବତ୍ସା ହରଣେ ଗଞ୍ଜି ।
ଗୋକୁଳ ଗୋକୁଳସୁତ ହୋଇଣ ରଞ୍ଜି । ୩୪ ।

୩୨-୨ ନାଶିଲେ କେଶୀ ଚ, ଠ

---

୨୯—ତୃଣା—ତୃଣାବର୍ତ୍ତ ନାମକ ରାକ୍ଷସ । ତୃଣାବଳୀ ପରି—ଘାସଗୋଛା ପରି ର, କ, ଟୀକା । ବତ୍ସା—ବତ୍ସାନାମକ ରାକ୍ଷସ । ବତ୍ସାରଖା-ଠାରେ—ବାଛୁରି ରକ୍ଷିବା ସ୍ଥାନରେ କିମ୍ବା ବାଛୁରି ରଖୁଆଳ କୃଷ୍ଣଙ୍କଦ୍ୱାରା । ର, କ, ଟୀକା ।

୩୦—ବକବକଣ୍ଠ—ବକାସୁରର ମୁଖ ଅର୍ଥାତ୍ ଥଣ୍ଟ । ଅଘମର୍ଷଣ—ପାପବିନାଶକ ଶ୍ରୀକୃଷ୍ଣ । ଅଘ—ଅଘାସୁରର । [ର, କ, ଟୀକା]

୩୧—ଯାମଳା ଯାଆଁଳା । ଯାମଳା—ଯାମଳାର୍ଜ୍ଜୁନ ବୃକ୍ଷ । କୁବେର-ଙ୍କର ଦୁଇ ପୁଅ ନାରଦଙ୍କ ଶାପରେ ବୃକ୍ଷ ହୋଇଥିଲେ; ଶ୍ରୀକୃଷ୍ଣଙ୍କ ଅଙ୍ଗସଙ୍ଗରେ ଉପୁଡ଼ି ପଡ଼ି ପୂର୍ବ ଶରୀର ପାଇଲେ । ର କ. ଟୀକା ।
ବୃଷ—ଷଣ୍ଢାସୁର । ବୃଷଶ୍ରେୟେ—ଧର୍ମର ମଙ୍ଗଳପାଇଁ, ମୁକ୍ତିପାଇଁ ।

୩୨—ଧେନୁକପାଳ—ବତ୍ସାରଖା ଶ୍ରୀରାମ । ଧେନୁକ—ଧେନୁକ ନାମକ ରାକ୍ଷସକୁ । ତାଳାର୍ଥେ—ତାଳ ଖାଇବାପାଇଁ ତାଳବନରେ ନାଶ କରିଥିଲେ । ମ. ମ. ଟୀକା

କେଶୀ—ଅସୁରବିଶେଷ ର, କ, ଟୀକା । ଫୁଟି—ଫୁଟି କାକୁଡ଼ି । ନାଶିଲ—ନିଜେ ନିଜେ ନଷ୍ଟ ହେଲା । ର, କ, ଟୀକା

୩୩—କାଳୀ—କାଳୀୟ ସର୍ପ । କାଳିଆଚରଣେ—କୃଷ୍ଣଙ୍କ ପାଦଦ୍ୱାରା । ର. କ. ଟୀକା । ବାଦେ—ବିବାଦରେ । ଧରଧରଣରେ—ଗୋବର୍ଦ୍ଧନ-ପର୍ବତ ଟେକିବାଦ୍ୱାରା । ର. କ. ଟୀକା ।

୩୪—ବିଧୀରେ—ବିଶେଷ ଧୀରଭାବରେ । ବିଧିରେ—ବ୍ରହ୍ମାଙ୍କ ।
କୃଷ୍ଣଙ୍କ ଶକ୍ତି ପରୀକ୍ଷା କରିବା ମାନସରେ ବ୍ରହ୍ମା ବତ୍ସାହରଣ କରିଥିଲେ । କୃଷ୍ଣ ସ୍ୱଗର୍ଭରୁ ସେ ସବୁ ଜନ୍ମାଇଥିଲେ । ଗୋକୁଳ—ଗୋ ସମସ୍ତ ବା ଗୋପପୁର । ଗୋକୁଳସୁତ—କୃଷ୍ଣ ଗୋପାଳପୁଅ ହୋଇ । ରଞ୍ଜି— ମନ ହରଣ କରିଥିଲେ ।

କଦମ୍ବ କଦମ୍ବତଳେ ନାଶିଲେ ରାମ ।
କନ୍ଦରେ କନ୍ଦରେ ରୁପି କଲେ ସେ ସମ । ୩୫ ।

ବ୍ୟୋମ ବ୍ୟୋମପଥେ ନେଇଁ ମୁଥରେ ମାଶ ।
ପ୍ରଳମ୍ବ ପ୍ରଳମ୍ବକେଶ ଧରି ସହାରି । ୩୬ ।

ନନ୍ଦ ନନ୍ଦକଧାରଣ ବନ୍ଧରୁ ତାରି ।
ଜାତବେଦ ଜାତବେଦ ଗର୍ଭେ ସହରି । ୩୭ ।

ମହୀ ମହୀମାକୁ ଦେଖି ହେଲା ହରଷ ।
ଗଣେଶ ଗଣେଶରେ ସେ ହେବ କି ଶେଷ । ୩୮ ।

ହେଲା ହେଳାରେ ଏମାନ ବାଲ୍ୟ ପୌଗଣ୍ଡେ ।
କବ କବ ହେଲେ କହି ନୋହିବ ତୁଣ୍ଡେ । ୩୯ ।

ନ ବରଷେ ନବରସେ ବଳାଇ ମନ ।
ଆର ଆର ଛନ୍ଦେ ତା ଶୁଣିମେ ସୁଜନ । ୪୦ ।

ବଦଗଧ ବଦଗଧ ଚନ୍ତାମଣି ଏ ।
ଶ୍ୟାମ ସାମନ୍ତସିଂହାର କରଇ ଲୟେ । ୪୧ ।

୪୦—୨ ତାହା ଶୁଣ ସୁଜନ—ଝ, ଠ ।

---

୩୫—ରାମ—ବଳରାମ । କଦମ୍ବ—ଅସୁରକୁ କଦମ୍ବ ଗଛ ତଳରେ । [ ମ, ମ, ଟୀ ] କନ୍ଦରେ—କନ୍ଦରାସୁରକୁ । କନ୍ଦରେ—ପର୍ବତକନ୍ଦରରେ । ସମ—ସମାନ ।

୩୬—ବ୍ୟୋମ—ଅସୁରକୁ ବ୍ୟୋମପଥେ—ଆକାଶମାର୍ଗରେ ନେଲାବେଳେ । [ମ, ମ, ଟୀ]

ପ୍ରଳମ୍ବ—ଅସୁରକୁ । ପ୍ରଳମ୍ବକେଶ—ଲମ୍ବାକେଶ ଯାହାର, ବଳଦେବ । [ ମ, ମ, ଟୀ ]

୩୭—ନନ୍ଦକଧାରଣ—ନନ୍ଦକଖଡ୍‌ଗଧାରୀ ଶ୍ରୀକୃଷ୍ଣ ପିତା ନନ୍ଦଙ୍କୁ ବରୁଣଙ୍କ ବନ୍ଧରୁ ତାରିଥିଲେ । [ମ, ମ, ଟୀ]

ଜାତବେଦ—ଶ୍ରୀକୃଷ୍ଣ—ଯାହାଙ୍କଠାରୁ ବେଦମାନେ ଜାତ ହୋଇଅଛନ୍ତି । ଜାତବେଦ—ଅଗ୍ନିକୁ [ ର, କ, ଟୀ ] ।

୩୮—ମହୀ—ପୃଥିବୀ । ଗଣେଶ—ପ୍ରମଥଗଣଙ୍କର ପତି ବା ଗଣନାକାରୀଙ୍କ ମଧ୍ୟରେ ଶ୍ରେଷ୍ଠ । ଗଣେଶ—ଗଣନାଥଙ୍କ ଦ୍ୱାରା ।

୩୯—ବାଲ୍ୟ—୫ ବର୍ଷ ପର୍ଯ୍ୟନ୍ତ (ବାତ୍ସଲ୍ୟରସ) । ପୌଗଣ୍ଡ—୧୦ ବର୍ଷ ପର୍ଯ୍ୟନ୍ତ (ସଖ୍ୟରସ) । କବ—ଶ୍ଳୋକ । କବ ହେଲେ—ଶ୍ଳୋକ ରଚନା କଲେ । ଲ; ୧୯-୪ ଦେଖ ।

୪୦—ନ ବରଷେ—ନବମ ବର୍ଷରେ । ନବରସେ—ନୂତନ ରସରେ (ମାଧୁର୍ଯ୍ୟ ରସରେ) । ବଦଗଧ—ହେ ପଣ୍ଡିତମାନେ ବା ରସିକମାନେ । ଶ୍ୟାମ—ଶ୍ରୀକୃଷ୍ଣଙ୍କ ।

## ତୃତୀୟ ଛାନ୍ଦ

# କୃଷ୍ଣଙ୍କ କୈଶୋର ବର୍ଣ୍ଣନା

ରାଗ-ରସକୋଇଲ

( ଅନ୍ତ୍ୟାନୁପ୍ରାସ )

**କୃଷ୍ଣ** ପଉଗଣ୍ଡ କାଳ ଅନ୍ତରେ । ନବ କିଶୋର ବୟସ ଆଗତରେ ।
ଶୋଭା ବିଚେଷ୍ଟା ବାହାର ଭିତରେ । ଦୀପ୍ତିବନ୍ତ ହେଲେ ସ୍ଥାନ ଅନ୍ତରେ ସେ
ଯେନ ଧୀବନ୍ତେ ଚିତ୍ତରେ ହେ ।
କ୍ରମେ କ୍ରମେ ଦିନୁ ଦିନ ଅନୁଆନ ଶାନ୍ତି ଖ୍ୟାତି ଅତିତରେ ଯେ । ୧ ।
ଇନ୍ଦ୍ରନୀଳମଣି ଝଳ ଦର୍ପଣ । ଯୋଖ କରିବା ଯେବେ ପଣ ପଣ ।
ତେବେ ତାହାର କାନ୍ତି ବଡ଼ପଣ । ହାରି କାନ୍ତିକ ଦେବ ସମର୍ପଣ ଯେ ।
ତହିଁ ଲାବଣ୍ୟ ରୋପଣ ଯେ ।
ଚିତ୍ରଭଙ୍ଗୀମାନ ଶରୀରସଙ୍ଗୀ ହେଲେ ମୂର୍ତ୍ତିବନ୍ତରେ ଆପଣ ଯେ । ୨ ।
ସଂସାର-କାନ୍ତି-ସାରକୁ ଆଣିଲା । ଅମୃତ ମିଶାଇ ବାଟି ଛାଣିଲା ।
ବିହି ଏ ମୂରତିକି ନିର୍ମାଣିଲା । ମର୍କତ ରମାଣରେ ରସାଣିଲା ଯେ ।
ଉପମା ସୃଷ୍ଟି କିଣିଲା ଯେ ।

---

୧—କିଶୋର ବୟସ—୧୦ ଠାରୁ ୧୬ ବର୍ଷ ପର୍ଯ୍ୟନ୍ତ । ବିଚେଷ୍ଟା—ବିବିଧ ଚେଷ୍ଟା, ଭଙ୍ଗୀ । ଦୀପ୍ତିବନ୍ତ—ପ୍ରକାଶିତ, ଉଜ୍ଜ୍ୱଳ ହେଲେ । ସ୍ଥାନ ଅନ୍ତରେ—ସ୍ଥାନ ମଧ୍ୟରେ । ଧୀବନ୍ତେ—ପଣ୍ଡିତମାନେ । ଅନୁଆନ—ନୂଆ ନୂଆ, ଅନ୍ୟ-ପ୍ରକାର । ଅତିତରେ—ଅତିଶୟ ଭାବରେ [ ଅତିତରାଂ ଶବ୍ଦରୁ ବା ଅତି ବେଗରେ ] ( ଅତି—ତର ) । କୃଷ୍ଣ ପଉଗଣ୍ଡ ବୟସ୍କ ଯେମନ୍ତ । [ସଦାକୈଶୋର ତନୁବ୍ୟାପ୍ତିଭୂତ । ଗୌରଚନ୍ଦ୍ରାମଣି ୩-୪ ]

୨—ଇନ୍ଦ୍ରନୀଳମଣି ଝଳ ଦର୍ପଣ—ଇନ୍ଦ୍ରନୀଳମଣି-ନିର୍ମିତ ଉଜ୍ଜ୍ୱଳ ଦର୍ପଣ [ ଆରସି ] । ଯୋଖ କରିବା—ତୁଳନା ପାଇଁ ଯୋଡ଼ିବା । ଲାବଣ୍ୟ—ଶରୀରର ତରଳ ସ୍ୱଚ୍ଛ କାନ୍ତି । "ମୁକ୍ତାଫଳେଷୁ ଛାୟାୟାସ୍ତରଳତ୍ୱମିବାନ୍ତରା । ପ୍ରତିଭାତି ଯଦଙ୍ଗେଷୁ ଲାବଣ୍ୟଂ ତଦିହୋଚ୍ୟତେ ।।"

ରୋପଣ—ସ୍ଥାପନା । ଚିତ୍ରଭଙ୍ଗୀ—ବିଚିତ୍ର ଭାବଭଙ୍ଗୀଗୁଡ଼ିକ ସାକ୍ଷାତ୍ ମୂର୍ତ୍ତି ଧରି ଦେହରେ ରହିଲେ । ମୂର୍ତ୍ତିବନ୍ତରେ—ମୂର୍ତ୍ତିବନ୍ତ ଭାବରେ, ଅତ୍ୟନ୍ତ ପ୍ରକଟିତ ହୋଇ ।

ମୋହନ ମନ୍ତ୍ରରେ ଜୀବନ୍ୟାସ କରି ଯାର ସଂସାରେ ଗଣିଲ ସେ । ୩ ।
ଦେଖିବ ଯେବେ ଏ ଶୋଭା ମୂରତି । ଶିବଙ୍କୁ ପ୍ରଶଂସା କରିବ ରତି ।
ପତି ନିନ୍ଦା କଲେ ପରବରତ୍ତୀ । ମୋ ଚିତ୍ତ ହୁଅନ୍ତା ସିନା କରତି ସେ ।
ଅନାଇଁ ପନ୍ତବରତ୍ତୀ ସେ ।
ଆରତି ହୋଇ କେ ସୁରତି ଇଚ୍ଛାରେ କରିବ ନାହିଁ ପୀରତି ସେ । ୪ ।
କଳା କମଳ ମର୍କତ ଆରଶି । ଆନନ ମନ ନିଏ ଆକରଷି ।
ଦେଇ ନ ପାରି ଉପମା ହରଷି । ଭଙ୍ଗୀରେ ସେ ଗିମନ ପିବ ରସି ସେ ।
ସ୍ମିତ-ସୁଧାକୁ ବରଷି ସେ ।
ଭରି ଘନରସ ଉଛୁଳାଇ ଦେଲେ ନାଗରୀ ହୃଦସରସୀ ସେ । ୫ ।
କ୍ରମେ ବଢ଼ନ୍ତେ ସୁଷମା-ତରଙ୍ଗ । ଆଶ୍ରୟ କଲେ ଆସି ନାନାରଙ୍ଗ ।
ଲକ୍ଷଣ ଚଞ୍ଚଳେ ଜିଣେ କୁରଙ୍ଗ । ମଦ ଦ୍ୱଦୁର୍ତ୍ତି ଅଳପ ରଙ୍ଗ ସେ ।
ଡ଼ିକଟା କାମସାରଙ୍ଗ ସେ ।
· ଇଙ୍ଗିତ ଭଙ୍ଗିମା ପ୍ରସଙ୍ଗେ ନାଚଇ ରଞ୍ଜିବାପାଇଁ ସାରଙ୍ଗ ସେ । ୬ ।

---

୩—ବନ୍ଧ—ବଧ୍ । ମର୍କତ ରସାଣରେ—ମରକତର ତରଳ ଲେପରେ ବା ଗିଲ୍‌ଟିରେ ରସାଣିଲ—ଲେପ ବା ଗିଲ୍‌ଟି ଦେଲ । ଜୀବନ୍ୟାସ କରି ( ମନ୍ତ୍ରରେ ଜୀବନ ଦେଇ ) ସଂସାରରେ ଶ୍ରେଷ୍ଠ ବୋଲି ଗଣିଲ । ସାର—ଶ୍ରେଷ୍ଠ । ( ପୀୟୂଷ ପିଉଳାକୁ ସୁନା ରସାଣ—ଲ ୧୪-୩୫ ) ବା ମରକତ କ ନୀଳମଣିର ଶାଣରେ ରସାଣିଲ-ଉଜ୍ଜ୍ୱଳ କଲ—ପ୍ରେମତରଙ୍ଗିଣୀ ୬-୯୧୦ ଦେଖ ।

୪—ରତି—କନ୍ଦର୍ପର ସ୍ତ୍ରୀ । ଶିବ କନ୍ଦର୍ପକୁ ଭସ୍ମ କରିଅଛନ୍ତି ବୋଲି ତାଙ୍କୁ ପ୍ରଶଂସା କରିବ, କାରଣ ବର୍ତ୍ତମାନ କାମ ନାହିଁ । ସୁତରାଂ କାମର ପରବର୍ତ୍ତୀ ଲୋକେ କାମକୁ କୃଷ୍ଣଙ୍କ ସହିତ ତୁଳନା କରି ତାହାର ନିନ୍ଦା କରି ପାରୁ ନାହାନ୍ତି । କିନ୍ତୁ ସେମାନେ କାମର ନିନ୍ଦା କରିଥିଲେ ପତିବ୍ରତା ରତିର ଚିତ୍ତ କରତ ହୋଇଯାନ୍ତା । କମ୍ୱା—ପରବର୍ତ୍ତୀ ( ସମ୍ପୂର୍ଣ୍ଣ, ଅର୍ଥାତ୍ ଜୀବିତ ) କାମର ନିନ୍ଦା ହେଲେ ମୋ [ ରତିର ] ଚିତ୍ତ କରତ ହୁଅନ୍ତା ।

ଆରତି—ଆର୍ତ୍ତି, ବ୍ୟାକୁଳତା, ସୁରତି—ସମ୍ଭୋଗ ।

୫—କୃଷ୍ଣଙ୍କର ଆନନ [ମୁଖ] ସାକ୍ଷାତ୍ କଳାକମଳ ବା ମର୍କତମଣିର ଆରଶି ଅଟେ । ତାହା ମନ ଆକର୍ଷି [ଟାଣି] ନିଏ । କିନ୍ତୁ ସାହସ କରି ଉପମା ଦେଇ ପାରୁ ନାହିଁ । ସ୍ମିତ—ଈଷଦ୍ଧାସ୍ୟ [ ମନ୍ଦ ମନ୍ଦ ହସ ] ରୂପକ ଅମୃତକୁ । ଘନରସ—ଗାଢ଼ ଶୃଙ୍ଗାରଭାବ ଓ ଜଳ । ମେଘ ବର୍ଷି ପୋଖରୀ ସବୁ ପାଣିରେ ପୂରାଇ ଦିଏ । କୃଷ୍ଣ ମନ୍ଦହାସ୍ୟରୂପକ ଅମୃତ ବର୍ଷି ରସିକାମାନଙ୍କ ହୃଦୟସ୍ୱରୂପ ସରକୁ ଶୃଙ୍ଗାର ରସରେ ଭରି ଉଛୁଳାଇ ଦେଲେ ।

( ଲ: ୨୦ । ୨୦୯ ଦେଖ ) [ ଶ୍ଳେ + ରୂ ]

୬—ସୁଷମାତରଙ୍ଗ—ଶୋଭାଲହରୀ । ନାନାରଙ୍ଗ—ନାନାପ୍ରକାରର ଭଙ୍ଗୀ । ଲକ୍ଷଣ—ଚକ୍ଷୁ । ଚଞ୍ଚଳେ—ଚଞ୍ଚଳତାରେ । କୁରଙ୍ଗ—ମୃଗ । ମଦଦ୍ୱଦୁର୍ତ୍ତି—

ଗଞ୍ଜମତିରୁ ଚଞ୍ଚଳ ଅଧୀରେ । ପଳାଇ ରହିଲେ ନେତ୍ର ବଧିରେ ।
ବ୍ରୀଡ଼ା-ବିବେକରେ ରହିଲେ ବଧିରେ । ସୁରେଶଙ୍କୁ ମନ ଉଙ୍କିଲା ଧୀରେ ଯେ ।
ନୋହେ ରଚନା ବଧିରେ ଯେ ।
ସମସ୍ତ ଭଙ୍ଗିମା ଗୁଣ ସାର୍ଥ ହେଲେ ରହି ଆପଣା ସିଦ୍ଧିରେ ଯେ । ୭ ।

ଯା ଶୋଭା ଭଙ୍ଗିମା ନେତ୍ରପଥରେ । ପଡ଼ିଗଲା ବିଶ୍ୱସୃଜର ଥରେ ।
ଅନଆସୃତରେ ହୃଦସ୍ଥ ଥରେ । ଅବଧି ବଧି ରଚିଲେ ଏଥରେ ଯେ ।
ଦ୍ରବିତ ହେଲେ ପଥରେ ଯେ ।
ଗଉତମ କଲେ ଉତ୍ତମ ଏ ବାଞ୍ଛାଦେଲା ଅମରନାଥରେ ଯେ । ୮ ।

ବାଳକାଳ-ସ୍ୱିତ କ୍ରମେ ହଟିଲା । ବାଳକ ସଙ୍ଗରୁ ମନ ଛୁଟିଲା ।
ସମବୟସ୍କା ସଖୀ ପ୍ରୀତି ଘଟିଲା । ଗୃଢ଼ଗୁଢ଼ କଥାମାନ ପ୍ରକଟିଲା ଯେ ।
କାମଚେଷ୍ଟା ଚହଟିଲା ଯେ ।
ପତିବ୍ରତ-ମତି-ଦୃତି-ସମ୍ପତ୍ତିକି ସମୂଳ କରି ଲୁଟିଲା ଯେ ।୯ ।

---

ଯୌବନର ମଦନରେ ଘୂରୁଅଛି । ଅଲପ ରଙ୍ଗ—ଅଳ୍ପ ଲାଲ । ଭ୍ରୂଲତାରୂପକ କାମଧାରଙ୍ଗ ( କନ୍ଦର୍ପର ଧନୁ ) ଇଙ୍ଗିତ ଭଙ୍ଗିମା ପ୍ରସଙ୍ଗେ ଠାଣିବା ଠାଣିଦ୍ୱାରା ସାରଙ୍ଗ ( ମୃଗକୁ ) ଗଞ୍ଜିବା ପାଇଁ ନାଚୁଅଛି କି ? [ ଉତ୍ପ୍ରେକ୍ଷା ] ଧନଦ୍ୱାରା ମୃଗକୁ ମଧ ଶାସ୍ତି ଦିଆଯାଏ । ( ବୈ. ବି. ୪୮-୬୮ ) ।

୭—ଚଞ୍ଚଳ—ଶୃଙ୍ଖଳ, ଚଞ୍ଚଳଭାବ [ ପିଲାଦିନେ ମନ ଓ ଗମନ ଚଞ୍ଚଳ ଥାଏ ] ମନ ଓ ଗତିରୁ ଅଧୀରଭାବରେ ପଳାଇ ଯାଇଁ ନେତ୍ରବଧିରେ [ ଚକ୍ଷୁ ବ୍ୟାପାରରେ, କଟାକ୍ଷପାତରେ ] ରହିଲେ । ବ୍ରୀଡ଼ା-ବିବେକରେ······ବଧିରେ—ଲଜ୍ଜା ଓ ବିବେକ ଦୁହେଁ ପିଲାଦିନେ ନ ଥିଲେ; ବର୍ତ୍ତମାନ ଆସି ବଧିରେ ( କାର୍ଯ୍ୟ ମାତ୍ରରେ, ସହଜରେ ) ରହିଲେ । ଏ ସବୁ ବିଧିର ରଚନା ନୁହେଁ, କିମ୍ବା ବିଧାତା ମଧ ବର୍ଣ୍ଣନା କରି ପାରିବେ ନାହିଁ ।

ଭଙ୍ଗିମାଗୁଣ—ଭଙ୍ଗୀ ସବୁ ଆପଣା ସିଦ୍ଧିରେ ( ନିଜ ନିଜ କାର୍ଯ୍ୟସାଧନରେ ) ରହି ଚରିତାର୍ଥ ହେଲେ ।

୮—ବିଶ୍ୱସୃଜର—ବ୍ରହ୍ମାଙ୍କର ଆଖି ଆଗରେ ଥରେ ପଡ଼ିଗଲା । ସେହି ଦିନୁ ବ୍ରହ୍ମାଙ୍କର ହୃଦସ୍ଥ ଅଣାସ୍ୱସ୍ତି ହୋଇ ଥରୁଅଛି । ଏଥରେ—( ଏଣୁକରି ବା ଏହାଦ୍ୱାରା ) ବିଧି [ ବ୍ରହ୍ମା ] ଅବଧି ରଚିଲେ [ ଅଘଟଣ ଘଟାଇଲେ ] । ପଥରେ—ପଥର ସବୁ ତରଳି ଗଲା । ଗୌତମ ଋଷି ଉତ୍ତମ କରିଅଛନ୍ତି—ଏ ବାଞ୍ଛା [ ଶିବ ] ଅମରନାଥରେ [ ଇନ୍ଦ୍ରଙ୍କଠାରେ ] ଦେଲା । ଗୌତମଙ୍କ ଶାପରେ ଇନ୍ଦ୍ରଙ୍କର ସହସ୍ର ଚକ୍ଷୁ ହୋଇଅଛି । ଇନ୍ଦ୍ର ବର୍ତ୍ତମାନ ସହସ୍ର ଚକ୍ଷୁରେ କୃଷ୍ଣଙ୍କର ଶୋଭା ଦେଖିବାକୁ ପାଇ ଆନନ୍ଦିତ ହୋଇ ଗୌତମଙ୍କୁ ପ୍ରଶଂସା କଲେ । (ଲ: ୧୧-୧୭ ଦେଖ)

୯—ସମବୟସ୍କା ସଖୀ—ଏକବୟସିଆ ମିତ୍ର । ଗୃଢ଼ଗୁଢ଼ କଥାମାନ—ରଙ୍ଗ ଢଙ୍ଗିଆ କଥା । କାମଚେଷ୍ଟା—କନ୍ଦର୍ପବିକାର । ଚହଟିଲା—ପ୍ରକାଶିତ ହୋଇ ପ୍ରଭାବ ବିସ୍ତାର କଲା ।

କୈଶୋର ଗୁରୁ ଯେ ଭଙ୍ଗିମାବାର । ନବ ନବ କଲା ଶିଖାଇବାର ।
ଇଙ୍ଗିତ ରଙ୍ଗେ ନେତ୍ର ଠାରିବାର । ମନ୍ଦହାସରେ ଭାଷା କହିବାର ସେ ।
ପ୍ରୀତି ଗୀତ ଗାଇବାର ଯେ ।
ମତ୍ତବୃଷଭଗଣ୍ଡ ଗଜଗଣ୍ଡମଣ୍ଡ ହେଲା ସତ ମୋହିବାର ଯେ । ୧୦ ।
ସ୍ନେହ ବଳାଇ ତନୁ ଯତନରେ । ଭୂଷା ମଣ୍ଡନ ହେଲେ ରତନରେ ।
ଚୂଡ଼ା ସଜାଡ଼ା ଦିବ୍ୟସୁମନରେ । ରସିଲେ ରଙ୍ଗ-ପୀତବସନରେ ସେ ।
ମନ ପାନ-ଚନ୍ଦନରେ ଯେ ।
ସଙ୍ଗୀ ସଙ୍ଗରେ ସଙ୍ଗୀତ ପ୍ରସଙ୍ଗରେ ଲୋଭ ଜାତ ସୁମନରେ ଯେ । ୧୧ ।
ନବଯୁବତୀ-ପ୍ରେମଲମ୍ପଟରେ । ଭ୍ରମନ୍ତି ଫୁଲାଇ ଗୁଲନ୍ତି ବାଟରେ ।
କାହା ମନକୁ ହରନ୍ତି ନାଟରେ । କଣ୍ଢେଇ ବୋଲନ୍ତି କାହା ଲାଟରେ ।
ଜଗନ୍ତି ଜଳସାଟରେ ଯେ ।
ସୁନ୍ଦରପୁରନ୍ଦର ହିନ ହରନ୍ତି ଆକଟରୁ କପଟରେ ଯେ । ୧୨ ।
ଭଙ୍ଗୀ—
ଭଙ୍ଗୀ ବନ୍ଧପୁରେ କୃଷ୍ଣ ଗଣ୍ଡିଆ । କାହା କଟିସ୍ପର୍ଶିତ ଦେଖି ମାଟିଆ ।
ବୋଲନ୍ତି ବନ୍ଧୁ ମୁଁ ଛୋଟୋ ବେଟିଆ । ପାଣି ଆଣିବାକୁ ମୋତେ ପଠିଆ
ଶୁଣି ଗୋପୀ ହୋଇ ଠିଆ ଯେ ।
ହସିଲା, ଭସିଲା, ବଢ଼ିଲାକୁ କାହ୍ନ ହେଲୁ ଏତେ ଅପାଠିଆ ରେ । ୧୩ ।

---

ଯତବ୍ରତୀ······ଲୁଟିଲ—ସତୀମାନଙ୍କ ମନର ଧୈର୍ଯ୍ୟରୂପକ ଧନକୁ ସମୂଳରେ ଲୁଟି କରିଦେଲ ଅର୍ଥାତ୍ ସେମାନଙ୍କର ଧୈର୍ଯ୍ୟ ଧ୍ୱଂସ ହେଲ ।

୧୦—କୈଶୋର ଅବସ୍ଥାକୁ ଆଖି ଠାରିବା, ଅଲପ ଅଲପ ହସି କଥା କହିବା, ପ୍ରେମଗୀତ ଗାଇବା ପ୍ରଭୃତି ଭଙ୍ଗୀମାନର [ ଭଙ୍ଗୀସବୁ ] ନବ ନବ ଶିଖାଇବାର [ କୁ ] ଗୁରୁ କଲା । ମତ୍ତ ବୃଷଭ ପରି ଗୁଲିବାଦ୍ୱାରା ଗଜଗମନା ନାରୀମାନଙ୍କୁ ମୋହିବାର ହେଲା [ ଏଗୁଡ଼ିକ ଗୋଟିଏ ଗୋଟିଏ ଭଙ୍ଗୀ; ସେମାନଙ୍କ କୈଶୋର ଅବସ୍ଥା ] ।

୧୧—ତନୁଯତନରେ—ଦେହ ପାଇଁ ଯତ୍ନ କରିବାରେ । ଭୂଷା—ଭୂଷଣ ଓ ମଣ୍ଡନ ହେଲେ । ସୁମନରେ—ଫୁଲରେ । ସୁମନରେ—ସରସ ମନରେ ।

୧୨—କଣ୍ଢେଇ—ବାଇଡଙ୍କ । ଲଟରେ—ନାଟରେ, ବସ୍ତରେ । ସୁନ୍ଦର-ପୁରନ୍ଦର—ସୁନ୍ଦରଶ୍ରେଷ୍ଠ ( ପୁରନ୍ଦର—ଇନ୍ଦ୍ର ) । ଆକଟରୁ—ପିତାମାତାଙ୍କ ଶାସନରୁ ।

୧୩—ଗଣ୍ଡିଆ—ନିପୁଣ । ଭଙ୍ଗୀ—ମୃଦୁଭଙ୍ଗୀ କଥା ।

ଜଗି ଦଧି ବିକଯିବା ବାଟକୁ । ଗୋପୀଙ୍କ ମାଗନ୍ତ ଦାଅ ଘାଟକୁ ।
ନେବ ମୁଁ ତନୁ ତନୁପୁରଟକୁ । ଏତେ କହି ପାଇଁ ଧରୁଁ ପଟକୁ ସେ ।
କେ ବୋଲେ ଏତେ ଲଟକୁ ସେ ।
ସଜନ କହ, ଗୋ-ରସ ଦେବା, ବାଟ ଗୁଡ଼ୁ ଏ, ଯିବା ହାଟକୁ ଗୋ ୧୪

ଭଙ୍ଗୀଛଳ—

କେ ତହିଁ ବୋଲେ କର ଆକଟକୁ । ଜାଣି ନାହିଁ କି ଏ କଂସ ରାଟକୁ ।
କେ ବୋଲେ ବୁଝିବା କାଲି ନାଟକୁ । ଝୁଆଇବ ମାତା ହାତେ ଛାଟକୁ ସେ ।
କେ ବୋଲେ ନନ୍ଦଗୃଟକୁ ସେ ।
ମୂର୍ଚ୍ଛିଲେ ଏ ଗୋପେ କେଉଁ ଗୋପୀ ପୁଣି ରଖି ପାରିବ ଘଟକୁ ସେ । ୧୫ ।

ଔଦାର୍ଯ୍ୟ ଭଙ୍ଗୀ—

କେ ବୋଲେ କି କହୁଚ ଏ ବଟକୁ । ମୁହଁ ନ ଲଗାଅ କେହି ଧିଟକୁ ।
ଭଲ ବୁଝିଛ କି ଏହି ଝଣ୍ଟକୁ । ଜାଣି ନାହଁ ତ ତାହା କପଟକୁ ସେ ।
ନେଲା ପଚନା ଘଟକୁ ସେ ।
ନାଗ ନାଶିବାକୁ ଆସିଛି ମଣ୍ଡିକି ବାନ୍ଧି ସେହ୍ନା ମୁକୁଟକୁ ସେ । ୧୬ ।
କରରେ ଦେଇ କରପଇଠିକ । କହୁଛନ୍ତି କାହ୍ନୁ କେଉଁ ପେଣ୍ଠୀକ ।
ତୁ ମୋର ସମାନ ହୃଦକଣ୍ଠିକ । ମନେ ନ ରଖିବୁ କଥା ଗଣ୍ଠିକ ସେ ।
ମୋର ଜାନୁବଇଠିକି ସେ ।
ଦେଲ, ବଜେ କର, ମହାଦେବ, ମୋର ନ ଦଅ ଲାଜେ ପିଠିକ ସେ ॥

ସ୍ନେହଭଙ୍ଗୀ—

କେଉଁ ଗୋପୀ କହେ ମୁଖ ହଲାଇ । କି କହୁଛୁ କାହ୍ନୁ ଭ୍ରାନ୍ତ ଫୁଲାଇ ।
ବଡ଼ପଣ ଦେବୁଁ ସିନା ଭୁଲାଇ । ତନୁଦାନ ମାଗୁ ନେଣ ବୁଲାଇ ସେ ।
ମଲେ ତ ଅମ୍ଭେ ମଲାଇଁ ହେ ।
ଜୀବ ଥିଲେ ଦେଖାଯିବ ଗେ ତା ପାଦମୁଦରେ ନେବେ ମୂଲାଇ ସେ । ୧୮ ।

---

୧୪—ତନୁ—ଶରୀର । ତନୁ ପୁରଟକୁ—ଅଳଧ ସୁନାକୁ, ଶରୀରରୂପକ ସୁନାକୁ । ପଟକୁ—ବସ୍ତ୍ରକୁ । ଲଟ—ନଟ । ଗୋରସ—ଦୁଗ୍ଧ, ସର, ଲହଣୀ ପ୍ରଭୃତି । କହ ଗୋ ରସ—ସମ୍ଭୋଗକୁ । ( ଭଙ୍ଗିଛଳ—ଚାତୁର୍ଯ୍ୟ ଓ ଶଠତା ବା ବ୍ୟଙ୍ଗାର୍ଥଯୁକ୍ତ କଥା ) ।

୧୫—ରାଟକୁ—ରାଜାଙ୍କୁ । ମୂର୍ଚ୍ଛିଲେ—ରଡ଼ିଲେ । ଘଟକୁ—ଦେହକୁ । ( ଔଦାର୍ଯ୍ୟ ଭଙ୍ଗୀ—ଚାତୁରୀ ଉକ୍ତିରେ ହୃଦୟର ଉଦାର ଭାବ ପ୍ରକାଶ )

୧୬—ବଟ—ଜାରପୁରୁଷ । ଧିଟ—ଢିଟ, ଧୂର୍ତ୍ତ । ସେନ୍ହା—କବଚ ।

୧୭—ପେଣ୍ଠୀ—ମୋଟି ଓ ବାଙ୍ଗରା । (ସ୍ନେହଭଙ୍ଗୀ—ଚାତୁରୀ କଥାରେ ଗୋପୀଙ୍କ ସ୍ନେହ ପ୍ରକାଶ ) ।

୧୮—ତନୁଦାନ—ଅଳଧଦାନ ଓ ଶରୀରଦାନ । ପାଦମୁଦରେ—ଗୋଡ଼ ମୁଦରେ ।

ଗର୍ବଭଙ୍ଗୀ—

କେ କହଇ ହର ଚୋର ବଡ଼ାଇ । ରଜା ଆଗେ କହି ଦେବୁଁ ଛଡ଼ାଇ ।
ନନ୍ଦର ସମ୍ପତ୍ତି ଦେବୁଁ ଉଡ଼ାଇ । ଦେବୁଁ ଗର୍ବେଶ୍ୱରପଣ ବୁଡ଼ାଇ ଯେ ।
ମନ୍ଦର ଦେବୁଁ ଛଡ଼ାଇ ଯେ ।
ଏତେ ଗରବ ଗୋପୀଙ୍କି ଘାଟ ମାଗୁ ନନ୍ଦର ଗୋରୁ ଅଡ଼ାଇ ଯେ । ୧୯ ।

ତର୍ଜନା ଭଙ୍ଗୀ—

ଯେବେ ପରାଣ ଥିବ ଏ ପିଣ୍ଡରେ । ଆଉ ଘନେ ନ ଯିବୁଁ ଏ ଦାଣ୍ଡରେ ।
କଅଁ ପ୍ରୟୋଜନ ଏତେ ଦଣ୍ଡରେ । ଗୃଲ ଗୋ ବାହୁଡ଼ି ଯିବା ଗୃଣ୍ଡରେ ଯେ ।
ମାତିଛୁ ଫୁଲକାଣ୍ଡରେ ଗୋ
ଚଣ୍ଡ ହୋଇ ଦେଖ ବଣ୍ଟଣ୍ଡ କହୁଛୁ ମଧୁର ନାହିଁ ତୁଣ୍ଡରେ ଗୋ । ୨୦ ।

ବିରକ୍ତ ଭଙ୍ଗୀ ଉକ୍ତ —

କୃଷ୍ଣ କହନ୍ତ ଯେ କର ତର୍ଜନା । ଏ ରୂପେ କେହି ଯେ ଆଉ ଗର୍ଜନା ।
କୂଟ କପଟ ବଚନ ସର୍ଜନା । ଆପଣା ଇଚ୍ଛାରେ ଦଣ୍ଡ ଅର୍ଜନା ଯେ ।
ମାନ ମହତ ବର୍ଜନା ଗୋ ।
ଅନ୍ୟାୟ କାହାର, ମାର ନୃପବର ଗୃମୂରେ ହଉ ମାର୍ଜନା ଗୋ । ୨୧ ।
ଶୁଣି ଗୋପୀବଂଶ ହେଲେ ହରଷ । ହୃଦରେ ପୂରିଲ ପ୍ରେମ-ସୁରସ ।
ବୋଇଲେ ବନ ଆସିବୁଁ ଗୋ-ରସ । ଦେଖି ଯାଉଥିବୁଁ ମୁଖସାରସ ଯେ ।
ବଢ଼ାଇଲନି ତ ରସ ଯେ ।
ତୁମ୍ଭ ବାଞ୍ଛା ପ୍ରତିବମ୍ବିବାକୁ ଆମ୍ଭ ହୃଦ ହେଲା ଆଦରଶ ଯେ । ୨୧ ।

ଲାଳସା ଭଙ୍ଗୀ ଉକ୍ତ—

କୃଷ୍ଣ ଧଇଲେ ଯେ ଗୋପୀଙ୍କ କର । ବୋଇଲେ ମୁଁ ତୁମ୍ଭ କଣା କଙ୍କର ।
କର-ସାରେଣୀ ପରା ମୋତେ କର । ସମାନ ମୁହିଁ ପଦ-ଯାବକର ଯେ ।

---

୧୯—ଗର୍ବେଶ୍ୱରପଣ—ବଡ଼ ଗର୍ବିତଭାବ । ମନ୍ଦର—ପ୍ରାସାଦ ।

୨୦—ତର୍ଜନାଭଙ୍ଗୀ—ଆକଟ-ଛଳରେ । ଦୃଣ୍ଡରେ—ବେଗରେ । ଫୁଲ କାଣ୍ଡ—କାମଶର । ଚଣ୍ଡ—ଉଦ୍ଧତ ହୋଇ । ବଣ୍ଟଣ୍ଡ—ଅବାଗିଆ କଥା ।

୨୧—ତର୍ଜନା କର—ତାଡ଼ କର । ଗର୍ଜନା—ଗର୍ଜନ କର ନାହିଁ । ବଚନ ସର୍ଜନା—ବଚନ ରୂଚ ନାହିଁ । ବର୍ଜନା—ଗୃଡ଼ ନାହିଁ । ମାର୍ଜନା—କ୍ଷମା । ମାରନୃପବର—କନ୍ଦର୍ପରାଜ ।

୨୨—ଗୋପୀବଂଶ—ଗୋପୀ ସବୁ । ପ୍ରେମସୁରସ—ପ୍ରେମ୍ନ । ମୁଖସାରସ—ମୁଖପଦ୍ମ । ରସ—ପ୍ରେମ୍ନ । ଆଦରଶ— ଦର୍ପଣ । (ବୈ: ବ; ୨୦-୯ ଦେଖ)

ଭୁଜନ୍ତ ବଚନ ଶାକର ଯେ ।
ଏନା ମୋ କାମନା ଆଉ ନାହିଁ ବନ୍ଧୁ ଛୁଇଁଛି କୁଚ-ଶଙ୍କର ଯେ । ୨୩ ।
ଦୈନ୍ୟ ଭଙ୍ଗୀ ଉକ୍ତି—
ପରସ୍ପରେ ଏହିରୂପେ କହିଲେ । ହସି ଗୋପୀ ବଦନେବେ ଗୃହିଁଲେ ।
ଜଗତମୋହନ ମନ ମୋହିଲେ । ଗୋପୀଙ୍କ ହୃଦରେ କୃଷ୍ଣ ରହିଲେ ଯେ ।
ପ୍ରୀତି ଆରମ୍ଭ ପଢ଼ିଲେ ଯେ ।
ଭାବ ସନ୍ଧାନ ବଧାନ ବରଧନ ମାନସେ ଜାଗି ରହିଲେ ଯେ । ୨୪ ।
ଦିନୁ ଦିନୁ ବଢ଼ାଇଲେ ପୀରତି । ହଟ ନାଟ କାହିଁ କେତେ କରନ୍ତି ।
ଯେ ନଗ୍ରରେ ଯେତେ ପତିବରଣୀ । ତାହାଙ୍କର ମନ ହେଲା ଆରତି ଯେ ।
ଧର ନୋହିଲା ଧିରତି ଯେ ।
ଲାଜ ଦୂର କଲେ ରତିପତି ନତି ସ୍ତୁତି ଦେବାରୁ କରତି ଯେ । ୨୫ ।
କେବେ କୃଷ୍ଣ କାହା ପୁରେ ପଶନ୍ତି । କେବେ ଗୋପୀ କଉଁଠାକୁ ଆସନ୍ତି ।
କେ କାହାଠାକୁ ଯେ ଦୂଷ୍ଣ ପେଷନ୍ତି । କେ କାହାର ଗୁଣଗଣ ଘୋଷନ୍ତି ଯେ ।
କେ କଣ୍ଠ ଜଗି ବସନ୍ତି ଯେ ।
ଆସନ୍ତି ରସନ୍ତି ମିଶନ୍ତି ଭାସନ୍ତି ହସନ୍ତି ରସେ ଭାଷନ୍ତି ଯେ । ୨୬ ।
ବ୍ରହ୍ମା ଶିବ ପରିଜନ ଯାହାର । ଯେ କରନ୍ତି ନାନାରଙ୍ଗେ ବିହାର ।
ଯେ ପ୍ରଭୁଙ୍କୁ ମୋର କୋଟି ଜୁହାର । ଧୀରଜନଙ୍କର ହୃଦୟ-ହାର ଯେ ।
ବୋଲେ ସାମନ୍ତସିଂହାର ଯେ ।
· କୃଷ୍ଣଲୀଳା ଗୀତ ଶୁଣିଲେ ମନକୁ ହରିବ ନାହିଁ କାହାର ଯେ । ୨୭ ।

---

(ଲାଳସା—ନିଜର ଅତ୍ୟନ୍ତ ଇଚ୍ଛା)

୨୩—ଶଙ୍କର—ସୁକର । ସାରେଣୀ—କ୍ରୀଡ଼ନକ, ଖେଳିବା ଜନିଷ । ଯାବକର—ଅଳତାର । ଶାକର—କନ୍ଦ । ଭୁଜନ୍ତ କଥା କନ୍ଦ ଛଡ଼ା ଆଉ କିଛି କାମନା ନାହିଁ । କୁଚଶଙ୍କର—ସ୍ତନରୂପକ ଶିବ । ଦୈନ୍ୟ—ନିଜର ଦୀନହୀନ ଭାବ ।

୨୪—ଭାବସନ୍ଧାନ ବଧାନ ବରଧନ—ଭାବର ଉପକ୍ରମ ବା ଆରମ୍ଭ, ସ୍ଥିତି ଓ ବୃଦ୍ଧି ସକଳ ମନରେ ଜାଗରୂକ ହେଲେ ।

୨୫ - ହଟ—ତାମସା । ଧିରତ—ଧୃତ । ରତିପତି—କନ୍ଦର୍ପ ।

୨୬—ପରିଜନ—ସେବକ । ବିହାର—କ୍ରୀଡ଼ା । ଜୁହାର—ପ୍ରଣାମ । ହାର—ମାଳା ।

# ଚତୁର୍ଥ ଛାନ୍ଦ

## ଶ୍ରୀ କିଶୋରୀ ଜୀଉଙ୍କ ଜନ୍ମାଦି ଲକ୍ଷଣ

### ରାଗ—କଲ୍ୟାଣ ଆହାରୀ

**ଧୀ**ରେ ହେନ ରାଧା ଜନ୍ମାଦି ଉଦ୍ଭବ, ତତ୍ତ୍ୱ ସାଧୁଶାସ୍ତ୍ରେ ଖୋଜିବ ।
ବୃଷଭାନୁ ଭାନୁବଂଶୀରାଜ ହେଜ, ଦନୁଜ କଂସରେ ବିଭାବ ।
ଅବନ୍ତୀ, ତେଜି ଗୋକୁଳ ଯାବଟରେ ।
ରହି ନନ୍ଦ ଆସ୍ପଦେ ଗୋକୁଳସମ୍ପଦେ, ବୃତ୍ତି କଳ୍ପିତ ନୂତନରେ ।୧।
ତାଙ୍କ ମହିଷୀ କୀର୍ତ୍ତିଦା ନାମ, ରସି ଶ୍ରୀ ଗୋପେଶ୍ୱରସେବାଫଳେ ।
ଉଦର କ୍ଷୀରସାଗରରୁ ପରମ ମହାଲକ୍ଷ୍ମୀକି ଜାତ କଲେ ।
ଦୁର୍ବାସା, ଜାତକ ବିଧି ସିଦ୍ଧିବନ୍ତ ।
ର ରଶ୍ମି ରସ ଅଗ୍ନିବୀଜ ଅଧିକା ହେନ ରାଧିକା ନା ଦେଲେ ତ ।୨।

---

୧—ଧୀରେ—( ପଣ୍ଡିତମାନେ ), ରାଧାଙ୍କର ଜନ୍ମ ପ୍ରଭୃତି ଉଦ୍ଭବମାନ ଶ୍ରବଣ କର । ଏହାର ତତ୍ତ୍ୱ ସାଧୁଶାସ୍ତ୍ରରେ ( ଉତ୍ତମ ବୈଷ୍ଣବ ଗ୍ରନ୍ଥମାନଙ୍କରେ; ସାମନ୍ତସିଂହାରଙ୍କ ଗୁରୁ ସାଧୁଚରଣ ଦାସଙ୍କ 'ଗୌରଚନ୍ଦ୍ରାମଣି' ଶାସ୍ତ୍ରରେ ) ଖୋଜିବ । ବୃଷଭାନୁ ଭାନୁବଂଶୀରାଜ ( ସୂର୍ଯ୍ୟବଂଶୀୟ ରାଜା ) ବୋଲି ହେଜ । ଦନୁଜ [ରାକ୍ଷସ] କଂସରେ [କଂସ ସହିତ] ବିଭାବ ବିରୁଦ୍ଧ ଭାବ, ବିଗତଭାବ, (ଭୟ) । 'ବୃନ୍ଦାବନବିନୋଦ' ୭ମ ଛାନ୍ଦ ୨ପଦ । ଅବନ୍ତୀ ଛାଡ଼ି ଗୋପପୁରସ୍ଥିତ ଯାବଟ ଗ୍ରାମରେ ନନ୍ଦଙ୍କ ଆସ୍ପଦେ [ସ୍ଥାନରେ, ଗୋଷ୍ଠରେ] ବାସ କରି ଗୋକୁଳ [ଗୋଧନ] ସମ୍ପତ୍ତିଦ୍ୱାରା ନୂତନରେ [ନୂତନଭାବରେ] ବୃତ୍ତି [ଜୀବିକା] କଳ୍ପନା କରିଥିଲେ ।

୨—କୀର୍ତ୍ତିଦା ନାମ୍ନୀ ତାଙ୍କର ମହିଷୀ [ପାଟରାଣୀ] ରସି [ଭକ୍ତି କରି] ଗୋପେଶ୍ୱର ନାମକ ସେଠାକାର ଶିବଙ୍କ ସେବାଫଳରେ ନିଜ ଉଦରରୂପକ କ୍ଷୀରସମୁଦ୍ରରୁ ପରମ ମହାଲକ୍ଷ୍ମୀ ରାଧାଙ୍କୁ ଜାତ କଲେ । 'ଦେବୀ କୃଷ୍ଣମୟୀ ପ୍ରୋକ୍ତା ରାଧିକା ପରଦେବତା ।' ସର୍ବଲକ୍ଷ୍ମୀମୟୀ ସର୍ବକାନ୍ତିଃ ସମ୍ମୋହିନୀ ପରା-ବୃହଦ୍‌ଗୌତମୀୟ ତନ୍ତ୍ର । ଲକ୍ଷ୍ମୀ ରାଧାଙ୍କ ବିଳାସ । ପୂର୍ବେ ସମୁଦ୍ର ମନ୍ଥନ ବେଳେ ସମୁଦ୍ରରୁ ଲକ୍ଷ୍ମୀ ଜାତ ହୋଇଥିଲେ । ବର୍ତ୍ତମାନ ଜାତକବିଧାନରେ ( ଜାତକ କରିବାରେ ) ପ୍ରସିଦ୍ଧ ଦୁର୍ବାସା ମୁନି "ର" ଅର୍ଥାତ୍ ରଶ୍ମି [ତେଜ] ରସ ଓ ଅଗ୍ନିବୀଜ [ପ୍ରଭା] ଅଧିକ ବୋଲି ତାଙ୍କର ନାମ ରାଧିକା ଦେଲେ । ର-ଅଧିକା = ରାଧିକା (ର ଅର୍ଥ ରସ, ରଶ୍ମି ଏବଂ ଅଗ୍ନିବୀଜ) ।

ଶ୍ରୀମତ ଉନ୍ନତ ଜାଣି ପୂର୍ଣ୍ଣମାସୀ ଶ୍ରୀମତୀ ନାମ ପୁଣି ଦେଲେ ।
ବୃନ୍ଦା ବୃନ୍ଦାବନେଶ୍ୱରୀ ସାର୍ଥ କରି ନାମ କଲ୍ପିତ ବିସ୍ତରିଲେ ।
ଜନକ, ରସି ରସବତୀ ବୋଇଲେ ।
ଜନନୀ ବିନୋଦିନୀ ନାମ ବିନୋଦ ଭାବ ଆନନ୍ଦେ ଦତ୍ତ କଲେ । ୩ ।
ନିମିଷ ନେତ୍ର ବିମୁଦ୍ରିତ ହେବାରେ ଜନକ ଜନନୀ ବିରସ ।
ଜାଣି ପୂର୍ଣ୍ଣମାସୀ ଆସି ଯଶୋଦାଙ୍କୁ ଘେନାଇ ହେଲେ ପରବେଶ ।
କୃଷ୍ଣଙ୍କୁ, କାଖରେ ଘେନି ନନ୍ଦରାଣୀ ।
ବିଲୋକନ୍ତେ, ବିଲୋକିଲେ କୃଷ୍ଣମୁଖ ପ୍ରଥମେ ଶୁଭ ସୁଲକ୍ଷଣୀ । ୪ ।
କୃଷ୍ଣ-ସର୍ବେନ୍ଦ୍ରିୟ-ଆହ୍ଲାଦିନୀ ସର୍ବେନ୍ଦ୍ରିୟ-ଆନନ୍ଦବର୍ଦ୍ଧନ ।
କୃଷ୍ଣ-ଅଧରାମୃତ କ୍ଷୀର ପ୍ରଥମେ ଯଶୋଦା କରାଇଲେ ପାନ ।
ଏ କଥା, ସନ୍ଧିନୀକଳାପ-ସମ୍ମତ ।
ଜନକ ଜନନୀ ସେହି ଦିନୁ ଦିନୁ ଦିନୁ ଆନନ୍ଦ କଲେ ମତ । ୫ ।

---

୩ - ଉନ୍ନତ [ବିଶେଷ ଭାବରେ] ଶ୍ରୀମନ୍ତ (ଶ୍ରୀ—ଶୋଭାଯୁକ୍ତ ଥିବାରୁ) ଜାଣି ପୂର୍ଣ୍ଣମାସୀ [ପୌର୍ଣ୍ଣମାସୀ] ପୁଣି ଶ୍ରୀମତୀ ନାମ ଦେଲେ । ବୃନ୍ଦାବନର ଅଧିଷ୍ଠାତ୍ରୀ ଦେବୀ ବୃନ୍ଦା ବୃନ୍ଦାବନେଶ୍ୱରୀ ବୋଲି ସାର୍ଥକ ନାମ ଦେଲେ । ଜନକ [ପିତା] ରସି [ଆନନ୍ଦିତ ହୋଇ] ରସବତୀ ନାମ ଦେଲେ । ଜନନୀ [ମାତା] ବିନୋଦିନୀ କି ଆନନ୍ଦ କରିବା ଭାବ ଦେଖି ଆନନ୍ଦରେ ବିନୋଦିନୀ ନାମ ଦେଲେ ।

୪—ସେ କନ୍ୟାର ଆଖି ଦିନଦିନଯାଏ ମୁଦି ହୋଇ ରହିବାରୁ ବାପ ମା ବିରସ [ଦୁଃଖିତ] ହେବାର ଜାଣି ପୂର୍ଣ୍ଣମାସୀ ଯଶୋଦାଙ୍କୁ ଘେନି ଆସିଲେ । ନନ୍ଦରାଣୀ (ଯଶୋଦା) କୃଷ୍ଣଙ୍କୁ କାଖରେ ଘେନି ପ୍ରବେଶ ହେଲେ । ଶୁଭସୁଲକ୍ଷଣୀ (ମଙ୍ଗଳ ଓ ଉତ୍ତମ ଲକ୍ଷଣଯୁକ୍ତା ରାଧା) ବିଲୋକନ୍ତେ (ଚାହାନ୍ତେ) ପ୍ରଥମରେ କୃଷ୍ଣମୁଖ ଦେଖିଲେ । କୃଷ୍ଣଙ୍କୁ ଦେଖି ରାଧାଙ୍କର ଆଖି ଫିଟିଗଲା [ସାଧୁଚରଣ ଦାସଙ୍କ 'ଗୌରଚନ୍ଦ୍ରାମଣି'—୧ମ ଗ୍ରନ୍ଥ ଦେଖ], ଅଥବା ବିଲୋକନ୍ତେ କୃଷ୍ଣ ରାଧାଙ୍କୁ ଦୃଷ୍ଟି ଦେବାରେ ରାଧା ଶୁଭ (ମଙ୍ଗଳକର) କୃଷ୍ଣମୁଖ ଦେଖିଲେ ।

୫—ଯଶୋଦା ସକଳ ଇନ୍ଦ୍ରିୟର ଆନନ୍ଦବର୍ଦ୍ଧକ ଶ୍ରୀକୃଷ୍ଣଙ୍କର ଅଧରାମୃତ ଯୁକ୍ତ ନିଜ ସ୍ତନକୁ ପ୍ରଥମରେ ସର୍ବେନ୍ଦ୍ରିୟର ଆହ୍ଲାଦ (ଆନନ୍ଦ) କାରିଣୀ ରାଧାଙ୍କୁ ପାନ କରାଇଲେ । ଏ କଥା ସନ୍ଧିନୀକଳାପ-ସମ୍ମତ (ବିଶୁଦ୍ଧସତ୍ତ୍ୱମୟୀ ନାରୀମାନଙ୍କ ମନକୁ ଘେନିଲା) । ସନ୍ଧିନୀ—ବିଶୁଦ୍ଧସତ୍ତ୍ୱଗୁଣଯୁକ୍ତା । କଳାପ—ସମୂହ । ଦିନୁ-ଦିନ—ଦିନକୁ ଦିନ ।

ଭଗବାନ୍ ଶ୍ରୀକୃଷ୍ଣଙ୍କ ତିନି ଶକ୍ତି—ସନ୍ଧିନୀ, ସମ୍ବିତ୍ ଓ ହ୍ଲାଦିନୀ ଗୋପୀମାନଙ୍କ ମଧ୍ୟ ସନ୍ଧିନୀ (ସତ୍ତ୍ୱମୟୀ), ସମ୍ବିତ୍ (ଜ୍ଞାନମୟୀ), ହ୍ଲାଦିନୀ (ପ୍ରେମମୟୀ) ଏହି ତିନି ଭାଗରେ ବିଭକ୍ତ କଲେ ଯେଉଁ ଗୋପୀମାନେ ସତ୍ତ୍ୱଗୁଣମୟୀ, ସେମାନେ ।

ବାଲ୍ୟଶୋଭା-ବର୍ଣ୍ଣନା—

ସୁରଙ୍ଗ ବାଙ୍କିଆରେ ରଙ୍ଗା-ଦୋଳନ ଶୋଭନ ଏସନ ମାନଇ ।
ପହୁଡ଼ି ରମା ଉମା ମୂର୍ତ୍ତିକ ଗୁରୁ-ପ୍ରବାଳ-ପଲଙ୍କେ ଅଛଇ ?
ଲାଳନା, ପାଳନା ଦିନୁ ଦିନୁ ପାଇ ।
କଳାନିଧି-କଳାବୃଦ୍ଧି ବିଧି ରସନିଧି ସୁଷମା ବିରାଜଇ । ୬ ।
ଅଗୁଳ ଅଙ୍ଗୁଳ ଧରି ଗୁଲବାର ବାଡ଼ ଆଉଜା ଶୋଭା ଗୃହିଁ
ରତିପତି ମତି କଲ୍ପିଲା ଜଗତ ଏହା ସାହାରେ ଦେବ ମୋହି ।
ଶଙ୍କର, କଣିମାରେ କେତେ ମାତର ।
ହରମନ ହରିବାକୁ ଏ ଅମୋହ ଅସ୍ତ୍ର ଭିଆଣ କି ଧାତାର ? । ୭ ।
କାଛରେ ଇଚ୍ଛଇ ରୁଚ୍ଛ କ୍ଷଣକରେ କରେ ଧୂଳି ଗାତ୍ର ମଣ୍ଡନ ।
ଗୋରଜ ପତନ କେତକୀ ଯତନ ଶୋଭାକୁ କରଇ ଦଣ୍ଡନ ।
ଶ୍ରୀମୁଖ, ସ୍ୱେଦଜନିତେ କି ସୁନ୍ଦର ।
ମୃଗାଙ୍କ-ଅଙ୍କରୁ ଅମୃତବିନ୍ଦୁ କି ପ୍ରତିରୋମୋଦଗମେ ପ୍ରଚୁର । ୮ ।

---

୬—ସୁରଙ୍ଗ ( ରକ୍ତବର୍ଣ୍ଣ ) ବାଙ୍କିଆରେ ( ଦୋଳାରେ ) ରଙ୍ଗାଦୋଳନ [ଶୋଭନ ରାଧାଙ୍କ ସୁନ୍ଦର ଝୁଲିବା ଶୋଭା] ଏପରି ମାନୁଅଛି ବା ରଙ୍ଗା, (ରକ୍ତିମ ବର୍ଣ୍ଣ, ନାଲିଆ) ରାଧାଙ୍କର ଝୁଲିବା ଶୋଭା ଏପରି ମାନୁଛି ।

ରମା (ଲକ୍ଷ୍ମୀ) ଉମା (ପାର୍ବତୀ) ମୂର୍ତ୍ତି କଣ ପ୍ରବାଳ (ପୋହଳା)-ନିର୍ମିତ ପଲଙ୍କରେ ପହୁଡ଼ି (ଶୋଇ) ଅଛଇ ? (ଉତ୍ପ୍ରେକ୍ଷା) । ଦିନକୁ ଦିନ ଲାଳନା ପାଳନା ପାଇ ରସନିଧି (ରାଧାଙ୍କର) ଶୋଭା କଳାନିଧି-କଳାବୃଦ୍ଧି ବିଧି (ଚନ୍ଦ୍ରଙ୍କ କଳା ବଢ଼ିଲା ପରି) ବିରାଜଇ (ପ୍ରକାଶ ପାଏ) ।

ବିନିନ୍ଦ୍ର କି ହେମଶଯ୍ୟନେ ଦୁର୍ଗା ରୂପ୍ୟପଲଙ୍କେ—ବୈ.ବି. ୩।୨୨

୭—ଅଙ୍ଗୁଳି [ ଆଙ୍ଗୁଠି ] ଧରି ଅଗୁଳ [ ଓସାରିଆ ପାଦ ପକାଇ ଗୁଲିବା], କମ୍ପା ଲୋକର ଆଙ୍ଗୁଠି ଧରି [ ଆଗେଇ ଯିବା ] ଓ ବାଡ଼ [ କାନ୍ଥରେ ] ଆଉଜା ଠିଆ ହେବାର ଶୋଭା ଦେଖି ରତିପତି [ କନ୍ଦର୍ପ ] ମତି କଲ୍ପିଲା [ ମନରେ କଲା ]—ଏହା ସାହାଯ୍ୟରେ ମୁଁ ଜଗତ ମୋହିଦେବି ।

ଶଙ୍କର—ଶିବ । ହର—ବିଷ୍ଣୁ । ଅମୋହ—ଅମୋଘ, ଅବ୍ୟର୍ଥ । ଭିଆଣ ବିଧାନ, ସୃଷ୍ଟି । ଧାତାର – ବିଧାତାର [ଉତ୍ପ୍ରେକ୍ଷା] ।

୮—କାଛରେ [ଗ୍ରେଷ୍ଟିଆ ଲୁଗାକୁ] ଇଚ୍ଛା କରେ, ପୁଣି କ୍ଷଣକରେ ତାକୁ ରୁଚ୍ଛ କରି ଧୂଳିରେ ଦେହକୁ ମଣ୍ଡନ କରେ [ ଧୂଳି ବୋଳି ହୁଏ ] । ରାଧା ଧୂଳି ବୋଳି ହେଲେ ଗୋଧୂଳି ପଡ଼ିଥିବା କେତକୀ ଫୁଲର ସୁନ୍ଦର ଶୋଭାକୁ ଦଣ୍ଡନ [ପରାଜସ୍ତ] କରେ ।

ପଞ୍ଚମବୟସରେ ବିଦ୍ୟା ଆଦ୍ୟାରମ୍ଭ ଦମ୍ଭ କୁମ୍ଭଭଙ୍ଗୀ ଆଚରି
ଅସମା ନବସମାରେ ସମାପତ ସମସ୍ତ କଲା ହେତୁ କରି ।
ବିଦ୍ୟା କି ? ସ୍ୱୟଂସିଦ୍ଧ ମହାବିଦ୍ୟା ସେ ।
ବାଣୀ ଋଣୀ ହୋଇଥିଲେ ପୁଣି ଗୁଣି ହୋଇଲେ ସକଳେ ମାନସେ । ୯ ।

ବୟଃସନ୍ଧି-ବର୍ଣ୍ଣନା—

ରୋହିଣୀ ଗଉରୀ ବୟ ଅତିକମି କନ୍ୟା ସନ୍ଧିକାଳ ହୋଇଲା ।
ବିଶ୍ୱକର୍ମା-ସିଦ୍ଧି ପାଇ ରସନିଧି ମୂର୍ତ୍ତି ମଦନ ସଜାଡ଼ିଲା ।
କୁମାରୀ, ପ୍ରୀତି ସୁକୁମାରୀ ଚେତିଲା ।
ପରିହାସୀ ସମବୟସୀ ରସିବା ଆସି ମାନସରେ ମିଶିଲା । ୧୦ ।

---

ସ୍ୱେଦଜଳକଣେ [ ଝାଳ ଜାତ ହେଲେ ] ଶ୍ରୀମୁଖ କି ସୁନ୍ଦର ଦିଶଇ । ମୃଗାଙ୍କ ଅଙ୍କରୁ ( ଚନ୍ଦ୍ରମଣ୍ଡଳରୁ ) ଅମୃତବିନ୍ଦୁ ପ୍ରତ୍ୟେକ ରୋମମୂଳରେ ପ୍ରସ୍ଥିର ( ପ୍ରକାଶିତ ) ହୋଇଅଛି କି ?

ଯୋଷାମୁଖେ ସ୍ୱେଦବିନ୍ଦୁ ଶ୍ରୀହି ପୁଂସ ଲେଖି,
ଇନ୍ଦୁ ଅମୃତବିନ୍ଦୁ ବିହଳ ପ୍ରାପ୍ତ ଶୋଭି । ଲ, ୩୬।୨୮

୯ – ଅସମା [ ନିରୁପମା ] ରାଧା ପଞ୍ଚମ ବର୍ଷରେ ପ୍ରଥମେ ବିଦ୍ୟା ଆରମ୍ଭ କରି ଦମ୍ଭ କୁମ୍ଭଭଙ୍ଗୀ ଆଚରି [ ଦଢ଼ ମାଟିଆରେ ପାଣି ପୂରି ରହିଲା, ତାଙ୍କଠାରେ ରହିଲା, ତାଙ୍କଠାରେ ସବୁ ପାଠ ଅକ୍ଷୁଣ୍ଣ ଭାବରେ ରହିଲା ] ନବସମା [ ନବମ ବର୍ଷ ବୟସରୁ ] ସମସ୍ତ ବିଦ୍ୟା ହୃଦୟଙ୍ଗମ କରି ଶେଷ କଲେ କି ? ବିଦ୍ୟା କଥା ବା କଣ କହିବା ? ସେ ତ ସ୍ୱୟଂସିଦ୍ଧ ମହାବିଦ୍ୟା ଅଟନ୍ତି । ସକଳେ [ ସମସ୍ତ ଲୋକମାନେ ] ମାନସରେ [ ମନେ ମନେ ] ଗୁଣି ହେଲେ [ ବିଗ୍ଭରିଲେ ] ବାଣୀ [ ସରସ୍ୱତୀ ] ଏହାଙ୍କର ଋଣୀ ହୋଇଥିଲେ । କିମ୍ବା—ସରସ୍ୱତୀ ରାଧାଙ୍କ-ଠାରେ ଋଣୀ ହୋଇଥିଲେ, ପୁଣି ସରସ୍ୱତୀ ତାହାଙ୍କ ମନରେ ସକଳେ ପୂର୍ଣ୍ଣ ଭାବରେ ଗୁଣି ହେଲେ [ ଆବର୍ତ୍ତିତ ହେଲେ ] ।

୧୦—ଗଉରୀ—ଅଷ୍ଟବର୍ଷା । ରୋହିଣୀ—ନବବର୍ଷା । ଅର୍ଥାତ୍ ଅଷ୍ଟମ ଓ ନବମ ବର୍ଷ ଅତିକମ କରି କନ୍ୟା [ ଦଶବର୍ଷାଙ୍କର] ସନ୍ଧି ସମୟ [ ବାଲ୍ୟ ଓ ଯୌବନର ମଧ୍ୟକାଳ ] ହୋଇଲା । ମଦନ ବିଶ୍ୱକର୍ମା-ସିଦ୍ଧି ପାଇ [ ବିଶ୍ୱକର୍ମାଙ୍କ କାରିଗରୀରେ କୃତ ବା କୌଶଳ ଲାଭ କରି ] ରସନିଧି ମୂର୍ତ୍ତି ( ରସମୟୀ ରାଧାଙ୍କର ମୂର୍ତ୍ତି ) ସଜାଡ଼ିଲା । ସୁକୁମାରୀ ରାଧା କୁମାରୀ ( କନ୍ୟାଙ୍କର ) ପ୍ରୀତି ଛାଡ଼ି ଏକା ବୟସର ସଖୀମାନଙ୍କ ସଙ୍ଗରେ ରସିବାକୁ ମନ କଲା ।

ବୟସର ନବରୁ ଦିନକୁ ଦିନ ପ୍ରଭା ବଢ଼ାଇ । ବୈ. ବି. ୩—୩୭

ଅନ୍ତଶସ୍ପୋକ୍ତ—

ସୁମତ-ଗତିରୁ ଅତି ଚଞ୍ଚଳତା ଦୃଗଞ୍ଚଳକୁ ଆଶ୍ରେ କଲା ।
କଟି ଉନ୍ନତ ପ୍ରକଟି ଖୀରୁ ସ୍ବରୁ ଉରୁ ଗୁରୁତା ବଢ଼ାଇଲା ।
ଅତୁଳା; ପିତୁଳା-ଲୀଳା-ସ୍ନେହ ତେଜ ।
ସମ୍ବନ୍ଧ ବନ୍ଧପଟଳରେ ନର୍ବନ୍ଧ ସେ କାନ୍ତେ ଏକାନ୍ତେ ନମଜ୍ଜି । ୧୧ ।
ହରଧର ରଜତର ଦେଖି ମାର ପର ପରଶଂସା ନ ସହ୍ୱା ।
କନକମଞ୍ଜୁଳ ଶଇଳଯୁଗଳ କ ସାର ଉରଦେଶେ ବହ୍ଵା ।
ବଢ଼ାଏ, କ୍ରମେ କ୍ରମେ ତାର ଉନ୍ନତ ।
ମଦନ ମୋହନ ମିଶି ବେନ ଜନ ସଦନ ତହିଁ କଲେ ସତ । ୧୨ ।
କ କାମ ପ୍ରେମହେମଚହଲତାରେ ଶ୍ରୀଫଳଯୁଗ ଫଳାଇଲା ।
ରତପତ ପ୍ରୀତ ଯୋଗସାଧନେ କ ଉଟଜଯୁଗ ସରଜଲା ?

---

୧୧—ସୁମତ (ବୁଦ୍ଧିମତୀ) ରାଧାଙ୍କର ଗତରେ, ଗମନରେ ଯେଉଁ ଚଞ୍ଚଳତା ଥିଲା, ସେ ଚଞ୍ଚଳତା ବର୍ତ୍ତମାନ ତାହାଙ୍କର ଦୃଗଞ୍ଚଳ (ଦୃକ୍+ଅଞ୍ଚଳ= ଚକ୍ଷୁକୋଣକୁ ) ଆଶ୍ରେ କଲା (ଚକ୍ଷୁରେ ରହିଲା) ।

କଟି (ନତମ୍ବଦେଶ) ଉନ୍ନତ (ଉଚ୍ଚ) ପ୍ରକଟି (ଦେଖା ହେବାରୁ) ଖୀରୁ ରାଧାଙ୍କ ସୁନ୍ଦର ଜଙ୍ଘର ଗୁରୁତା ବଢ଼ାଇଲା ।

ଅତୁଳା (ଅନୁପମା) ରାଧା ପିତୁଳାଲୀଳାସ୍ନେହ [କଣ୍ଢେଇ ଖେଳର ଶରଧା] ଛାଡ଼ି କାନ୍ତେ [ପ୍ରିୟଙ୍କଠାରେ] ଏକାନ୍ତ ଭାବରେ ମଜ୍ଜି ବନ୍ଧପଟଳରେ [୬୪ ପ୍ରକାର ରତବନ୍ଧ ସମସ୍ତରେ] ନର୍ବନ୍ଧର [ଆଗ୍ରହ] ସମ୍ବନ୍ଧ କଲା ।

୧୨—ମାର [କନ୍ଦର୍ପ] ହରଧର [ଶିବଙ୍କ ପର୍ବତ କୈଳାସକୁ] ରଜତର [ରୁପାର ତିଆରି, ଧଳା] ଦେଖି ପର [ନଜର ଶତ୍ରୁ ଶିବଙ୍କ] ପ୍ରଶଂସା ସହି ନ ପାରି କନକମଞ୍ଜୁଳ ଶଇଳ ଯୁଗଳ [ସୁନାର ସୁନ୍ଦର ପର୍ବତ ଦୁଇଟି] ସାର ଉରଦେଶେ [ରାଧାଙ୍କ ଉତ୍କୃଷ୍ଟ ଛାତରେ] ବହି [ତିଆରି କରି] କ୍ରମେ କ୍ରମେ ତାର ଉନ୍ନତ [ସେହି ପର୍ବତ ଦୁଇଟିର ଉଚ୍ଚତା] ବଢ଼ାଇଅଛି କ ? [ଉତ୍ପ୍ରେକ୍ଷା]

ମଦନ ଓ ମୋହନ ବେନ ଜଣ [ମାଦକତ୍ୱ ଓ ମୋହନତ୍ୱ ରୂପ ଧାରଣ କରି] ସେଇ ସ୍ତନ-ପର୍ବତରେ ବାସ କଲେ; ଅର୍ଥାତ୍ ତାହା ଦେଖିଲେ ଲୋକ ମୁଗ୍ଧ ଓ ମତ୍ତ ହେବ ।

୧୩—କାମ ପ୍ରେମମୟ ସୁବର୍ଣ୍ଣନର୍ମିତ ବିଚିତ୍ର ଲତାରେ ନାରିକେଳ ଫଳ ଯୋଡ଼ିଏ ଫଳାଇ ଅଛି କ ? ରତପତ [କାମ] ପ୍ରୀତରୂପକ ଯୋଗ [ତପସ୍ୟା] ସାଧନ ପାଇଁ ଉଟଜଯୁଗ [କୁଡ଼ିଆ ଯୋଡ଼ିଏ] ତିଆରି କରିଅଛି କ ? ସୁର-

ସୁରତ—ରଙ୍ଗିଣୀ ରସାଗମନରେ ।
କି ମେରୁ ପର୍ବତ ଗୁରୁ ଐରାବତ ଭେଦନେ ବଢ଼ନ୍ତ ଦ୍ୱନ୍ଦ୍ୱରେ । ୧୩ ।
ସ୍ତନ ଉନ୍ନତ ଚକ୍ରବାଡ଼ସୀମାକୁ ନେତ୍ରକମଳ ନ ବଳିଲା ।
ତରୁଣ ଅରୁଣ-ଚରଣଯୁଗଳ ଆଲୋକର ଯୋଗ ନୋହିଲା ।
ରୋମାଳୀ, କଳକୁଚ କରି ଶିକଳୀ ।
କି କାଳୀ କୁଣ୍ଡଳୀ ନାଭିବନେ ପଶେ ସ୍ତନପେଟିକାରୁ ନିକଳି । ୧୪ ।
ଉପମାମାନେ ଅପମାନେ ପଡ଼ିଲେ ସୁଷମା ସମ ନୋହିବାରେ ।
ରମା ଉମା ରତି ବାଣୀ ଆଣି ଖ୍ୟାତି ହୋଇଲା ନାମ ଆଶ୍ରୟରେ ।
କାନ୍ତିକି, ଅଲକ୍ଷରେ ଛକ୍ତ ଚମ୍ପକ ।
କେତକୀ କଣ୍ଟକୀ ଦୁର୍ଗ ଆଶ୍ରେ କଲା ଅଗ୍ନିରେ ଦାହିଲା କନକ । ୧୫ ।

---

ତରଙ୍ଗିଣୀ [ଗଙ୍ଗା] ରସାଗମନରେ [ପୃଥିବୀକୁ ଆସିଲାବେଳେ] ଐରାବତ ହସ୍ତୀ ଓ ପର୍ବତଶ୍ରେଷ୍ଠ ମେରୁ ବିବାଦୀ ହୋଇ ଗଙ୍ଗାଙ୍କ ଗତି ରୋଧରେ ଚେଷ୍ଟା କରିଥିଲେ । ବର୍ତ୍ତମାନ ସୁରତ-ରଙ୍ଗିଣୀ [ରତି କୁତୂହଳୀ] ରାଧାଙ୍କର ଭୂତଳ ଆଗମନରେ ଐରାବତ [ନାରଙ୍ଗଫଳ] ଦ୍ୱନ୍ଦ୍ୱରେ [ଯୋଡ଼ିକିଆ ହୋଇ ବା ବିବାଦରେ] ମେରୁପର୍ବତକୁ ଗୁରୁତାରେ [ଉଚ୍ଚତାରେ] ଭେଦନ କରିବାକୁ [ବଳିପିବାକୁ] ବଢ଼ୁଅଛି କି ? [ଶ୍ଳେଷ+ଉତ୍ପ୍ରେକ୍ଷା]

ବଳେ ସେ ଐରାବତ ମେରୁପର୍ବତ ଦନ୍ତରେ ପ୍ରହାରି କି ଦନ୍ତ ।
ବୈ, ବି, ୪୭-୧୮

୧୪—ନେତ୍ରକମଳ [ନେତ୍ରରୂପ ପଦ୍ମ] ଉନ୍ନତ ସ୍ତନରୂପକ ଲୋକାଲୋକ ପର୍ବତକୁ ଅତିକ୍ରମ କରି ପାରିଲା ନାହିଁ । ଚକ୍ରବାଡ଼ [ଲୋକାଲୋକ ପର୍ବତ] ନୂତନ ସୂର୍ଯ୍ୟ ପରି ଲାଲ ପାଦ ଦୁଇଟିକୁ ଦେଖି ପାରିଲା ନାହିଁ । ରୋମାଳୀକୁ [ରୋମାବଳୀକୁ] କୁଚରୂପକ ହାତୀର ଶିକଳି ବୋଲି [କଳି] କଳନା କରୁଅଛି । ଅଥବା—ରୋମାବଳୀ [ଲତାରି] କୁଚକଢ଼ି ପରି, ପୁଣି ରୋମାବଳୀ କୁଚ-କରିର ଶିକଳୀ ପରି ହୋଇଅଛି । କାଳୀ କୁଣ୍ଡଳୀ [କଳା ସାପ] ସ୍ତନରୂପକ ପେଡ଼ିରୁ ବାହାରି ନାଭିରୂପକ ଗର୍ତ୍ତରେ ପଶୁଅଛି କି ?

ସେ ସରଣୀ ହେଲା ଚକ୍ରବାଡ଼ ପରି ଚରଣ ଅରୁଣ ଅମ୍ବୁଜେ
ଲଭି ନ ପାରଇ ମନ୍ଥରଗମନା ଗୃହିଁ ଗୃହିଁ ଖୁବ ଲଜେ । ଲ ୨୭-୨୯
ରୋମାବଳୀ ଗୃହିଁ କଲେ ଭ୍ରମ ଉପୁଜଇ ।
ସ୍ତନପେଟୀରୁ କି କାଳବ୍ୟାଳ ବାହାରଇ । ଲ-୧୫-୧୪

୧୫—ରାଧାଙ୍କ ଶୋଭାର ସମାନ ନ ହେବାରୁ ଉପମା ଯାକ [ଚନ୍ଦ୍ର ପ୍ରଭୃତି] ଅପମାନ ପାଇଲେ । ଲକ୍ଷ୍ମୀ, ପାର୍ବତୀ, ରତି ଓ ସରସ୍ୱତୀଙ୍କର ଆଣି [ଟେକ] କେବଳ ନାମମାତ୍ରରେ ରହିଲା । ରାଧାଙ୍କ କାନ୍ତିର ଲକ୍ଷ୍ୟ ନ ହେବାରୁ ଚମ୍ପକ

ନୟନ ଆନନ ହାସ ବାସ ବାହୁ କର ଚରଣ ଉଦରକୁ ।
ଉପମା ଆସେ କବି ଛି ଛି ଭାଷେ ମନ ଖେଦିଲା ବିମନକୁ ।
ପଙ୍କଜ, ତହିଁକୁ ସାଧିଲା ବିଷମେ ।
ଜଳ ପ୍ରବଳରେ ବଳେ ବୁଡ଼ିମଲା ମାନରେ ଧନ୍ୟ କଲେ ହିମେ । ୧୬ ।
ଆଜଯାଏ ଗଜ ମୁଖ ନ ଟେକନ୍ତି ଲାଜମନ୍ଥରେ ଗତି ଗୃହିଁ ।
ମୁଖ-ସାନ୍ଦ୍ରକୁ ପୂର୍ଣ୍ଣଚନ୍ଦ୍ର ନ ଘଟି ଘଟିଲା ଦେହ ଚନ୍ଦ୍ରା ବହି ।
କପାଳ, ତୁଳ ଅଧକରେ ନୋହିଲା ।
ଦଣ୍ଡ ଦେଲା ଗଣ୍ଡ ଖଣ୍ଡ ଦ୍ୱିଭାଗକୁ ଦଳା ଚକ୍ରିକ ଘୃଣିକଳା । ୧୭ ।

---

ଉକ୍ତ [ ପିତା, କଷ୍ଟ ] ହେଲ ଏବଂ କେତକୀ କଣ୍ଟକ ଦୁର୍ଗ [ କଣ୍ଟା ଭିତରର ଗଡ଼କୁ ] ଆଶ୍ରେ କଲା । ପୁନ ମଧ୍ୟ ନିଆଁରେ ପୋଡ଼ି ହେଲା ।

ଝଳ କାନ୍ତିରେ ଲଭିଣ ଖ୍ୟାତିକ, କଲା କଣ୍ଟକଦୁର୍ଗକୁ କେତକୀ । ଲ, ୩—୩

୧୬—ପଙ୍କଜ (ପଦ୍ମ) ଦଳଦ୍ୱାରା ରାଧାଙ୍କ ନେତ୍ରକୁ, ସ୍ୱରୂପରେ ମୁଖକୁ, ଶୁକ୍ଳତାରେ ହାସକୁ, ସୁଗନ୍ଧଦ୍ୱାରା ବାସ [ ଦେହର ବାସନାକୁ ] ମୃଣାଳଦ୍ୱାରା ବାହୁକୁ, ସ୍ୱରୂପରେ କର ଚରଣକୁ ଏବଂ ପତ୍ରଦ୍ୱାରା ଉଦରକୁ ଉପମା ହେବା ଆସନ୍ତେ [ ଦେଖାଯାନ୍ତେ ] କବି ତୁଳନା ନ ହେବାରୁ ଅନାଦରରେ "ଛି ଛି" କହନ୍ତେ [ ପଦ୍ମର ] ମନ ବିମନକୁ ଦୁଃଖକୁ ଖେଦି, ବିଷମରେ [ଅତି କଷ୍ଟରେ] ଜଳରେ ରହି ତପସ୍ୟା କଲା । ପାଣି ବଢ଼ିବାରୁ ବୁଡ଼ିମଲା । ହିମ [ ଶୀତକାଳ ] ଆମ୍ଭଙ୍କୁ ଧନ୍ୟ କଲା । ଶୀତକାଳରେ ପଦ୍ମ ରହେ ନାହିଁ; ସୁତରାଂ ଶୀତକାଳରେ ଅପମାନରୁ ରକ୍ଷା ପାଇଲା । କମ୍ବା—

କବି ନୟନ ପ୍ରଭୃତିର ଉପମା ଦେବାକୁ ଯାଇ କାହୁଁ ତୁଳନା ନ ହେବାରୁ "ଛି ଛି" କହିଲେ ଏବଂ ତାହାର ମନ ଦୁଃଖିତ ହେଲା । ପଦ୍ମ ମଧ୍ୟ କୌଣସି ଅଙ୍ଗର ତୁଲ୍ୟ ନ ହୋଇ ଲଜ୍ଜାରେ ଯାଇଁ ତପସ୍ୟା କଲା ।

ପଦ୍ମ ସଙ୍ଗରେ ତୁଳନା ବିଷୟ —ପଦ୍ମିନୀ ପଦ୍ମବାସୀ ସଖୀ । ପଦ୍ମନୟନୀ ପଦ୍ମ-ମୁଖୀ । ପଦ୍ମ କରପଦ୍ମର ପଦ୍ମପତ୍ର ଉଦର ପଦ୍ମ କୋଷ ଉରଜେ ଯୋଷେ । ଲ ୬୬-୬୬

୧୭—ଗଜ [ ହାତୀ ]ମାନେ ରାଧାଙ୍କ ଗତିକୁ [ ଗମନ ] ଲ, ଗୃହିଁ ଲାଜ ମନରେ ମୁହଁକୁ ତଳକୁ ପୋତିଅଛନ୍ତି—ଆଉ ଟେକୁ ନାହାନ୍ତି ।

ପୂର୍ଣ୍ଣଚନ୍ଦ୍ର ରାଧାଙ୍କ ମୁଖସାନ୍ଦ୍ରକୁ ( ପୂର୍ଣ୍ଣମୁଖକୁ ) ନ ଘଟି [ ଲକ୍ଷ୍ୟ ନ ହୋଇ ] ଚନ୍ଦ୍ରା ବହି ଦେହକୁ କ୍ଷୀଣ କରି ଘଟନା କଲା । ଅଧକରେ [ ଅଧାହେଲେହେଁ ] ଚନ୍ଦ୍ର କପାଳ [ କପାଳର ] ତୁଳ [ ସମାନ ] ହେଲା ନାହିଁ । ରାଧାଙ୍କ ଗଣ୍ଡ ଚନ୍ଦ୍ରର ଖଣ୍ଡ ଦ୍ୱିଭାଗକୁ [ ତିନି ଭାଗରୁ ଭାଗକୁ ମଧ୍ୟ ] ତୁଳନା ନ ହେବାରୁ ଦଣ୍ଡ ହେଲା । ଚନ୍ଦ୍ରଙ୍କର ଘୃଣିକଳା (ଘୃଣିଭାଗରୁ ଭାଗେ ମଧ୍ୟ) (ରାଧାଙ୍କ) ଚକ୍ରିକ ଦ୍ୱାରା ଦଳା ହେଲା । ଚକ୍ରିକ ଚତୁର୍ଥୀ ଭ୍ରମରୀ । ଲ, ୧୦-୧୮

କଳାକରେ ରହି ହାସେ ଲାଜ ବହି ପ୍ରପଦେ ଶରଣ ପଶିଲା ।
ହେବାପାଇଁ ଲକ୍ଷ୍ୟ ବୋଲାଇଲା ନଖ ତେବେହେଁ ତୁଚ୍ଛକାର ପାଇଲା
ସାଗରେ, ନିତ୍ୟ ଦିନ ଝାସ ଦିଅଇ ।
ନୋହିଲା ମରଣ ହୋଇଲା ସ୍ମରଣ ସୁଧାପିଣ୍ଡ ହେଲି କିପାଇଁ । ୧୮ ।
ଉରୁବରତୁଳା ସମେ ନୋହି ତୁଳା କଦଳୀ ଅନ୍ତସାର ଭିନ୍ନ ।
ଜାନୁ ଅନୁମାନୁ ଘେନୁଥାଇ ସମ୍ପୁଟକ ହୃଦୟୁ ହେଲା ଶୂନ୍ୟ ।
ଅରୁଣ, ଅଧର ରଣୀ ହୋଇବାରେ ।
ଦେଖାଇ ଦୀନତା କ୍ଷଣକେ ଆନ ତା ମୂରତିକି କରେ ପ୍ରଖରେ । ୧୯ ।
ବିମ୍ବା ବିରାଗରେ ବଇରାଗୀ ବେଶ ଧଇଲା ଭସ୍ମ ବିଲେପନେ ।
ବନ୍ଧୁକ ମାନକୁ ଦଳାଇ ହୋଇଲା ହିଙ୍ଗୁଳ ବଳିବା ଭାବନେ ।
ଜବା ତ, ଶିବା ସେବାକୁ ମୂଳ କଲା ।
ଆଉ ରଙ୍ଗମାନେ ବିଭଙ୍ଗ ଗୁମାନେ କେ କାହିଁ ପଳାଇ ପଶିଲା । ୨୦ ।

---

୧୮—ଚନ୍ଦ୍ର ଗୋଟିଏ କଳାରେ ଆସି ରହିଲା । ତଥାପି ରାଧାଙ୍କ ହାସ-ଠାରୁ ଲାଜ ପାଇ ପ୍ରପଦେ ( ପାଦ ଅଗରେ ) ଶରଣ ପଶିଲା । ଦେଖ ପଦ୍ମଲୋଚନ-ଶୋଭାକୁ ଯାର ହାର, ଚରଣ ତଳେ ଶରଣ ପଶିଅଛି ଡର । ଲ, ୨–୫୪ [ ଓଡ଼ିଆରେ ଅଧିକାଂଶ ସ୍ଥାନରେ ଲ ଓ ନ ସମାନ ] । ପାଦ ଅଗରେ ଲକ୍ଷ୍ୟ [ ସମାନ ] ହେବାକୁ ନିଜକୁ ନଖବୋଲି କୁହାଇଲା, ତଥାପି ନିକୃଷ୍ଟ ହୋଇ ତୁଚ୍ଛକାର ପାଇଲା, ଅତଏବ ଲାଜରୁ ରକ୍ଷା ପାଇବା ପାଇଁ ନିତ୍ୟ ଅସ୍ତ ହେବା ଛଳରେ ସମୁଦ୍ରରେ ବୁଡ଼ି ମରୁଅଛି । ତଥାପି ମରଣ ହେଲା ନାହିଁ ମନେ କଲା—ମୁଁ କାହିଁକି ସୁଧାପିଣ୍ଡ (ଅମୃତର ଦେହ) ହେଲି ? ସେଥିଯୋଗୁଁ ଏ ଲଜ୍ଜାରେ ମଧ୍ୟ ମରଣ ହେଉ ନାହିଁ ।

୧୯—ରାଧାଙ୍କ ଉରୁର ବର୍ତ୍ତୁଳତା ସହିତ ସମାନ ନ ହୋଇ କଦଳୀବୃକ୍ଷ ଅନ୍ତଃସାରଶୂନ୍ୟ ହୋଇଅଛି । ସମ୍ପୁଟକ [ଫରୁଆ] ଜାନୁ ସହିତ ସମାନ ନ ହୋଇ ହୃଦସ୍ଥ [ଭିତର] ଶୂନ୍ୟ ହୋଇଅଛି—ଏ କଥା ଅନୁମାନ ଘେନୁଥାଇଁ [ଅନୁମାନ କରୁ ] । ଅରୁଣ ରଙ୍ଗରେ ଓଷ୍ଠର ଧାରୁଆ ହୋଇ ନିଜର ଦୀନଭାବ ଦେଖାଇ ଅତି ଶୀଘ୍ର [ପ୍ରଖରେ] ମୂର୍ତ୍ତିକି ଆନତା କରେ [ଅନ୍ୟ ପ୍ରକାର କଲା, ଅର୍ଥାତ୍ ଅରୁଣର ବର୍ଣ୍ଣ ଅଳ୍ପ କ୍ଷଣ ରହେ] ।

୨୦—ବିମ୍ବା [ବିମ୍ବ ଗୋରୁଖିଆ ଫଳ] ଅଧରତୁଲ୍ୟ ନ ହୋଇ ବୈରା-ଗ୍ୟରେ ପାଉଁଶ ବୋଳି ହୋଇ ବୈରାଗିବେଶ ଧଇଲା । (ବିମ୍ବ ହୋଇଲା ଭସ୍ମବିଲେପନ—କୋ. ସୁ ୩—୩୪ ।) ହିଙ୍ଗୁଳ ରଙ୍ଗରେ ବଳିଯିବା ପାଇଁ ଅଭିମାନ ବଳାଇ (ବଢ଼ାଇ) ଦଳାଇ ହେଲା । ଜବା [ ମନ୍ଦାରଫୁଲ ] ସମାନ

ସୁଧା ବସୁଧା-ବିଶୁଦ୍ଧା ହାସ ଦେଖି ବାସ ସ୍ୱର୍ଗେ କଲା ସଦ୍‌ବେ ।
କର୍ପୂର ପୁରସ୍କାର କେତେ ମାତ୍ର ତକ୍ରଗୁଣ ବଢେ ସ୍ୱଭାବେ ।
କୁମୁଦ, ଜଳଦୁର୍ଗ ମଧ୍ୟେ ରହିଲା ।
ତୁଚ୍ଛ ପଉରୁଷ ପିନା କାଶ କୁଶ ଜଳ ମିଳାଇ ଛାଡ଼ିଗଲା । ୨୧ ।

ଲୋଚନ ବିଲୋକନେ ପଶି କାନନେ ଚକିତ ଚଞ୍ଚଳ କୁରଙ୍ଗ ।
ଗଞ୍ଜନ ହୋଇ ଖଞ୍ଜନ ଗୁରୁ କଲା ଲେଖି ହୋଇ ଭଙ୍ଗୀ ପ୍ରସଙ୍ଗ ।
ଗୃହାଣି, ଦେଖି ମାର କଲା ସାୟକ ।
ଗୃତ୍ର ଭ୍ରୂରୁ ଦେଖି ନତ ଆମଞ୍ଚନେ ହେଲା ଗୁଣବନ୍ତ କାର୍ମୁକ । ୨୨ ।

ଦର ଦର ଦରଶନରେ ବଢଇ ସୁକଣ୍ଠୀ ଗ୍ରୀବା ବିଲୋକନେ ।
ଦେବ ସେବା କଲା ସମାନ ନୋହିଲା କରତାଇ ହେଲା ବହନେ ।
ଦନ୍ତକୁ, ଗ୍ଣହିଁ ହୀର ଶାଣେ ବସିଲା ।
ମୋତି ହେଲା ଭେଦ ଦାଡ଼ିମ୍ବ ବିପଦ ବିଶେଷେ ହୃଦ ଫାଟିଗଲା । ୨୩ ।

---

ନ ହୋଇ ଶିବା [ଦୁର୍ଗାଙ୍କ] ସେବାକୁ ମୂଳ କଲା । ଆଉ ରଙ୍ଗମାନେ ଗୃମାନରେ (ଟେକରେ) ବିଭଙ୍ଗ (ହାରଯାଇ) କେ କାହିଁ ପଳାଇ ପଶିଲା ।

୨୧—ସୁଧା [ଅମୃତ] ବସୁଧା-ବିଶୁଦ୍ଧା-ହାସ (ପୃଥିବୀରେ ଶୁଦ୍ଧସ୍ୱଭାବ ଗ୍ରଧାଙ୍କର ହାସ ଦେଖି) ସଦ୍ରବେ (ତରଳ ଯାଇଁ) ସ୍ୱର୍ଗରେ ରହିଲା । କର୍ପୂରର ପୁରସ୍କାର [ଆଗରେ କରିବା, ପ୍ରଶଂସା କରିବା] କେତେ ମାତ୍ର କଥା—ସେ ତ ସ୍ୱଭାବରେ ପିତା । କୁମୁଦ (କଇଁ) ପାଣି ଭିତରେ ଗଡ଼ କରି ଲୁଚି ରହିଲା । କାଶ କୁଶ [ତଣ୍ଡୀ ଓ କୁଶଫୁଲ] ତୁଚ୍ଛ ପୌରୁଷ ପିନା [ସେମାନଙ୍କର ବଡ଼ପଣ ପିନା ତୁଚ୍ଛ] ସେ ସବୁ ଖରାରେ ଜଳ ମିଳାଇ ଛାଡ଼ିଗଲା ।

୨୨—କୁରଙ୍ଗ (ମୃଗ) ଗ୍ରଧାଙ୍କର ଲୋଚନ [ଆଖି] ବିଲୋକନେ [ଦେଖନ୍ତେ] ଚକିତ [ଭୀତ] ହୋଇ କାନନରେ ପଶି ଚଞ୍ଚଳ ହେଉଅଛି । ଖଞ୍ଜନ (ପକ୍ଷୀ) ଗଞ୍ଜନ [ଗଞ୍ଜି ହୋଇ, ହାରଯାଇ] ଭଙ୍ଗୀ ପ୍ରସଙ୍ଗରେ [ଚଞ୍ଚଳତା ବିଷୟରେ] ଲେଖି ହୋଇ [ଚକ୍ଷୁକୁ] ଗୁରୁ [ଶିଖାଇବାପାଇଁ] କଲା । ମାର [କନ୍ଦର୍ପ] ଗୃହାଣୀ ଦେଖି ତାକୁ ସାୟକ [ବାଣ] କଲା । ଗୃରୁ [ସୁନ୍ଦରୀ ଭ୍ରୂଲତା ଦେଖି ଆମଞ୍ଚନେ [ଆକର୍ଷିବା ପାଇଁ] ନତ [ନମ୍ର] ଗୁଣବନ୍ତ – ଗୁଣଯୁକ୍ତ; ଗୁଣ-ଦଉଡ଼ି, କାର୍ମୁକ (ଧନୁ) ହେଲା ।

୨୩—ଦର [ଶଙ୍ଖ] ସୁକଣ୍ଠୀର ଗ୍ରୀବା ଦରଶନରେ (ଦେଖି) ଦର [ଭୟ]-ବଢୁଅଛି । ବିଲୋକନେ (ବିଶେଷ ଦୃଷ୍ଟିରେ, ବିଶେଷ ଭାବରେ) ଦେବ ସେବା କଲା—ତଥାପି ସମାନ ନୋହିଲା । ପୁଣି ଶୀଘ୍ର [ବହିନେ] କରତାଇ ହେଲା । ଭେଦ—ଫୋଡ଼ା । ଦାଡ଼ିମ୍ବର ବିପଦ ହେଲା—ହୃଦ ଫାଟିଗଲା ।

ବୀଣା ପ୍ରବୀଣା ବାଣୀ ଶୁଣି ଲାଜରେ ଖନା ପରପ୍ରେ ସ୍ୱନ କଲା ।
ଲଉଲ୍ୟରେ ଶାରୀ ହାଛ ବନେ ଗଲା, ମଧୁରେ ପିକ ମୂକ ହେଲା ।
ପାଟଳ, ପା ଟଳିଯାଏ ଶ୍ରୁତି ଦେଖି ।
ଚରମ ମନୋରମ ଗୁଣ୍ଡି ଫଳକ କମ୍ପେ ସ୍ୱନରେ କାନ୍ଦେ ଲଖି । ୧୪ ।
ନାକଟେକ ଦେଖି ଛଳ ସୁମନସ ମୋହିତ ମସ୍ତ ଭଜଇ ।
ନୂଣୀ ଗୁଣି ପୁଣି ଅଶରଣ ହୋଇ ବାରଙ୍କୁ ଶରଣ ହୁଅଇ ।
ଏ ବଧ, ଅବଧକ ଗଲେ ଉପମା ।
ପ୍ରେମା-ଧାମା ରମା ବାମା ନାମାଭାସେ ଭାଳିଲେ ହେବ ପର ବାମା । ୧୫ ।
ପେଟି ଘଟିତ କି ନିତମ୍ବବିମ୍ବକୁ, ବନ୍ଧନ ଲୋକରେ ପାଉଛି ।
ମୃଦୁଳାକୁ ତୁଳା ନୋହି କରି ତୁଳା ଦେହକୁ ପିଞ୍ଜାଇ ହେଉଛି ।
ଅଶେଷ, ଶେଷରେ ତ ଶେଷ ନୋହିବ ।
କବି ଭାବି ହେଲେ ଏଥର ଆମ୍ଭର ବଚନ ଅଳଂକୃତ ହେବ । ୧୬ ।

---

୧୪—ବୀଣା—ପ୍ରବୀଣା [ନିପୁଣା] ରାଧାଙ୍କର ବାଣୀ [କଥା] ଶୁଣି ଖନା ପର ସ୍ୱନ [ଶବ୍ଦ] କଲା । ଲୌଲ୍ୟରେ—ଲୋଲତାରେ, ତରଳତାରେ । ମଧୁରେ—ମାଧୁର୍ଯ୍ୟରେ । ପିକ—କୋକିଳ । ମୂକ—ତୂନି । ପାଟଳ (ଫୁଲ) ଶ୍ରୁତି [କର୍ଣ୍ଣ] ଦେଖି ପା ଟଳିଯାଏ (ପା ଟଳି ପଡ଼େ—ଝଡ଼ି ପଡ଼େ । ) ମନୋରମ ଚରମ [ସୁନ୍ଦର ପିଠି] ଦେଖି ଫଳକ [ଢାଲ] । କମ୍ପେ—ଥରି ଥରି । ଲଖି—ତାହାକୁ ଲକ୍ଷକରି ସ୍ୱନରେ [ଧ୍ୱନିରେ] କାନ୍ଦେ । ୧୧-୧୪ ପର୍ଯ୍ୟନ୍ତ ପଦମାନଙ୍କ ତୁଳନାତ୍ମକ ସବୁ ଉପେନ୍ଦ୍ର ଭଞ୍ଜ କାବ୍ୟମାନଙ୍କରେ ଅଛି । ବିଦ୍ୟାପତିରେ ମଧ୍ୟ ଏହିପରି ବର୍ଣ୍ଣନା ଅଛି ।

୧୫—ଛଳ ସୁମନସ (ଫୁଲ) ନାକ-ଟେକ [ନାକର ବଢ଼ ପଣ ଦେଖି] ମୋହିତ ହୋଇ ମସ୍ତକ ଭଜିଲା (ପୃଥିବୀରେ ଝଡ଼ିପଡ଼ିଲା) । ପୁଣି ନୂଣୀ (କାଣ୍ଡମୁଣା) ସେ ଶୋଭାକୁ ଗୁଣି (ଭାବି) ହୋଇ ଅଶରଣ (ଅନାଶ୍ରୟ ହୋଇ) ବାରଙ୍କୁ ଶରଣ ହୁଅଇ । ଏ ବଧ ଉପମାମାନେ ଏ ପ୍ରକାର ଅବଧ (ଅକାର୍ଯ୍ୟ) କଲେ । ପ୍ରେମାଧାମା (ପ୍ରେମାଧାର) ରମା (ମନୋହାରିଣୀ) ରାଧାଙ୍କର ବାମା (ସ୍ତ୍ରୀ) ବୋଲି ନାମ ଥିବାରୁ ସେମାନେ ଭାଳିଲେ ଏ ଆମ୍ଭମାନଙ୍କଠାରେ ବାମା (ପ୍ରତିକୂଳା) ହେବ ପରା ।

୧୬—ପେଟି (ପେଡ଼ି) ନିତମ୍ବବିମ୍ବକୁ ଘଟିତ (ତୁଳନା ହେବ) କି ? ହେବ ନାହିଁ । ସେଥିପାଇଁ ବନ୍ଧା ହେଉଛି । ତୁଳା ତାଙ୍କର ମୃଦୁଳାକୁ (ମୃଦୁତ୍ୱ—କୋମଳତ୍ୱକୁ) ତୁଳା (ତୁଲ୍ୟ) ନ ହୋଇ ଦେହକୁ ପିଞ୍ଜାଇ ପିଟାଇ ହେଉଛି ବା ମୃଦୁଳାକୁ—କୋମଳଶରୀରା ରାଧାଙ୍କୁ । ଅଶେଷ (ଅନେକ) ଶେଷରେ (ନାଗୁଣୀଙ୍କ ଦ୍ୱାରା) ବର୍ଣ୍ଣନା ଶେଷ ନୋହିବ । ଅଳଂକୃତ—ଶୋଭିତ ।

ଅପ୍ରମିତ ମିତ ଦାସୀ ଅଗଣିତ ମଧ୍ୟେ ଅନ୍ତରଙ୍ଗା ପ୍ରଭୃତି
ନକ୍ଷତ୍ରନିଧି ସିଦ୍ଧିନାମା ପ୍ରସିଦ୍ଧି ସଂଖ୍ୟାରେ ଏତକ ଗଣନ୍ତି ।
ତାଙ୍କର, ପାଞ୍ଚ ପ୍ରକାରରେ ବିଭେଦ ।
ଶାସ୍ତ୍ର ଅନୁମାନେ ଜାଣିବେ ସୁଜନେ ଯେ ହେବ ତାପିନୀପ୍ରବାଦ । ୨୭ ।

କୃଷ୍ଣ ଶୋଭା ପ୍ରଭା ଦେଖି ଲୋଭା ହୋଇ ସଭାରେ ରାଜନ ବାର୍ତ୍ତା ।
ସିନ୍ଧୁସମ୍ଭବା-ପରାଭବା-ବିଭାକୁ ବିଭା କରିବା ମୂଳ କର ।
ମହୀଶ, ମହିଷୀ ପୁରତେ କହିଲେ ।
ପୂର୍ବ ସନମତ ଚନ୍ଦ୍ରସେନ ମାତ ଭୁଲେ ଅଛୁ, ରାଣୀ ବୋଇଲେ । ୨୮ ।

ସେ ପଦେ ହାସ୍ୟାସ୍ପଦ ରାଜା କରନ୍ତେ, ଶୁଣି ଦୂର୍ବାସା ପୂର୍ଣ୍ଣମାସୀ ।
ଶାସ୍ତ୍ର ପ୍ରବର୍ତ୍ତାଇ ସେ ସତ୍ୟକୁ ସ୍ଥାପୁ ନିଜ ଶ୍ରେୟ ମନେ ମନାସି ।
ଗୋବିନ୍ଦ, ପ୍ରେମସର୍ଜନ ବିଧି ଯେଣୁ ।
ପରକୀୟ ରସ ଉଲ୍ଲାସ ବିଶେଷ ହେବାର ଭିଆଇଲେ ତେଣୁ । ୨୯ ।

---

୨୭—ମିତ ଅପ୍ରମିତ (ଅସଂଖ୍ୟ) ଦାସୀ ଅଗଣିତ (ଅସଂଖ୍ୟ, ଗଣି ହେବ ନାହିଁ) ମଧ୍ୟରେ ଅନ୍ତରଙ୍ଗା (ଆତ୍ମୀୟସଖୀ ପ୍ରଭୃତି ସଖୀମାନେ) ନକ୍ଷତ୍ର (ବିଶାଖା, ଧନିଷ୍ଠା, ଅନୁରାଧା, ତାରକା ପ୍ରଭୃତି ୧୦ ସଖୀ) ନିଧି (ଆଠ) ସିଦ୍ଧି (ଆଠ ସଖୀ) ନାମା (ନାମରେ) ପ୍ରସିଦ୍ଧି ଲଭିଅଛନ୍ତି । ସଂଖ୍ୟାରେ ମଧ୍ୟ ଏତକ ଗଣନ୍ତି—

ଗୋପାଲୀପାଳିକା ଧନ୍ୟା ବିଶାଖାଧ୍ୟାନନିଷ୍ଠିକା ।
ରାଧାନୁରାଧା ସୋମାଭା ତାରକା ଦଶମୀ ତଥା ॥

କିନ୍ତୁ ସୌଭାଗ୍ୟଯୌବରେଷ୍ୱା ଅଷ୍ଟୌରାଧାଦୟୋମତାଃ ଉ: ନ: ଯଥା— ରାଧା; ଚନ୍ଦ୍ରାବଳୀ, ଲଳିତା, ବିଶାଖା, ପଦ୍ମା, ଶୈବ୍ୟା, ଶ୍ୟାମଳା, ଭଦ୍ରା । ଲ. ମା.— ତାଙ୍କର ଅନ୍ତରଙ୍ଗ (ସଖୀଙ୍କର) ଭେଦ ୫ ପ୍ରକାର (ଯଥା—ସଖୀ, ନିତ୍ୟସଖୀ, ପ୍ରିୟସଖୀ, ପ୍ରାଣସଖୀ ଓ ପରମପ୍ରେଷ୍ଠସଖୀ) । ତାପିନୀ ପ୍ରବାଦ—ଯେ ଉପନିଷଦ ପ୍ରଭୃତି ଶାସ୍ତ୍ର ଜାଣିଥିବ । ଏଠାରେ ଗୋପାଳ ତାପିନୀ, ପୁରୁଷୋତ୍ତମ ତାପିନୀ ପ୍ରଭୃତି ଘେନିବାକୁ ହେବ ।

୨୮—ସିନ୍ଧୁସମ୍ଭବା ପରାଭବା ବିଭା—ଲକ୍ଷ୍ମୀଙ୍କୁ ଜୟ କରିଥିବା ଶୋଭା-ଯୁକ୍ତା ଶ୍ରୀରାଧା । ମହୀଶ—ରାଜା, ବୃଷଭାନୁ । ମହିଷୀ—ପାଟରାଣୀ, କୀର୍ତ୍ତିଦା । ପୁରତେ—ଆଗରେ । ସନମତ—ସମ୍ମତ ।

୨୯—ସେ ପଦେ—ସେ କଥାକୁ । ସ୍ଥାପୁ—ସ୍ଥିର କରିବେ । ପ୍ରେମସର୍ଜକ—ପ୍ରେମ ସୃଜନକାର (ବିଧି) ବିଧାତା । ସେ ଦୁହେଁ କୃଷ୍ଣ ପ୍ରେମଲୀଳା ବିଧାୟକ । ପରକୀୟ ରସଉଲ୍ଲାସ ବିଶେଷ—ପର ସ୍ତ୍ରୀ ପ୍ରୀତିରେ ବେଶୀ ଆନନ୍ଦ ହେବାର କଥା ।

କିଶୋରୀଶ୍ରୀ ରତନ ନୂତନ ଯତନ ସୁଷମା ଯେହ୍ନେ କରି ମନେ ।
ଦୀନ ଅଭିମନ୍ୟୁ ସାମନ୍ତସିଂହାର ଶରଣ ଇଚ୍ଛେ ପ୍ରତିଦିନେ ।
ସାଧବେ, ମାଧବେ ମୋହିି ଯେ ପାଶବ ।
ବିଶ୍ୱବିଭବା ଭବାବ୍ଧିତାରଣ କାରଣ କେଉଁ ଅସମ୍ଭବ । ୩୦ ।

---

## ପଞ୍ଚମ ଛାନ୍ଦ

### ଶ୍ରୀରାଧା ନାମ ଶ୍ରବଣ

ରାଗ—ଚକ୍ରକେଳି

( ବାଚକ ବ୍ୟାବୃତ୍ତି ଲକ୍ଷଣ; ଅ—ପ୍ରବାନୁପ୍ରାସ )

**ଅ**-ପ୍ରବାନୁପ୍ରାସ ଏ ଛାନ୍ଦ ରସ । ଅକୈତବରେ ଯେହ୍ନେ ହେ ବିଦୁଷ । ୧ ।
ଅଜ ଅନଘ ଅନନ୍ତ ଅଚ୍ୟୁତ । ଅନଙ୍ଗରେ ଚିତ୍ତ କରି ଆସକ୍ତ । ୨ ।
ଅବସରେ ବସି ବୃନ୍ଦାବନରେ । ଅଛନ୍ତି ଯେ ଗୃହମିତ୍ର ସଙ୍ଗରେ । ୩ ।
ଅନ୍ୱେଷଣା କରନ୍ତି ମନେ ମନେ । ଅଙ୍ଗନା କେ ଶ୍ରେଷ୍ଠ ଗୋପ ଭୁବନେ ॥
ଅଛି ଜଣେ ଏକା, ମଧୁ କହିଲା । ଅଲପକେ ସୁବଳ ଲଜ କଲା । ୫ ।

---

୩୦—ସୁଷମା—ଶୋଭା । ଯେହ୍ନେ କରି—ଧ୍ୟାୟି । ମାଧବେ—ଶ୍ରୀକୃଷ୍ଣଙ୍କୁ । ବିଶ୍ୱ ବିଭବା—ବିଶ୍ୱ ବିଭବଯୁକ୍ତା, ସର୍ବୈଶ୍ୱର୍ଯ୍ୟମୟୀ ରାଧା । ଭବାବ୍ଧିତାରଣ—ସଂସାର ସାଗରରୁ ପାର କରିବା ।

---

୧—ଅକୈତବରେ—ଅକପଟରେ । ବିଦୁଷ-ପଣ୍ଡିତ ।

୨—ଅଜ—ଜନ୍ମରହିତ । ଅନଘ—ନିଷ୍ପାପ । ଅନନ୍ତ—ଅବିନଶ୍ୱର । ଅଚ୍ୟୁତ—ଶ୍ରୀକୃଷ୍ଣ । ଅନଙ୍ଗ—କାମ ।

୩—ଅବସରେ—ବିଶ୍ରାମ ସମୟରେ କମ୍ବା ଅବଶରେ—ଅବଶ ହୋଇ । ଗୃହମିତ୍ର—ଦାମ, ଶ୍ରୀଦାମ, ସୁବଳ ଓ ମଧୁମଙ୍ଗଳ ।

୪—ଅନ୍ୱେଷଣା କରନ୍ତି—ଖୋଜନ୍ତି । ଅଙ୍ଗନା କେ—କେଉଁ ନାରୀ ।

୫—ଅଲପକେ—ସୁବଳ ଏଠାରେ ରାଧାଙ୍କ ଭାଇବୋଲି ଲଜ କଲା । କିନ୍ତୁ ବିଦଗ୍ଧ ମାଧବରେ ଶ୍ରୀଦାମ ରାଧାଙ୍କ ଭାଇବୋଲି ବର୍ଣ୍ଣିତ ଅଛି । ଶ୍ରୀଦାମା—ସଲଜ୍ଜିତଂ ସ୍ମିତମୁଖମବାଙ୍ମୁଖ । ସୁବଳ—ବୟସ୍ୟ ହସ୍ତପୁଟେଦ୍ଧି ଏତି ଅଂ କଂ ଭଣାଯି ଇମସ୍ୟ ବହିଣୀ କ୍ଷ୍ଣୁଏସା (୧ମ ଅଙ୍କ) "ଶ୍ରୀଦାମ ଲଜ କଲା ।" ୬ ପଦରେ—"ବୋଲେ ସୁଦାମ" କହିଲେ ସୁବଳକୁ ବୁଝିବାକୁ ହେବ ବା କବିଙ୍କ ଉକ୍ତିର ସମର୍ଥନ ନିମିତ୍ତ ଶ୍ରୀଦାମ ପାଖରେ ଏପରି କଥା ଦେଖି ସୁବଳ ଲଜ କଲା; ବେଶି ଲଜ୍ଜାରେ ଓ କ୍ରୋଧରେ ଶ୍ରୀଦାମର "ସେ କି ?" କହିବା ଯୁକ୍ତ ହୋଇଅଛି ।

ଅକ୍ଷ ଠାର ନେଇ କ ? ବୋଲେ ଶ୍ରୀଦାମ । ଅଛୁ ଅଛୁ ଜାଣିଲ ବୋଲେ ଦାମ ॥
ଅମ୍ବୁଜାକ୍ଷ କହନ୍ତି ଆହେ ମିତ । ଅନ୍ତର୍ଗତରେ କପଟ ଅଛୁ ତ । ୭ ।
ଅଛ ଲୁଚାଇ ଏଡ଼େ ଶୁଭ କଥା । ଅବା ଭଣ୍ଡୁଛ କହ ମୋତେ ମିଥ୍ୟା ॥
ଅଶନି ତ ହେଲା ତୁମ୍ଭ ବଚନ । ଅସୁ-ଧର ତ କରିବ ନାଶନ । ୯ ।
ଅଶ୍ରୁତ ସେ, ହସି କହେ ମାଧବ । ଅତି ଭାଗ୍ୟରେ ଅବା ଶୁଣାଯିବ । ୧୦ ।
ଅଥର୍ବାଦ ବେଦରେ ଅଛୁ ଶୁଣି । ଅଗମ୍ୟ ଏ ଭୂମି ତ ଚିନ୍ତାମଣି । ୧୧ ।
ଅବଶ୍ୟ ଏ ତୁମ୍ଭ ଚିନ୍ତା ହୋଇବ । ଅଘଟଣ ଘଟାଏ ତ ଦଇବ । ୧୨ ।
ଅମ୍ବୁଦାଙ୍ଗ କଥା କରୁଁ ଶ୍ରବଣ । ଅନେକ ଦିଶିଲା ଏ ଶୁଭ ଲକ୍ଷଣ । ୧୩ ।
ଅକସ୍ମାତେ ଅବୟବ ଦକ୍ଷିଣ । ଅକ୍ଷ ବାହୁ ଜାନୁ ସ୍ଫୁରେ ତତ୍‌କ୍ଷଣ । ୧୪ ।
ଅନୁକୂଳ ସମୀର ବହେ ଧୀରେ । ଅମରାଳୟେ ଶଙ୍ଖଧ୍ୱନି ସ୍ଫୁରେ । ୧୫ ।
ଅନୁମାନରୁ ଅତନୁମୋହନ । ଅବଳା କେ, ଶୁଣିମା କି ନିଦାନ । ୧୬ ।
ଅକୁଣ୍ଠିତ ଚିତ୍ତରେ ଭକ୍ତ ବସେ । ଅଗ୍ରେ ମିଳିଲେ ପୂର୍ଣ୍ଣମାସୀ ଆସି । ୧୭ ।
ଅବତାର ସେ କୃଷ୍ଣଲୀଳା ହେତେ । ଅବ୍ୟକ୍ତ ସେ ମାୟାଶକ୍ତି ଯୁଗତେ ॥
ଅବନୀରେ ଗୋବିନ୍ଦ ପ୍ରେମବଧି । ଅନୁସନ୍ଧାନକୃତକୁ ସେ ବିଧି । ୧୯ ।
ଅବାରଣ ବ୍ରଜେ ତାଙ୍କ ବଚନ । ଅତତରେ ସବୁରି ମାନ୍ୟଜନ । ୨୦ ।

---

୬—ଅକ୍ଷ—ଆଖି । ୭—ଅମ୍ବୁଜାକ୍ଷ—ପଦ୍ମନୟନ, ଶ୍ରୀକୃଷ୍ଣ । ଅନ୍ତର୍ଗତରେ—ମନରେ । ୯—ଅଶନି—ବଜ୍ର । ଅସୁଧର—ପ୍ରାଣରୂପକ ପର୍ବତ । ୧୦—ଅଶ୍ରୁତ—ନ ଶୁଣିବା କଥା । ମାଧବ—ଏଠାରେ ମଧୁମଙ୍ଗଳ । ୧୧—ଅଥର୍ବାଦ ବେଦରେ—ଅଥର୍ବ ବେଦର ଉପନିଷଦ ଓ ତାପିନୀ ପ୍ରଭୃତିରେ । ୧୩—ଅମ୍ବୁଦାଙ୍ଗ—ମେଘପରି ଶ୍ୟାମଳ ବର୍ଣ୍ଣ ଶ୍ରୀକୃଷ୍ଣ । ୧୪—ଅକ୍ଷ—ଆଖି । ୧୫—ଅମରାଳୟେ—ସ୍ୱର୍ଗରେ । ୧୬—ଅତନୁମୋହନ—ମଦନମୋହନ । ନିଦାନ—ନିଶ୍ଚୟ ।

୧୮—ଅବ୍ୟକ୍ତ ସେ ମାୟାଶକ୍ତି ଯୁଗତେ—ସେ ପୂର୍ଣ୍ଣମାସୀ ଯୁଗତେ [ପ୍ରକୃତଭାବରେ—ଉଚିତରେ] ଅବ୍ୟକ୍ତ—ଅପ୍ରକାଶିତ, ଲୋକଙ୍କ ଅଜଣା ମାୟାଶକ୍ତି ଯୋଗମାୟା ଅଟନ୍ତି ।

୧୯—ଅବନୀରେ (ପୃଥିବୀରେ) ଶ୍ରୀକୃଷ୍ଣଙ୍କର ପ୍ରେମଲୀଳା ଅନୁସନ୍ଧାନ କୃତକୁ ଯୋଗାଇବାକୁ (ବିଧି) ବିଧାତା ଅଟନ୍ତି । ୨୦—ଅତତରେ—ଅତିତରାଂ, ଅତିଶୟ ଭାବରେ । ପୌର୍ଣ୍ଣମାସୀ ଭଗବତୀ ସର୍ବସିଦ୍ଧି ବିଧାୟିନୀ । କାଷାୟବସନା ଗୌରୀ କାଶକେଶୀ ଦରାୟତା । ମାନ୍ୟା ବ୍ରଜେଶ୍ୱରାଦୀନାଂ ସର୍ବେଷାଂ ବ୍ରଜବାସିନାମ୍ । ଦେବର୍ଷେଃପ୍ରିୟଶିଷ୍ୟେୟମୁପଦେଶେନ ତସ୍ୟ ଯା । ସାନ୍ଦୀପନିଂ ସୁତଂ ପ୍ରେଷ୍ଠଂ ହିତ୍ୱାବନ୍ତୀପୁରୀମପି । ସାଭୀଷ୍ଟଦେବତା ପ୍ରେମ୍ଣା ବ୍ୟାକୁଲା, ଗୋକୁଳଂ

ଅନ୍ତିକରେ ତାଙ୍କୁ ଦେଖି ଶ୍ରୀହରି । ଅଭିବନ୍ଦନା କଲେ ଉଠିକରି । ୨୧ ।
ଅତି ହୃଷ୍ଟେ ଦେଖି କଲେ କଲ୍ୟାଣ । ଅଚ୍ଛିଦ୍ରେରେ ବାଞ୍ଛା ହେଉ ପୂରଣ ॥
ଅବନତମୁଖ ହେଲେ ଗୋବିନ୍ଦ । ଅଭୀଷ୍ଟଦା ହସଇ ମନ୍ଦ ମନ୍ଦ । ୨୩ ।
ଅଞ୍ଚଳରୁ ଦିବ୍ୟ ଲଡ଼ୁ କାଢ଼ିଲେ । ଅଞ୍ଜଳିରେ କୃଷ୍ଣଙ୍କୁ ସମର୍ପିଲେ । ୨୪ ।
ଅନୁମୋଦେ ହସିଣ ମନ୍ଦ ମନ୍ଦ । ଅବଲମ୍ବେ ପଚାରିଲେ ଗୋବିନ୍ଦ । ୨୫ ।
ଅଛି କି ସ୍ୱାଦ ଜଣାଯାଇ ନାହିଁ । ଅତି ସୁବାସେ ମନ ନେଲା ମୋହି । ୨୬ ।
ଅପୂର୍ବ ଏ ଲଡ଼ୁକା ଦେଖି ଭଣି । ଅମୃତର ସ୍ୱାଦକୁ ପାରେ ଜିଣି । ୨୭ ।
ଅଛି ଶ୍ରୀରାଧା କରସ୍ପର୍ଶ ବାସ । ଅନୁପମ ନାମ କାମ ଉଲ୍ଲାସ । ୨୮ ।
ଅଳ୍ପ ହସି ହସି କୃଷ୍ଣ ବୋଇଲେ । ଅହୋ ଆଶ୍ଚର୍ଯ୍ୟ କୃପା ଆଜ୍ଞା କଲେ ।୨୯।
ଅଇଲ ଏ ବଣକୁ ଏଣୁ କେଣୁ । ଅନ୍ୟ ଗ୍ରାମକୁ ଯିବାର ନ ଜାଣୁ । ୩୦ ।
ଅକୁଣ୍ଠିତେ କହନ୍ତି ଭଗବତୀ । ଅଦଭୁତ ଉତ୍ସବ କାଲି ରାତି । ୩୧ ।
ଅବନୀଶ ବୃଷଧ୍ୱଜ-ନନ୍ଦନା । ଅମରାଦ୍ଧ-ତ୍ରଇଲୋକ୍ୟ-ବନ୍ଦନା । ୩୨ ।
ଅଶ୍ରୋତବ୍ୟ ଗୁଣ ଶୋଭାସଦନ । ଅପରଳା-ସୂତା ହେଲା ବନ୍ଧନ । ୩୩ ।
ଅକ୍ଷ ସାର୍ଥ ମୁଁ କଲି ଦେଖି ପୁଣି । ଅଇଲି ସେଠାରୁ ଏକ୍ଷଣି । ୩୪ ।

---

ଗତା । ସେ କୃଷ୍ଣଲୀଳାର ସବୁ ସକଳ ବିଷୟରେ ନିର୍ବାହକାରିଣୀ କାରଣ ସେ ଯୋଗମାୟା । ୨୧—ଅନ୍ତିକରେ—ନିକଟରେ । ୨୨—ଅଚ୍ଛିଦ୍ରେରେ—ନିର୍ବିଘ୍ନରେ । ୨୩ । ଅବନତ ମୁଖ—ମୁହଁ ନୁଆଁଇଲେ । ଅଭୀଷ୍ଟଦା—ବାଞ୍ଛାପୂର୍ଣ୍ଣକାରିଣୀ । ୨୪—ଏହା ବିଦଗ୍ଧମାଧବରେ ଅଛି—ଦେଖ । ଚନ୍ଦ୍ରାନନ କୃଷ୍ଣ ଗ୍ରହଣ ରମ ମୋଦକାନ୍ ମୋଦକାନ [୧ମ ଅଙ୍କ] ୨୫—ଅନୁମୋଦେ—ଆନନ୍ଦରେ ଗ୍ରହଣ କରି । ୨୬—ସୁବାସେ—ସୁଗନ୍ଧରେ । କାରଣ ରାଧାଙ୍କ ନାମ "ଗନ୍ଧୋନ୍ମାଦିତ ମାଧବା" ୨୮—କରସ୍ପର୍ଶବାସ—ହାତ ଲଗିଥିବାର ବାସନା । ଅନୁପମ—ଅତୁଳନୀୟ । ଏହାର ନାମ କାମୋଲ୍ଲାସ [ କାମର ଉଦ୍ରେକକାରୀ ] ଅଟେ । ୨୯—ଆଜ୍ଞା—ଆଜ୍ଞ ।

୩୧—ଅକୁଣ୍ଠିତେ—ଅକପଟରେ । ଭଗବତୀ—ପୌର୍ଣ୍ଣମାସୀ ।

୩୨—ଅବନୀଶ—ରାଜା । ବୃଷଧ୍ୱଜନନ୍ଦନା—ବୃଷଭାନୁସୁତା ରାଧା । ଅମରାଦ୍ଧ ତ୍ରଇଲୋକ୍ୟବନ୍ଦନା—ସ୍ୱର୍ଗ ପ୍ରଭୃତି ତିନିଲୋକରେ ପୂଜନୀୟା ।

୩୩—ଅଶ୍ରୋତବ୍ୟଶୋଭା ସଦନ—ଶୁଣା ନ ଯାଇଥିବା [ଅନୁପମ] ସୌନ୍ଦର୍ଯ୍ୟର ସ୍ଥାନ । ଅପରଳା ସୂତା—ବିବାହ ପୂର୍ବରୁ କନ୍ୟାମାନଙ୍କ ହାତରେ ଯେଉଁ ସୂତା ବନ୍ଧା ହୁଏ ।

୩୪—ଅକ୍ଷ—ଆଖି ।

ଅନୁରାଗୀ ଏବ ମୁଖ ଦର୍ଶନେ । ଅନ୍ତଃପୁରେ ଅଇଲଲିଁ ଏ ବଚନେ । ୩୫ ।
ଅଘମର୍ଷଣ ଶୁଣି କୃତକୃତ୍ୟ । ଅବଶ୍ୟରେ ଚଢ଼ାଇଲେ ପ୍ରଣପତ୍ୟ । ୩୬ ।
ଅଦ୍ୟ ଶ୍ରୀରାଧା ନାମକୁ ଶୁଣାଇ । ଅଗାରକୁ ଚଳଲେ ମହାମାୟୀ । ୩୭ ।
ଅବଚ୍ଛିନ୍ନାନନ୍ଦମୟୀ କଶୋରୀ । ଅଜ ନର୍ଗୁଣ ପ୍ରେମ-ପୂର୍ଣ୍ଣକରୀ । ୩୮ ।
ଅନୁଭୂତ ସାନୁଭୂତ ଉଲ୍ଲାସ । ଅତ ଅଗମ୍ୟ ନଗୂଢ଼ ବଶେଷ । ୩୯ ।
ଅତଦ୍‌ବ୍ୟାବୃତ୍ତ ଶେଷ ହୁଅନ୍ତ । ଅମୁଦ୍ରିତ ଭଣ୍ଡାର ଯେ କହନ୍ତ । ୪୦ ।
ଅନୁରାଗ ନୂତନ ସରଜନା । ଅଭିମନ୍ୟୁ କବ କରେ କଳ୍ପନା । ୪୧ ।
ଅଧ ଊର୍ଦ୍ଧ୍ୱ ବ୍ୟାପିତ ସେହୁ ଲୀଳା । ଅର୍କ ଘଟସ୍ଥ ପରି କାମକଳା । ୪୨ ।

---

୩୬—ଅଘମର୍ଷଣ—ପାପନାଶକାରୀ ଶ୍ରୀକୃଷ୍ଣ । କୃତକୃତ୍ୟ—କୃତାର୍ଥ । ଅବଶରେ—ଅଶକ୍ତ ଭାବରେ ।

୩୭—ଅଗାରକୁ—ଘରକୁ ।

୩୮—ଅବଚ୍ଛିନାନନ୍ଦମୟୀ—ପୂର୍ଣ୍ଣ-ଆନନ୍ଦରୂପିଣୀ । କଶୋରୀ—ଶ୍ରୀରାଧା । ଅଜନର୍ଗୁଣ......ଜନ୍ମରହିତ ଗୁଣାତୀତ ଶ୍ରୀକୃଷ୍ଣଙ୍କର ପ୍ରେମପୂର୍ଣ୍ଣ କରୁଥିବା ବା ସନାତନ, ଅପ୍ରୟୋଜନ ପ୍ରୀତି ପୂର୍ଣ୍ଣକାରିଣୀ ।

୩୯—ଅନୁଭୂତ—ସାଧାରଣ ଅନୁଭବ ବା ମୂଳବିଭୂତି । ସାନୁଭୂତ—ସ୍ୱାନୁଭୂତ—ସୁଜ୍ଞାନ ; ଉଲ୍ଲାସ—ପରମାନନ୍ଦ ବା ମହାବିଭୂତି । ଏହା ଅତି ଅଗମ୍ୟ [ ପାଇ ହୁଏ ନାହିଁ ] ଏବଂ ବିଶେଷ ନଗୂଢ଼ (ବେଶୀ ଗୁପ୍ତଭାବରେ ଥାଏ) ରହସ୍ୟମଞ୍ଜରୀ ୬ଷ୍ଠ ଗ୍ରନ୍ଥର ୩୨-୩୪ ପଦ ଦେଖ ।

୪୦—ବେଦମାନେ ଅତଦ୍‌ବ୍ୟାବୃତ୍ତ [ତାହା ନ ଜାଣି ପାରି ] ଶେଷ ହେଉଅଛନ୍ତି । ବେଦମାନେ ତାହାଙ୍କୁ ଅମୁଦ୍ରିତ [ଖୋଲା, ଉନ୍ମୁକ୍ତ] ପ୍ରେମ-ଭଣ୍ଡାର ବୋଲି କହନ୍ତି ।

୪୧—ତାହାଙ୍କର ନୂତନ ଅନୁରାଗ [ପ୍ରେମର] ସୃଷ୍ଟି କରିବାକୁ ।

୪୨—ସେହି ଶ୍ରୀକୃଷ୍ଣଙ୍କ ଲୀଳା ପାତାଳାଦି ଅଧୋଲୋକରେ—ସ୍ୱର୍ଗ ପ୍ରଭୃତି ଊର୍ଦ୍ଧ୍ୱ ଲୋକରେ ବ୍ୟାପି ରହିଛୁ । ସେହି କାମକଳା (ଲୀଳା) ଅର୍କଘଟସ୍ଥ-ସୂର୍ଯ୍ୟମଣ୍ଡଳସ୍ଥ [କଳା] ଜ୍ୟୋତି ପରି ସର୍ବଦା ସର୍ବତ୍ର ବିରାଜିତ ହେଉଅଛୁ ।

"ଯଥାତ ସୂର୍ଯ୍ୟସ୍ୟ ବର୍ଷଦେଶବିଶେଷବଶାତ୍ ସଦୈବୋଦୟଃ ସଦୈବ ପୂର୍ବାହ୍ଣ ସଦୈବ ମଧ୍ୟାହ୍ନ ଇତ୍ୟାଦି ତଥୈବ କୃଷ୍ଣସ୍ୟାପି ବ୍ରହ୍ମାଣ୍ଡଭେଦବଶାତ୍ ସଦୈବ ଜନ୍ମ ସଦୈବ ବାଲ୍ୟଂ ସଦୈବ କୈଶୋରଂ ସଦୈବ ମଥୁରାପସ୍ଥାନ ମିତ୍ୟେବଂ ସର୍ବା ଏବ ପ୍ରକଟଲୀଳା ନିତ୍ୟା ଏବ ।" ବିଶ୍ୱନାଥ ଚକ୍ରବର୍ତ୍ତୀ କୃତ ଉଜ୍ଜ୍ୱଳ ନୀଳମଣିର ଆନନ୍ଦଚନ୍ଦ୍ରିକା ଟୀକା ଦ୍ରଷ୍ଟବ୍ୟ ।

---

## ଷଷ୍ଠ ଛାନ୍ଦ

## ନାମାସ୍ୱାଦନ

ରାଗ-କଳସା

(ଆ-ପୂର୍ବାନୁପ୍ରାସ)

ଆନନ୍ଦେ କୋବିଦେ ପିଅ ଏ ରସ ଶ୍ରବଣେ
ଆଦିକନ୍ଦ ଶ୍ରୀରାଧିକା ଶ୍ରୀନାମ ଶ୍ରବଣେ । ୧ ।
ଆଜ ଦିନ ଧନ୍ୟ ମୋର, କରନ୍ତୁ ବିଚାର
ଆଜ୍ଞା କୃପା କରି କଲେ ଏ ନାମ ପ୍ରଚାର । ୨ ।
ଆଶ୍ଚର୍ଯ୍ୟ ସେ ରାଧା ବୋଲି ଯହିଁ ବେନି ବର୍ଣ୍ଣ ।
ଆକଳନା କରୁଥାଇଁ କେମନ୍ତ ତା ବର୍ଣ୍ଣ । ୩ ।
ଆତ୍ମଭୂ-ତମାନ୍ଧ ଜନ ନୟନ ବେନିକ ।
ଆନନ୍ଦ-ତଟିନୀ-ତଟ-ଘଟନା ଏ କି କି ? ୪ ।
ଆସୁଛି ମନକୁ ରତି ପ୍ରୀରତି ମୂରତି ।
ଆସିଛି ପବିତ୍ର କରିବାକୁ ଏ ଧରତି । ୫ ।
ଆଦ୍ୟ ବେନିପଦ ଅନୁରାଗ ସାଗର କି ?
ଆନ ତୁଳନା କେ ଦେବ କାହିଁରୁ ତରକି । ୬ ।
ଆଖି ଧନୁଶରେ ବୃଷ୍ଟି କରଇ ଅତନୁ ।
ଆତ୍ମା ଅବଶୁଁ ବିବର୍ଣ୍ଣ ହୋଇଗଲା ତନୁ । ୭ ।

---

୧—କୋବିଦେ—ପଣ୍ଡିତମାନେ । ଶ୍ରବଣେ—କାନରେ । ଆଦିକନ୍ଦ—ମୂଳକାରଣ ଶ୍ରୀକୃଷ୍ଣ ।

୨—ଆଜ୍ଞା—ଆଇ । କୃଷ୍ଣ—କୋଽସ୍ମଂ ନପତ୍ରୀ । ପୌର୍ଣ୍ଣମାସୀ—କାଡଦନନ୍ଦକୌମୁଦୀ; ବି; ମା ।

୩—ବେନି ବର୍ଣ୍ଣ—ଦୁଇ ଅକ୍ଷର "ରାଧା" ଆକଳନା—ଭାବନା ।

୪—ଆତ୍ମଭୂତମାନ୍ଧ—କାମଜନିତ ଅଜ୍ଞାନରେ ଅନ୍ଧ । ଆତ୍ମଭୂ—କାମ ।
ଆନନ୍ଦ······ଆନନ୍ଦରୂପ ନଦୀର ଦୁଇକୂଳର ନିର୍ମାଣ ବା ଯୋଜନା କି ?

୫—ଆସୁଛି ମନକୁ—ମନେକରେ; ରତି ଓ ପ୍ରୀତି ଦୁହିଙ୍କର ମୂର୍ତ୍ତି ଧରିତ୍ରୀ [ପୃଥିବୀ] ପବିତ୍ର କରିବାକୁ ଆସିଛି । ୬—ଆନ—ଅନ୍ୟ । ଅନୁରାଗ—ସ୍ନେହ । ତରକି—ତର୍କଣା କରି, ଚିନ୍ତି । ୭—ଅତନ—କନ୍ଦର୍ପ । ଆଖି—ଓଟାରି । ଆତ୍ମା ଅବଶୁଁ—ଚିତ୍ତ ବିବଶ ହେବାରୁ । ତନୁ—ଦେହ । ବିବର୍ଣ୍ଣ—ମଳିନ ।

ଆରମ୍ଭ ଦମ୍ଭ ଘୁଞ୍ଚିଲା ନ ରହି ହୃଦରେ ।
ଆସକତ ପରି ତନୁ ହେଲା ତନ୍ଦ୍ରା-ଦରେ । ୮ ।
ଆସି କି ଅମୃତ ସର ପଡ଼ିଲା ମୁଖରେ ?
ଆସ୍ୱାଦନ୍ତି ରାଧାନାମ ସେ ବିଧିରେ ଖରେ । ୯ ।
ଆବେଶେ ଲେହନ୍ତି ଓଷ୍ଠ ସେ ନାମ ସ୍ୱାଦରେ
ଆଚ୍ଛନ୍ନ କରନ୍ତି ପୁଣି ଜାଣି ସ୍ନେହାଦରେ । ୧୦ ।
ଆଉଜିଲେ ସଖାଙ୍କ ଉରକୁ ବେଣୁଧର ।
ଆରତ ଶ୍ୱାସେ ବିରଙ୍ଗ ଦିଶିଲା ଅଧର । ୧୧ ।
ଆତଙ୍କ ହୋଇ ସଖାଏ ଛନ୍ନେ ପଚାରନ୍ତି ।
ଆମ୍ଭ ହୃଦ କାହିଁପାଇଁ ଦେଉଛ କରତି । ୧୨ ।
ଆନ କିଛି ବଞ୍ଚାଇ କହନ୍ତେ ରସେଶ୍ୱର ।
ଆଶବଶେ ବିନେ ବାହାରଇ ରାଧାସ୍ୱର । ୧୩ ।
ଆଶୟରୁ ବିଷୟ ଜାଣିଲେ ସଖାବାର ।
ଆପ୍ତଦ ବଚନ ମଧୁ କଲା କହିବାର । ୧୪ ।
ଆର୍ତ୍ତି ଠାରି ସୁଦାମ ବୋଲେ, କି ହେଉଅଛି ।
ଆନ କେ ବୋଇଲା, ତୁ ନ ଜାଣୁ, ବିଷେ ଅଛି । ୧୫ ।

---

୮—ଆରମ୍ଭ ଦମ୍ଭ—ଉଦ୍‌ଯୋଗ କରିବାର ଝାଣ ବା ଆରମ୍ଭ—ଗର୍ବ; ଦମ୍ଭ—ଝାଣ । ତନ୍ଦ୍ରାଦରେ—ତନ୍ଦ୍ରା ଓ ଭୟରେ । ଆସକତ—ଅଳସୁଆ ବା ପରିଶ୍ରାନ୍ତ । ୯—ଅମୃତସର—ଅମୃତର ସାର ବା ଝର । ସେ ବିଧିରେ—ସେହି ପ୍ରକାର । ଖରେ—ବେଗରେ । ୧୦—ଆବେଶେ—ତନ୍ମୟ ହୋଇ ବା ଅତି ଆଗ୍ରହରେ । ଲେହନ୍ତି—ଚାଟନ୍ତି । ପୁଣି, ଜାଣି ପାରି ସ୍ନେହ ଓ ଆଦରରେ ଓଷ୍ଠକୁ ଆଚ୍ଛନ୍ନ କରନ୍ତି ଘୋଡ଼ାନ୍ତି । ୧୧—ଆରତଶ୍ୱାସେ—ଦୁଃଖ ନିଃଶ୍ୱାସରେ । ବିରଙ୍ଗ—ବିବର୍ଣ୍ଣ । ୧୨—ଆତଙ୍ଗ—ଆତଙ୍କ । ଛନ୍ନେ—ଚକିତସ୍ୱରରେ ।

୧୩—ଆନ—ଅନ୍ୟ । ବଞ୍ଚାଇ—ଭୁଲେଇ, ବାଆ ରେଇ । ରସେଶ୍ୱର—ରସରାଜ, ଶ୍ରୀକୃଷ୍ଣ । ଆଶବଶେ—ମନରେ ଆଶା ଥିବାରୁ । ରାଧାସ୍ୱର-ରାଧା ଶବ୍ଦ । ୧୪—ଆଶୟରୁ—ଅଭିପ୍ରାୟରୁ । ସଖାବାର—ମିତ୍ରସମୂହ । ଆପ୍ତଦ-ବଚନ—ଆଶ୍ୱାସପୂର୍ଣ୍ଣ ବାକ୍ୟ । ମଧୁ—ସେହି ନାମରେ ଜଣେ ସଖା ।

୧୫—ବିଷେ—ବିଷୟ, ଗୋଟିଏ ବିଷୟ । ୧୬—ଆର୍ତ୍ତି—ଦୁଃଖ । ପ୍ରେମବଳ—ସ୍ନେହର ଶକ୍ତି । କବି ସୁବଳଙ୍କୁ ରାଧାଙ୍କ ଭ୍ରାତାରୂପେ ଗ୍ରହଣ କରି ଅଛନ୍ତି । ଅନ୍ୟ କବିଙ୍କର ଚଳିବ ନାହିଁ । ୧୭—ଆଶ୍ୱାସି—ଆଶ୍ୱାସନା କରି ।

ଆନନ ଲୁଆଇଁ ଲଜେ ବସିଲ ସୁବଳ ।
ଆର୍ତ୍ତି କରାଇଲ ମନ କୃଷ୍ଣ ପ୍ରେମବଳ । ୧୬ ।
ଆରଦ୍ରହୃଦୟ ସଖାସମୂହ ହୋଇଲେ ।
ଆଶ୍ୱାସି ଗୋବନ୍ଦ ଗାଢ ପ୍ରବୋଧି ବୋଇଲେ । ୧୭ ।
ଆରଷେ ଶୁଣିନ୍ତୁଁ ଏହୁ ସ୍ଥାନ ଚନ୍ତାମଣି ।
ଆତୁର ହୋଇ କାହିଁକ ହୁଅ ଚନ୍ତାମଣି । ୧୮ ।
ଆଜ ବାଞ୍ଛା ପୂର୍ଣ୍ଣ ହେବ ତୁମ୍ଭର ନକଟେ ।
ଆଦ୍ୟା ସାହା ହୁଅନ୍ତି ଅତ୍ୟନ୍ତ ସଙ୍କଟେ । ୧୯ ।
ଆପାଦ କହନ୍ତ କୃଷ୍ଣ ଧଇର୍ଯ୍ୟ ଦେବାରେ ।
ଆରମ୍ଭିଲୁ ଚେଷ୍ଟା ତୁମ୍ଭ ମନ ଜାଣିବାରେ । ୨୦ ।
ଆତୁର କ ଜଣା ନାହିଁ ? ହସି କହେ ମଧୁ ।
ଆଜନ୍ମୁ ତୋ ସଙ୍ଗ ମୁଁ ଲୁଖିଛୁ ପ୍ରେମମଧୁ । ୨୧ ।
ଆଣି କଣ୍ଠୁର ନ ବୋଳ ଆପଣା ଗାତ୍ରରେ ।
ଆକ୍ଷେପ କର ବାରଲେ ଗୋବନ୍ଦ ନେତ୍ରରେ । ୨୨ ।
ଆରତଭଞ୍ଜନ ଲୀଳା ନ ଯାଉ ମୋ ମନୁ ।
ଆକଲ୍ପନା କରଇ ଯେ କବ ଅଭିମନ୍ୟୁ । ୨୩ ।
ଆପୂର୍ବାନୁପ୍ରାସ ଛନ୍ଦ ପ୍ରାନ୍ତଯମକରେ ।
ଆବେଗ ହୋଇଲ ଏ, ତୋଷିବ ରସିକରେ । ୨୪ ।

---

୧୮—ଆରଷେ—ଋଷିପ୍ରଣୀତ ଶାସ୍ତ୍ରରେ, ତାପିନୀ ପ୍ରଭୃତରେ । ଚନ୍ତାମଣି—ଯେଉଁ ମଣି ସବୁ ବାଞ୍ଛା ପୂର୍ଣ୍ଣ କରେ । ହେ ଶ୍ରୀକୃଷ୍ଣ, ତୁମ୍ଭେ ନଜେ ଚନ୍ତାମଣି ହୋଇ ଆତୁର (ଦୁଃଖିତ) କାହିଁକ ହୁଅ ?

୧୯—ଆଦ୍ୟା—ଆଦ୍ୟାଶକ୍ତି, ଦୁର୍ଗା । ସଙ୍କଟେ—ବପତ୍ତି ପଡ଼ିଲେ ।

୨୦—ଆପାଦ—ଆଶ୍ୱାସନା କର । ତୁମ୍ଭ ମନ ବଢ଼ିବାକୁ ଏପର ଚେଷ୍ଟା କରଥିଲୁ ।

୨୨—କଣ୍ଠୁର—ବାଇଡ଼ଙ୍କ । ଏ କଥାକୁ ଗୋବନ୍ଦ ଆକ୍ଷେପ କର ସୂଚନା ବା ତରସ୍କାର କର ନେତ୍ରରେ (ଆଖିଠାର) ବାରଣ କଲେ ।

୨୩—ଆରତଭଞ୍ଜନ—ଦୁଃଖନାଶନ, ଶ୍ରୀକୃଷ୍ଣ । ଆକଲ୍ପନା—ବର୍ଣ୍ଣନ ।

୨୪—ଆବେଗ—ସମ୍ପୂର୍ଣ୍ଣ ।

# ସପ୍ତମ ଛାନ୍ଦ

## ଶ୍ରୀକୃଷ୍ଣଙ୍କ ନାମ ଶ୍ରବଣ

ରାଗ—କୁମ୍ଭକାମୋଦ

( ଇ-ପୂର୍ବାନୁପ୍ରାସ )

**ଇ**-ପୂର୍ବାନୁପ୍ରାସ ଦୀର୍ଘ ହ୍ରସ୍ୱ ବେନି ନିୟମ ଏ ଛାନ୍ଦ ।
ଇଚ୍ଛା କର ଧୀରେ ପ୍ରସଙ୍ଗ ବଧିରେ ବଢ଼ିବ ଆନନ୍ଦ । ୧ ।
ଇଭଗତି ରାଧାପାଶେ ଦିନେ ପୌର୍ଣ୍ଣମାସୀ ପରବେଶ ।
ଇଚ୍ଛି ରାଧାକୃଷ୍ଣ ନବ ଅନୁରାଗ କରିଣେ ପ୍ରକାଶ । ୨ ।
ଇଜ୍ୟା ମାନ୍ୟ ପାଇ ବସି ହସି ଭଗବତୀ ବାଣୀ ଭଣି ।
ଇତସ୍ତତଃ ମନ କରୁଛୁ କାହିଁକି ସର୍ବସୁଲକ୍ଷଣି । ୩ ।
ଇନ୍ଦ୍ରପଦ ପଦତଳରେ ଯାହାର ତାହାର କି ଚିନ୍ତା ।
ଈନ ପୂଜା କର, ମନୋରଥ ପୂର୍ଣ୍ଣ କର ରସଲତା । ୪ ।
ଇତି ପ୍ରତିଉକ୍ତି ଲଳିତା କହନ୍ତି ଗୁରୁଜନ ଡରେ ।
ଇରାବତୀ ମତି ପ୍ରସନ୍ନ ନ କରେ ରଜନୀ ବାସରେ । ୫ ।
ଇଷ୍ଟ ଅଭୀଷ୍ଟ କରି କେହ୍ୱ ମିତ୍ରକୁ ପୂଜ ଯିବ ଧନୀ ।
ଇତର କଥାକୁ ଏ ଶାଶୂ ନଣନ୍ଦେ ଗଞ୍ଜନ୍ତି କି ଘେନି । ୬ ।

---

୧—ହେ ଧୀରେ (ପଣ୍ଡିତମାନେ), ହ୍ରସ୍ୱ ଓ ଦୀର୍ଘ ବେନି ଇ ବର୍ଣ୍ଣ ପୂର୍ବାନୁପ୍ରାସ ନିୟମ [୧ମରେ ଇ ବର୍ଣ୍ଣ ଅନୁପ୍ରାସଯୁକ୍ତ] ଏ ଛାନ୍ଦ ଶୁଣିବାକୁ ଇଚ୍ଛା କର । ଏ ପ୍ରସଙ୍ଗ ବଧିରେ [ଏ ପ୍ରସଙ୍ଗରେ] ଆନନ୍ଦ ବଢ଼ିବ ।

୨—ଇଭଗତି—ଗଜଗମନା । ଇଚ୍ଛି······ପ୍ରକାଶ—ଶ୍ରୀରାଧା କୃଷ୍ଣଙ୍କର ନୂତନ ଅନୁରାଗ [ପ୍ରେମ] ପ୍ରକାଶ କରିବାକୁ ଇଚ୍ଛା କରି ।

୩—ଇଜ୍ୟା—ପୂଜନୀୟା । ଭଗବତୀ—ପୌର୍ଣ୍ଣମାସୀ ମାନ୍ୟ ପାଇ । ବାଣୀ—ବଚନ । ଇତସ୍ତତଃ—ଏଣେ ତେଣେ ।

୪—ଇନ୍ଦ୍ରପଦ—ଇନ୍ଦ୍ରପଣ । ଈନ—ସୂର୍ଯ୍ୟ ଓ ସ୍ୱାମୀ ଶ୍ରୀକୃଷ୍ଣ । ରସଲତା—ରସମୟୀ ।

୫—ଇତି ପ୍ରତିଉକ୍ତି—ଏହି ପ୍ରତ୍ୟୁତ୍ତର । ଇରାବତୀ—ପଣ୍ଡିତା ରାଧା । ରଜନୀବାସରେ—ଦିନରାତି । ୬—ଧନୀ—ଶ୍ରୀରାଧା । ଇଷ୍ଟ—ପ୍ରିୟ, ପତି ବଶ୍ୟ । ଅଭୀଷ୍ଟ—ବାଞ୍ଛା । କେହ୍ୱ—କପଟ । ମିତ୍ର—ସୂର୍ଯ୍ୟ ଓ ଶ୍ରୀକୃଷ୍ଣ । ଇତର କଥାକୁ—ସାମାନ୍ୟ କଥାକୁ ।

ଇଙ୍ଗିତ ଏତେକ ପାଇ ପୂର୍ଣ୍ଣମାସୀ ଭାଷି ଜଟିଳାଙ୍କୁ ।
ଇଷ୍ଟଶଷ୍ଟ ନଷ୍ଟ ହେବ, ରାଧା ନିତ ପୂଜୁ ମିହିରଙ୍କୁ ।୭।
ଇଶିତ୍ୱ ନିଧି ପରାପତ ହୋଇବ, ଶୁଣି ବୁଢ଼ୀ ତୋଷ ।
ଈଶ୍ୱର, ତବ ବଚନ କେ ଲଙ୍ଘିବ, ପୂଜନ୍ତୁ ଦିନେଶ ।୮।
ଈଷଦ୍ଧାସେ ପୁଣି ରାଧାପାଶେ ମିଳି ଏ କଥା କହିଲେ ।
ଈଶାନ୍ୟେ କାମ୍ୟବନେ ମିତ୍ର ଅଛନ୍ତି ବୋଲି କହିଦେଲେ ।୯।
ଇକ୍ଷିତ କର, ତୋ ପଦ୍ମଜିତ ମୁଖ ଦେଖି ମୁଁ ଯିବଇଁ ।
ଇନ୍ଦୁଲେଖା କହେ, ଏତେ ଉଦବେଗ ଚିତ୍ତ କାହିଁପାଇଁ ।୧୦।
ଈଦୃଶ ଭାଗ୍ୟ କାହିଁ, ଆମ୍ଭେ ତୁମ୍ଭଙ୍କୁ ଦେଖିବୁ ସର୍ବଦା ।
ଈକ୍ଷଣ ସାର୍ଥ ରାଧାର କରି ଯାଉଥିବନ୍ତି କାମଦା ।୧୧।
ଇଦଂ ବାକ୍ୟ ଶୁଣି ଭଗବନ୍ତ ପ୍ରତିଉକ୍ତି କଲେ ଦତ୍ତ ।
ଇନ୍ଦୀବରାକ୍ଷୀ ରାଧା ମୋର କେବଳ ପ୍ରାଣ ପଞ୍ଚଭୂତ ।୧୨।
ଇଦାନୀ ରହି ନ ପାରିବ, ଚଞ୍ଚଳ ଚିତ୍ତ ଅଛି ହୋଇ ।
ଇନ୍ଦୁ କୋଟିଜିତ ଶ୍ରୀମୁଖ କୃଷ୍ଣର ଦେଖିବଇଁ ଯାଇଁ ।୧୩।
ଇକ୍ଷୁରସସାର ନାମକୁ ଶୁଣାଇ ଗଲେ ଭଗବନ୍ତ ।
ଇସି କି ମଧୁର ନାମକୁ ଶୁଣିଲି, ଭାବେ ରସବନ୍ତ ।୧୪।

---

୭—ଇଙ୍ଗିତ- ଅଭିପ୍ରାୟସୂଚକ ବାକ୍ୟ । ଜଟିଳା—ରାଧାଙ୍କ ଶାଶୂ । **ଇଷ୍ଟଶଷ୍ଟ**—ଅଭିଳଷିତ [ବା ପ୍ରିୟ କୃଷ୍ଣ] ପାଇବାରେ ଯେ ଅମଙ୍ଗଳ ବା ବିଘ୍ନ ବା ଇଷ୍ଟ [ସ୍ୱାମୀର] ଅନିଷ୍ଟ [ଅମଙ୍ଗଳ] । ପାଠାନ୍ତରେ— ଇଷ୍ଟ୍ରଶଷ୍ଟ – ସ୍ୱାମୀର **ଅନିଷ୍ଟ** । ଇ—ଗରିଷ୍ଟ = ଗରିଷ୍ଟ କାମ ମିହିରଙ୍କୁ—ସୂର୍ଯ୍ୟଙ୍କୁ । ସୂର୍ଯ୍ୟପୂଜା ବିଷୟ ବିଦଗ୍ଧମାଧବରେ ଅଛି । ୮—ଈଶିତ୍ୱନିଧି—ଐଶ୍ୱର୍ଯ୍ୟ ସମ୍ପତ୍ତି ଓ ଐଶ୍ୱର୍ଯ୍ୟନିଧି ଶ୍ରୀକୃଷ୍ଣ । **୯—ଈଷଦ୍ଧାସେ**—ଅଳ୍ପ ହସି ହସି ।

ଈଶାନ୍ୟେ—ଐଶାନ୍ୟ ଦିଗରେ [ଉତ୍ତର ପୂର୍ବ କୋଣରେ] । ମିତ୍ର—ସୂର୍ଯ୍ୟ ଓ ସଖା ଶ୍ରୀକୃଷ୍ଣ । ୧୦—ଇକ୍ଷିତ କର—ଦେଖ । ପଦ୍ମଜିତ—ପଦ୍ମକୁ ଜୟ କରିଥିବା । ଇନ୍ଦୁରେଖା—ଜଣେ ପରମଶ୍ରେଷ୍ଠ ସଖୀ ।

୧୨—ଇଦଂବାକ୍ୟ—ଏହି କଥା । ଇନ୍ଦୀବରାକ୍ଷୀ—ନୀଳୋତ୍ପଳନୟନା । **ପଞ୍ଚଭୂତ**—ମୋର ଜୀବନର ପ୍ରଧାନ ଅବଲମ୍ବନ ।

୧୩—ଇନ୍ଦୁ କୋଟିଜିତ—କୋଟି କୋଟି ଚନ୍ଦ୍ରଙ୍କୁ ଜୟ କରିଥିବା ।

୧୪—ଇକ୍ଷୁରସସାର - ଆଖୁରସ ପରି ମଧୁର । ଇସି—ବିସ୍ମୟସୂଚକ **ଅବ୍ୟୟ** ।

ଇନ୍ଦ୍ରସ୍ୱେ ମୋହୋର ବାଞ୍ଛା କଲେନ ତ ବଶେଷ ହେବାକୁ ।
ଇନ୍ଦୂର ହେଲା ଭଗବନ୍ତ ଭାରତୀ ଦମ୍ଭବସନକୁ । ୧୫ ।
ଇନ୍ଧନ ପ୍ରତିମା ପରସ୍ୱେ ତନୁକୁ ସ୍ତମ୍ଭ କରାଉଛୁ ।
ଈଶାନପର ଆକର୍ଣ୍ଣାପୂର୍ତ୍ତ କରି ଧନୁକୁ ଆଞ୍ଚୁଛୁ । ୧୬ ।
ଇଷୁ ଯୋଚିଲାନ୍, ମାରିବ ଏ ଥର ସଂଶୟ ତ ନାହିଁ ।
ଇଷିତେ ପତିବ୍ରତାବ୍ରତ ସରିଲା ଧିକ ଧିକ ମୁହିଁ । ୧୭ ।
ଈଶ୍ୱର ଇଚ୍ଛାକୁ ସବୁ ଘଟିପାରେ, କହିବ କାହାକୁ ।
ଇନ ଧରିବା ମନ ଇଚ୍ଛେ, ଆଉ କେ ବାରିବ ଲୋଭକୁ । ୧୮ ।
ଇନ୍ଦିରାଦ ନାରୀଙ୍କି ମୁଁ ନ ଗଣେଁ ପତିବ୍ରତା ଗୁଣେ ।
ଈରଷା ସେମାନେ କରି ଭଆଇଲେ ଏ ନାମ କ ଗୁଣେ । ୧୯ ।
ଇନ୍ଦ୍ର ଗୋପଜିତ ରଙ୍ଗଚରଣୀ ଯେ ଏରୂପେ ସୁମର ।
ଇନ୍ଦ୍ରଜିତସୁତ ଏ ଛାନ୍ଦ ଭଣଇଁ ରାଧା ଧ୍ୟାନ କରି । ୨୦ ।

---

---

୧୫—ମୋର ଇନ୍ଦ୍ରସ୍ୱମାନେ ବଶେଷ [ବେଶି ବା ଅତ୍ୟନ୍ତ] ହେବାକୁ ବାଞ୍ଛା କଲେଣି । ଭଗବନ୍ତଙ୍କ ଭାରତୀ [ବଚନ] ମୋର ଦମ୍ଭରୂପ ବସ୍ତ୍ରକୁ କାଟିବାକୁ ଇନ୍ଦୂର [ମୂଷା] ହେଲା ।

୧୬—ଇନ୍ଧନପ୍ରତିମା—କାଷ୍ଠନିର୍ମିତ ମୂର୍ତ୍ତି ପରି । ତନୁକୁ—ଦେହକୁ । ସ୍ତମ୍ଭ—ନିଶ୍ଚଳ ।

ଈଶାନପର (ଶିବଶତ୍ରୁ କନ୍ଦର୍ପ) ଆକର୍ଣ୍ଣାପୂର୍ତ୍ତ କରି [କାନ ପର୍ଯ୍ୟନ୍ତ ବିସ୍ତାର କରି] ଆଞ୍ଚୁଛୁ—ଟାଣୁଛୁ ।

୧୭—ଇଷୁ—ବାଣ । ଇଷିତେ - ଅଳ୍ପକରେ । ୧୮—ଇନ—ସୂର୍ଯ୍ୟ । ବାରିବ—ବନ୍ଦ କରିବ । ୧୯ – ଇନ୍ଦିରାଦ—ଲକ୍ଷ୍ମୀ ପ୍ରଭୃତି ସ୍ତ୍ରୀମାନଙ୍କୁ ।

ଈରଷା—ଈର୍ଷା—ହିଂସା ବା ଅସହିଷ୍ଣୁତା । କ ଗୁଣେ—କ ପ୍ରୟୋଜନରେ । କପାଇ ବା କେଉଁ ଧର୍ମରେ ।

୨୦—ଇନ୍ଦ୍ରଗୋପଜିତରଙ୍ଗଚରଣୀ—ସାଧବାଣୀ ପୋକଠାରୁ ଅଧିକ ରକ୍ତବର୍ଣ୍ଣ ପାଦ ଯେଉଁ ରାଧାଙ୍କର, ତାହାଙ୍କୁ । ଇନ୍ଦ୍ରଜିତସୁତ—ଇନ୍ଦ୍ରଜିତ ଅଭିମନ୍ୟୁଙ୍କ ପିତାଙ୍କର ନାମ ଥିଲା ।

---

# ଅଷ୍ଟମ ଛାନ୍ଦ

## ଶ୍ରୀରାଧାଙ୍କ ଦଶା ବିଚେଷ୍ଟା

ରାଗ—ବିଭାସ

( ଉ-ପୂର୍ବାନୁପ୍ରାସ )

ଉଷତରେ ଶୁଣ ହେ ସୁଧୀରେ ଧୀରେ ।"ଉ"ପୂର୍ବହିଁ ପ୍ରାନ୍ତଯମକରେ କରେ ।
ଉତ୍ତମା ଯେ କୃଷ୍ଣ ନାମରସେ ରସେ । ଉଠିଯାଇଁ ନ ପାରି ଅବଶେ ବସେ ॥
ଉର୍ଦ୍ଧ୍ୱନିଃଶ୍ୱାସ ଗ୍ଳାନିଭଙ୍ଗ ଘନଘନ । ଉପରକୁ ଗ୍ରୀବ ନୁହାଏ ଛନଛନ । ୩ ।
ଉଣା ସର୍ବ ଅଭିଳାଷ ଦିନୁ ଦିନୁ । ଉପବାସରେ ସୁତନୁ ତନୁ ତନୁ । ୪ ।

---

ଦଶାବିଚେଷ୍ଟା—ବର୍ତ୍ତମାନ ରାଧାକୃଷ୍ଣଙ୍କର ପୂର୍ବରାଗ ବର୍ଣ୍ଣିତ ହେଉଅଛି ;—

ପୂର୍ବରାଗ—ସାରତର୍ଯା ଫଗ୍ରାମାତ୍ପୂର୍ବଂ ଦର୍ଶନଶ୍ରବଣାଦିଜା ।
ତସ୍ୟୋରୁନ୍ମୀଲତି ପ୍ରାଜ୍ଞୈଃ ପୂର୍ବରାଗଃ ସ ଉଚ୍ୟତେ ॥ ଉ. ନି.
ଲାଲସୋଦ୍‌ବେଗଜାଗର୍ଯାସ୍ତାନବଂ ଜଡ଼ିମାତ୍ର ତୁ ।
ବୈୟଗ୍ର୍ୟଂ ବ୍ୟାଧିରୁନ୍ମାଦୋ ମୋହୋ ମୃତ୍ୟୁର୍ଦ୍ଦଶା ଦଶ । ଉ. ନି.

୧—ଉଷତରେ—ଆନନ୍ଦରେ । ସୁଧୀରେ—ଅତି ଧୀର ଭାବରେ ବା ଉତ୍ତମ ବୁଦ୍ଧିରେ । ଧୀରେ—ପଣ୍ଡିତମାନେ ।

ଉପୂର୍ବହିଁ="ଉ" ବର୍ଣ୍ଣରେ ଅନୁପ୍ରାସ । "ବର୍ଣ୍ଣସାମ୍ୟମନୁପ୍ରାସ"—କାବ୍ୟପ୍ରକାଶ "ସ୍ୱରବୈଶାଦୃଶ୍ୟେଽପି ବ୍ୟଞ୍ଜନସଦୃଶତ୍ୱଂ ବର୍ଣ୍ଣସାମ୍ୟଂ ବୈଷମ୍ୟେଽପି ସ୍ୱରସ୍ୟ ଯତ୍"—ସାହିତ୍ୟ ଦର୍ପଣ ॥ ଅନୁପ୍ରାସ ୫ ପ୍ରକାର—ଛେକ, ବୃତ୍ତି, ଶ୍ରୁତି, ଅନ୍ତ୍ୟ, ଲାଟ । ଯମକ—"ଆବୃତ୍ତିଂ ବର୍ଣ୍ଣସଙ୍ଘାତଗୋଚରାଂ ଯମକଂ ବିଦୁଃ । କା. ପ୍ର. ଏଠାରେ ଧୀରେ, ଧୀରେ ପ୍ରଭୃତି ଯମକ ॥

୨—ଉତ୍ତମା—ଉତ୍କୃଷ୍ଟା ନାରୀ, ଶ୍ରୀରାଧା । ନାମରସେ—ଶ୍ରୀକୃଷ୍ଣଙ୍କ ନାମ ଶ୍ରବଣରୁ ଜାତ ରସରେ । ରସେ—ଆସକ୍ତ ହେଲ । ପୌର୍ଣ୍ଣମାସୀ ସପ୍ତମ ଛାନ୍ଦରେ "ଇନ୍ଦୁକୋଟିଜିତ ଶ୍ରୀମୁଖ କୃଷ୍ଣର ଦେଖିବାକୁ ଯାଇଁ" କହିବାରୁ ରାଧାଙ୍କର ନାମ ଶ୍ରବଣରେ ପୂର୍ବରାଗରେ ଲାଲସା ଜାତ ହେଲା । ଉଠି ଯାଇ·········ଅବଶେ ବସେ—ଅଶକ୍ତ ଭାବରେ ।

୩—ଉର୍ଦ୍ଧ୍ୱନିଃଶ୍ୱାସ ······ଛନଛନ—ଏଠାରେ ଲାଲସା ଓ ଉଦ୍‌ବେଗ ।

୪—ଉଣା···ତନୁ—ଏଠାରେ ଉଦ୍‌ବେଗରୁ ଚିନ୍ତା; ଚିନ୍ତାରେ ବିରକ୍ତି; ବିରକ୍ତିରୁ ଉପବାସ, ତହିଁ କ୍ଷୀଣତା । ସୁତନୁ ତନୁ—ଶୋଭନାଙ୍ଗୀ ବା ଅତି କ୍ଷୀଣାଙ୍ଗୀ ରାଧାଙ୍କର ଦେହ । ତନୁ—କ୍ଷୀଣ, ଏଠାରେ ତନୁତା ବା ତାନବ ।

ଉନ୍ନିଦ୍ରରେ ହେଲା ପ୍ରତିଦିନ ଦୀନ । ଉଲୁସଇ ଗାତ୍ର, ନେତ୍ର ଥନଥନ । ୫ ।
ଉଛୁଳିଲା ନୟନରୁ ବାରବାର । ଉରଜରେ ପଡ଼ି ହେଲା ଜରଜର । ୬ ।
ଉଦ୍ଭାବିତ ପ୍ରେମେ ହୃଦ ଗରଗର । ଉଦେ ସାତ୍ତ୍ୱିକ ହେବାରେ ଥରଥର ।
ଉଚ୍ଚାରଣେ କୃଷ୍ଣ ଅବିରତ ରତ । ଉଠେ ଗାତ୍ରରେ ଚମକ ଶତଶତ । ୮ ।
ଉର ଉପରୁଁ କଲେ ବାହାର ହାର । ଉଦ୍‌ବେଗରେ ବାଣୀ କହେ ତରତର
ଉପାସ୍ୟ ଯେ ଯେ କୃଷ୍ଣ ନାମ ମରମର । ଉଦାସିନୀ ନ ଜାଣେ ଅସାର ସାର ॥
ଉତ୍କୃଶୋଭିନୀ ଏକାନ୍ତେ ଶତେ ଶତେ । ଉପୁଜଇ ଚେଷ୍ଟାମାନ କେତେ କେତେ
ଉତ୍କର୍ଷ, ଜୀବ ଯାତ୍ରା ହେଲେହେଲେ । ଉଦ୍ଭାବିତ ଏ ଚେଷ୍ଟା ପ୍ରବଳେ ବଳେ

---

୫—ଉନ୍ନିଦ୍ର—ଅନିଦ୍ରା । ଦୀନ—ଦୁଃଖିତ, କୃଶ; ଏଠାରେ ଜାଗର୍ଯ୍ୟା । ଉଲୁସଇ—କମ୍ପଇ [କମ୍ପ] । ଥନ ଥନ—ଅଶ୍ରୁରେ ଛଳଛଳ (ଅଶ୍ରୁ) ।

୬—ଉଛୁଳିଲା—ଉଚ୍ଛ୍ୱଳିଲା ବାହାରିଲା । ନୟନ—ଅକ୍ଷି । ବାରବାର—ଜଳ ସବୁ, ଲୋତକବର୍ଷି । ଉରଜ—ସ୍ତନ । ଜରଜର—ପୂର୍ଣ୍ଣ, ବ୍ୟାପିଗଲା । (କାମର ଦଶଦଶା ମଧ୍ୟରେ ଯେ ତାନବ କୁହା ହୋଇଅଛୁ, କେତେକେ ତାହା ପରବର୍ତ୍ତିରେ 'ବିଳାପ' ବୋଲି ଗ୍ରହଣ କରନ୍ତି । ଏଠାରେ ବିଳାପ ହୋଇପାରେ) ।

୭— ଉଦ୍ଭାବିତ—ଜାତ । ଗରଗର—(ଗଦ୍‌ଗଦ ଶବ୍ଦକ)—ଜଡ଼ୀତ ହେଲା । ସାତ୍ତ୍ୱିକ—ସ୍ତମ୍ଭ ସ୍ୱେଦୋଽଥ ରୋମାଞ୍ଚ ସ୍ୱରଭଙ୍ଗୋଽଥ ବେପଥୁଃ, ବୈବର୍ଣ୍ଣ୍ୟମଶ୍ରୁ ପ୍ରଳୟ ଇତ୍ୟଷ୍ଟୌ ସାତ୍ତ୍ୱିକାଃ ସ୍ମୃତାଃ । ଥରକୁ ଥର ସାତ୍ତ୍ୱିକ ଜାତ ହେବାରୁ ପ୍ରେମରେ ହୃଦ ପୂରିଗଲାଣି; ବା ହୃଦ ଥରଥର—[କମ୍ପୁଛି] ।

୮—ଅବିରତ—ସଦା ସର୍ବଦା । ରତ ଆସକ୍ତ । ଏଠାରେ ସ୍ୱରଭଙ୍ଗ ସୂଚକ ହେଉଛି । ଚମକ—ଭୟ, କମ୍ପ । ଶତଶତ—ଅନେକ ଥର ।

୯—ଉର—ଗ୍ରୀବ । ଉଦ୍‌ବେଗ—ଉତ୍କଣ୍ଠା ।

୧୦—ଉପାସ୍ୟ—ପୂଜାର ବିଷୟ । ମରମର—ଅନ୍ତଃକରଣର । ଉଦାସିନୀ—ଅନ୍ୟ ବିଷୟରେ ଆଗ୍ରହ ନାହିଁ ଯାହାର । ଅସାରସାର—ଭଲମନ୍ଦ ।

୧୧—ଉତ୍କୃଶୋଭିନୀ—ଅତ୍ୟନ୍ତ ସୁନ୍ଦରୀ ବା ଶୋଭନୋରୁ ରାଧା । ଚେଷ୍ଟାମାନ—କାମବିକାର ସବୁ ।

୧୨—ହେଲେ ଜୀବଯାତ୍ରା ହେଲେ ( ସହଜରେ ପ୍ରାଣ ବାହାର ଗଲେ ) ମୋର ଉତ୍କର୍ଷ (ଗୌରବ, ବଡ଼ପଣ) ହେବ ବା ହେଲେ (ନିର୍ବାଧରେ), ସହଜରେ ବା ବୃଥା ଯାତ୍ରା ହେଲେ ( ଶ୍ରୀକୃଷ୍ଣଙ୍କ ନିକଟକୁ ଗମନ ହେଲେ ) ଉତ୍କର୍ଷ ଜୀବ (ଗୌରବ ନଷ୍ଟ ହେବ) ଦ୍ୱିତୀୟ ଅର୍ଥ ତେତେ ସମୀଚୀନ ନୁହେଁ, ନାୟିକା ତ ସମସ୍ତେ ସମସ୍ତେ ସ୍ୱୟଂ ଦୂତୀ ହୁଅନ୍ତି । ଏ ଚେଷ୍ଟା ( କାମଚେଷ୍ଟା ) ଉଦ୍ଭାବିତ ( ଜାତ ହୋଇ ) ପ୍ରବଳେ ବଳେ (ପ୍ରବଳ ଭାବରେ ବଢ଼େ, ବଳି ପଡ଼ୁଛି) ।

ଉତ୍କଣ୍ଠିତ ବଳ ପଡ଼େ ବାର ବାର । ଉପତାପରେ ବଢ଼େ ହୃଦୟୁର ଦର ॥
ଉପାବୃତ ଏଥିକି ସଖ୍ମ ତ ହିତ । ଉଦ୍ଧାମରେ କହିଲେ ଲଜ୍ଜା ତ ଜାତ ॥
ଉରୁପଣ ଯିବ ଅପ୍ରମିତ ମିତ । ଉଚ୍ଚବାଚ ତ ହେବ ବିଷ ନ ସତ । ୧୫ ।
ଉଦକାଶୟେ ପଡ଼ିବି, ଜୀବ ଯିବ । ଉଚିତ ଏ ହେବ, କି ଦଶିବ ଶିବ ॥
ଉଡ଼ିଯିବ ମୋ ନିନ୍ଦା ଏ ପୁଣି ପୂର । ଉଗ୍ର ହୋଇ ପଡ଼ିବ ଆତୁର ତୁର ।୧୭।
ଉପନିଷଦେ ହେବାପବାଦ ବାଦ । ଉଗ୍ର ହର ମୋର ଏ ଆପଦ ପଦ ।୧୮।
ଉତ୍ତରକୁ ହେବ ସୀମନ୍ତାନ ଥାନ । ଉଦ୍ଯୋଗ ଦକ୍ଷିଣ ଗମନ ମନ । ୧୯ ।
ଉଡ଼ୁକାନ୍ତ ମୁଖୀ ଚିନ୍ତା କରୁ କରୁ । ଉତ୍ସନ୍ନତା ମନ ଦନ୍ତ ଧରୁଁ ଧରୁଁ ।୨୦।
ଊର୍ଦ୍ଧ୍ୱନାଭ-ସୂତ୍ର ମାନସରୁ ସରୁ । ଉପବର୍ଣ୍ଣକୁ ମଣେ ନଗରୁ ଗରୁ । ୨୧ ।

---

୧୩—ଉତ୍କଣ୍ଠିତ—ଉତ୍କଣ୍ଠା, ଉତ୍ସୁକତା । ବାରବାର—ପ୍ରତିଥର । ଉପତାପରେ—ବିରହ ପୀଡ଼ାରେ—ଏଠାରେ ବ୍ୟାଧି । ଦର – ଭୟ, ଡ଼ର ।

୧୪—ସଖ୍ମ—ସଖୀ । ହିତ—ଉପକାରିଣୀ ବା ସହିତ ହିତ—ସହିବା, ହିତ ଭାବ । ଉଦ୍ଧାମରେ—ପ୍ରକାଶ ଭାବରେ, ଅକୁଣ୍ଠିତ ଚିତ୍ତରେ । ଲଜ୍ଜା ଜାତ ହେବ ।

୧୫—ଉରୁପଣ—ବଡ଼ପଣ, ଠେକ । ଅପ୍ରମିତ—ଅସଂଖ୍ୟ, ଅଗଣିତ । ଉଚ୍ଚବାଚ—ଭଲମନ୍ଦ, ଊଣା ଅଧିକା କଥା, ଏଠାରେ ଚାଣ୍ଠୁଆ କଥା ମୋପ୍ରତି ନିଶ୍ଚୟ ବିଷପରି ହେବ ।

୧୬—ଉଦକାଶୟେ—ଜଳାଶୟରେ, ପୋଖରୀରେ । ଶିବ—ମଙ୍ଗଳ ।

୧୭—ମୋ ନିନ୍ଦା ଏ ପୁରକୁ ପୂର୍ଣ୍ଣ କରି ଉଡ଼ିଯିବ (ଦୂରଦେଶକୁ ଯିବ) । ଉଗ୍ରହୋଇ···ବେଶିହୋଇ, ବଢ଼ି, ଭୀଷଣ ଭାବରେ । ତୁର—ନିନ୍ଦାବାଦ ପ୍ରଚୁର ହୋଇ ପଡ଼ିବ ।

୧୮—ଉପନିଷଦେ—ଶାସ୍ତ୍ରରେ । ଅପବାଦ—ନିନ୍ଦାବାଦ ।

ହେ ଉଗ୍ର (ଶିବ) ! ମୋର ଆପଦପଦ (ବିପତ୍ତିର ସ୍ଥାନକୁ) ହରଣ କର । ବା ଉପନିଷଦେ—ପୋଥିଏ ହେବ । ପ୍ରଥମ ଅର୍ଥ ଯୁକ୍ତ ।

୧୯—ସୀମନ୍ତାନ ଥାନ (ମସ୍ତକର ସ୍ଥାନ) ଉତ୍ତରକୁ ହେଉ ଅର୍ଥାତ୍ ମୁଁ ମରିବି, ଦକ୍ଷିଣ ଦିଗକୁ (ଯମପୁରକୁ) ମନ ଉଦ୍ଯୋଗ (ଉଦ୍‌ଯୋଗ) କରୁଅଛି ।

୨୦—ଉଡ଼ୁକାନ୍ତ—ଚନ୍ଦ୍ରମୁଖୀ । ଦନ୍ତ [ଧୈର୍ଯ୍ୟ] ଧରୁ ଧରୁ ତାର ମନ ଉତ୍ସନ୍ନ ହେଲା ।

୨୧—ଊର୍ଦ୍ଧ୍ୱନାଭ······ସରୁ—ବୁଢ଼ିଆଣିସୂତା ପରି ସରୁ ପଦାର୍ଥଠାରୁ ସରୁ । ଉପବର୍ଣ୍ଣକୁ—ଓଢ଼ଣାକୁ । ନଗରୁ—ପର୍ବତରୁ । ଗରୁ—ଭାରି ।

ଉଦଧିରେ ଯେମନ୍ତ ତରଙ୍ଗ ରଙ୍ଗ । ଉତପ୍ଳୁତ ଚଉରେ ସେ ପ୍ରସଙ୍ଗ ସଙ୍ଗ ।୨୨।
ଉତ୍ସର୍ଗ ଯେ ହୋଇଲା ଆଣ ତ ସତ । ଉତ୍ଥିତ ତ ହୃଦରୁଁ ବହ୍ନିତ ହୁତ ।୨୩।
ଉହାଡ଼ରେ ଯେ କୃଷ୍ଣ ନିହିତ ହିତ । ଉପଯୋଗ ତାପକୁ ସେହି ତ ହିତ ।୨୪।
ଉପାଧିକ ଟେକିଲା ସୁମତି ମତ । ଉପଗମୀ କୃଷ୍ଣ ଗଜଗତି ଗତ । ୨୫ ।
ଉହୁଁ ଇସି ବାହାର ମୁଖରେ ଝରେ । ଉପବନ ନ ରହେ ଅଧୀରେ ଧୀରେ ।୨୬।
ଉକୁଟନ୍ତେ ତାଳ ସୁସଙ୍ଗୀତ ଗୀତ । ଉତ୍ସବକୁ ନ ମଣେ ରୁଚିର ଚିତ୍ତ ।୨୭।
ଉତ୍କରରେ ବଢ଼ାଇଲା ନୃତ୍ୟ ନୃତ । ଉଷ୍ଣ ଶଶୀକର ତ, ଅସିତ ସିତ ।୨୮।
ଉଦନ୍ତ ଯେ ଯେଣେ ବୋଇଲେ କୃପ କୃପ । ଉଦେଷଣାରୁ ବଢ଼େ ପ୍ରତାପ ତାପ ।।
ଉଦ୍ଘ ନ୍ନ ହୋଇ ପୁରପଥରେ ଥରେ । ଉଦ୍ୟମ ସେ କରେ ଆଚ୍ଛନ୍ନରେ ନରେ ।୩୦
ଉତ୍ପଳାକ୍ଷୀ ଦୁଃଖ ଅସମ୍ଭାର ଭାର । ଉଦ୍ଧତରେ ବୋଲେ ସହି ଧର ଧର ।୩୧।

---

୨୨—ଉଦଧିରେ—ସମୁଦ୍ରରେ । ତରଙ୍ଗରଙ୍ଗ—ଲହରୀ ଖେଳ । ସେ ପ୍ରସଙ୍ଗ ସଙ୍ଗ—କୃଷ୍ଣବିଷୟରେ ଆସକ୍ତ । ଉତପ୍ଳୁତ—ଓତପ୍ରୋତ, ସବୁଠାରେ ବ୍ୟାପିଛୁ, ଘୋଟି ଯାଇଛୁ ।

୨୩—ଉତ୍ସର୍ଗ ହେଲା—ଛଡ଼ା ହେଲା । ହୁତ—ଅଗ୍ନି । ଉତ୍ଥିତ—ଜାତ ।

୨୪— ଉହାଡ଼ରେ (ଅନ୍ତରାଳରେ) ଯେ କୃଷ୍ଣ ଅଛନ୍ତି, ତାଙ୍କଠାରେ ତାଙ୍କର ହିତ ନିହିତ ଅଛି ସେ [କୃଷ୍ଣ] ବିରହତାପ ହିତରୂପରେ ଉପଯୋଗ [ଦରକାର] ହେଲା । ବା ଉପଯୋଗତାପ—ଉପସ୍ଥିତ ତାପକୁ ।

୨୫—ସୁମତି (ରାଧାଙ୍କର) । ଉପାଧିକ—[ଧର୍ମ ଚିନ୍ତା ବା ଦେହର ମମତା] ଗଜଗତି [ଗଜଗମନା] ରାଧାର ଗତ [ସୁଖ] କୃଷ୍ଣଙ୍କଠାରେ ଉପଗମୀ [ଆଶ୍ରିତ] ରହିଲା ।

୨୬—ଝରେ—ବେଗରେ । ଉପବନ—ବଗିଚା । ଅଧୀରେ—ଅଧୀର ହେବାରୁ । ଧୀରେ—ବୁଦ୍ଧିରେ ।

୨୭—ଉକୁଟନ୍ତେ—ପ୍ରକାଶ ହୁଅନ୍ତେ, ବାଜନ୍ତେ । ତାଙ୍କର ଚିତ୍ତ ରୁଚିର [ରୁଚିକର] ଉତ୍ସବ ମଣେ ନାହିଁ ।

୨୮—ଉତ୍କରରେ—ବଳନ୍ତରେ । ନୃତ—ନୃତ୍ୟ କାର୍ଯ୍ୟ । ନୃତ—ପ୍ରଡ଼ଦନ । ଶଶୀକର—ଚନ୍ଦ୍ର । ଉଷ୍ଣ—ତାପଦାୟକ ( ଗରମ ) ସିତ ଅସିତ [ଶ୍ୟାମ] ହେଲା ।

୨୯—ଉଦନ୍ତ— ବାର୍ତ୍ତା । କୃପ କୃପ—କୃପା କର, କୃପା କର । ଉଦେଷଣାରୁ —ଉତ୍କଟ ବା ପ୍ରବଳ ଇଚ୍ଛା ହେବାରୁ । ପ୍ରତାପତାପ—ବିରହତାପର ପ୍ରଭାବ ।

୩୦—ନରେ ଆଚ୍ଛନ୍ନ—ଲୋକମାନଙ୍କ ପ୍ରତି ଲୁଗ୍ରଇବାରେ ।

୩୧—ଦୁଃଖଭାର ଅସମ୍ଭାଳ ହୋଇଅଛି । ଉତ୍ପଳାକ୍ଷୀ—ନୀଳୋତ୍ପଳ-ନୟନା । ଉଦ୍ଧତରେ—ଉତ୍କଟଭାବରେ ବା ଦୁଃଖ ଅଧିକ ହେବାରୁ । ଧରଧର—କୃଷ୍ଣ ଓ ଧାରଣ କର ଧାରଣ କର ।

ଉପ୍ରୋଧରୁଁ ଏ ସ୍ୱାନ୍ତକି ସହ ସହି । "ଉତ୍ତମ ଏ ନେହେ" କହେ କେହି କେହି ॥
ଉତପାତ ଏ କି ସ୍ୱାନ୍ତ କହ କହ । ଉତ୍କଟ ଏ କଥା "ନୁହ ରହ ରହ" ।୩୩।
ଉଜ୍ଜ୍ୱଳାଙ୍ଗର କେ ନେଲା ହରି ହରି । ଉଦାରତା ଅନୁ ଜବାଧରି ଧରି ।୩୪।
ଉରଗରୁଁ ଗରୁ ତ ନିଶ୍ୱାସ ଶ୍ୱାସ । ଉଜ୍ଜ୍ୱଳରେ ଇଚ୍ଛା କି, ନ ଭାଷ ଭାଷ ।୩୫।
ଉପୁରିକି ଆମ୍ଭେ ଗୋ ରମଣୀମଣି । ଉତ୍ତର ତ ନ କହ କି ଗୁଣି ଗୁଣି ।୩୬।
ଉପପତି ଇଚ୍ଛି କି ଏମନ୍ତ ମତ୍ତ । ଉଦ୍ଦୀପନ ହେତୁ କେ, ବଧିତ ଧୀତ ।୩୭।
ଉପତାପେ ବୁଡ଼ିଲୁ ଆତୁରେ ଭୁ ରେ । ଉଦ୍ଧରିବ କେ ହୋଇ ପ୍ରଭୁରେ ଭୂରେ॥
ଉକ୍ତି ନ ଦେଲେ ଶୁଣି ସଙ୍ଗୀର ଗିର । ଉପକୋଣେ ନତ ସୁହାସୀର ଶିର ।୩୯
ଉଭୟଥା ସନ୍ଦେହରେ ଆଳୀଆଳି । ଉପଲକ୍ଷ କଲେ ମନେ ଭାଳି ଭାଳି ।୪୦

---

୩୨—ଉପ୍ରୋଧରୁ—ପ୍ରୀତିରୁ, ମର୍ଯ୍ୟାଦା ଦୃଷ୍ଟିରେ । ସହି—ସଖୀ । ସହ—ସହ୍ୟ କର ।

୩୩—ଉତ୍ପାତ—ବିବାଦ ( ଅମଙ୍ଗଳକଥା ) । ଏ କଥା ଉତ୍କଟ (ବିଷମ) ହେଲଣି । ରହ ରହ ନୁହ—ନିଷେଧ କର ନାହିଁ । ରହ, କାହିଁକି ମୋ ସାଙ୍ଗରେ ଲାଗିଛ ଏପରି ହୁଅ ନାହିଁ ।

୩୪—ଉଜ୍ଜ୍ୱଳାଙ୍ଗର—ଶୋଭାଯୁକ୍ତ ଅଙ୍ଗର । ହରି—କାନ୍ତି, ଶୋଭା । ହରିନେଲା—ହରଣ କଲା । ଉଦାରତା—ଉଦାସୀନତା, ସବୁ ବିଷୟରୁ ମମତା ଛଡ଼ାଇବା ଭାବ ।

୩୫—ତୋର ନିଶ୍ୱାସ ବାୟୁ ଉରଗରୁ (ସାପର ଗର୍ଜନଠାରୁ) ଗରୁ (ପ୍ରଖର) ଉଜ୍ଜ୍ୱଳରେ—ଶୃଙ୍ଗାରରସରେ । ଭାଷ—କଥା, ନ ଭାଷ—ନ କୁହ ।

୩୬—ଉପୁରି କି—ବାହାର ଲୋକ କି ? କି ଗୁଣିଗୁଣି—କଣ ଭାବି ।

୩୭—ଉପପତି—ଜାରପୁରୁଷ । ମତ୍ତ—ପାଗଳ । ଉଦ୍ଦୀପନ ହେତୁ—କାମଭାବର ଉତ୍ତେଜନାର କାରଣ । ଧୀତ—ବୁଦ୍ଧିତ । ବଧିତ—କୁଣ୍ଠିତ, ବଣା ।

୩୮—ଉପତାପେ—ବିରହତାପରେ । ଏ ଭୁରେ (ପୃଥିବୀରେ) କିଏ ପ୍ରଭୁ ହୋଇ ଉଦ୍ଧାର କରିବ ।

୩୯—ସଙ୍ଗୀର ଗିର (ସଖୀର କଥା) ଶୁଣି ଉକ୍ତି [ଉତ୍ତର] ନ ଦେଲା । ସୁହାସୀ—ମଧୁରହାସିନୀ ରାଧାଙ୍କର । ଶିର ଉପକୋଣେ [ନିନ୍ଦିତ କାର୍ଯ୍ୟ ଯୋଗୁଁ] ନତ ହେଲା ।

୪୦—ଉଭୟଥା—ଦୁଇପକ୍ଷରେ, ପୀଡ଼ା ଓ ବିରହ ସନ୍ଦେହରେ । ଆଳୀଆଳି—ସଖୀସମୂହ । ଉପଲକ୍ଷ କଲେ—ଅନୁମାନ କଲେ ।

ଉପଇନ୍ଦ୍ର ପଦ ଅଭିମନ୍ୟୁ ମନୁଁ । ଉପେକ୍ଷା ଯେ ନୋହିବ ତ ବନୁ ବନୁ । ୪୧
ଉତବାସନା ମୋର ସାଗର ଗର । ଉଦ୍ଧାରଣ କର ଏଥୁଁ ଧରଧର । ୪୨ ।

---

## ନବମ ଛାନ୍ଦ

# ଶ୍ରୀରାଧାଙ୍କ କୃଷ୍ଣ-ନାମାନୁସ୍ୱାଦନ

ପ୍ରାନ୍ତାନୁପ୍ରାସ

ରାଗ-କେଦାର କାମୋଦୀ

ଶ୍ରୀରାଧା କୃଷ୍ଣନାମ ଶୁଣି କାତରେ । ବିଶାଖାରେ କହନ୍ତି ସେ ଏକାନ୍ତରେ ଯେ
ଯହିଁ ନାମ କହିଲେ ଶ୍ରୀପୂର୍ଣ୍ଣମାସୀ । ଚନ୍ଦ୍ରସିନ୍ଧୁକୁ ହେଲା ସେ ପୂର୍ଣ୍ଣମାସୀ ଯେ । ୧
ସେ ନାମ ଗଢ଼ା ମିଶି କେତେ ଅମୃତ । ଯେ ଶୁଣିବ ତାର କି ହେବ ଅମୃତ ଯେ
ବିଚିତ୍ର ସୁଖ ହୋଏ ତାହା ଶ୍ରବଣେ । ଲାଳସା ହୋଏ କୋଟିକୋଟି ଶ୍ରବଣେ ଯେ

---

୪୧—ଉପଇନ୍ଦ୍ରପଦ—ଶ୍ରୀକୃଷ୍ଣଙ୍କର ପାଦ ଏବଂ ଉପେନ୍ଦ୍ର ଭଞ୍ଜଙ୍କ ରଚନା । ଉପେକ୍ଷା—ତ୍ୟାଜ୍ୟ, ଛାଡ଼ିବା କଥା ।

୪୨—ମୋର ଉଦ୍‌ବାସନା [ଉତ୍କଣ୍ଠ ମନ] ସାଗର [ ସଂସାରସାଗର ] ଗର [ ବିଷ, ହଳାହଳ ] ହୋଇଅଛି । ହେ ଧରଧର [ ଗୋବର୍ଦ୍ଧନଧାରୀ ଶ୍ରୀକୃଷ୍ଣ ] ମୋତେ ଉଦ୍ଧାର କର । ଧରଧର—ପର୍ବତବାସକାରୀ ଶିବ ହଳାହଳ ପାନ କରି ଜଗତକୁ ତାହାଠାରୁ ରକ୍ଷା କରିଥିଲେ ।

---

୧—ଚନ୍ଦ୍ରରୂପକ ସମୁଦ୍ର ପ୍ରତି ସେ ନାମ ପୂର୍ଣ୍ଣିମା ହେଲା । ଅର୍ଥାତ୍ ପୂର୍ଣ୍ଣିମା ସମୁଦ୍ରକୁ ବଢ଼ାଇଲା ପରି ସେ ନାମ ଚନ୍ଦ୍ରା ବଢ଼ାଇଲା ।

୨—ସେ ନାମ କେତେ ଅମୃତ ମିଶି ଗଢ଼ା ହୋଇଅଛି ? ସେ ନାମ—ଚନ୍ଦ୍ର ପରି ସେ କେତେ ଅମୃତ ମିଶି ଗଢ଼ା ହୋଇଅଛି । ସେ ନାମ ଶୁଣିବା ଲୋକର ଅମୃତ ବା ଅମୃତତ୍ୱ [ଦେବପଣିଆ] କଣ ହେବ ? ବିଚିତ୍ର—ବିଲକ୍ଷଣ । ଶ୍ରବଣେ—ଶୁଣିବାରେ । କୋଟି କୋଟି ଶ୍ରବଣେ [ କର୍ଣ୍ଣ ହେବାପାଇଁ ] ଲାଳସା [ଇଚ୍ଛା] ହୁଏ ।

ତୁଣ୍ଡେ ତାଣ୍ଡବିନୀରତିଂ ବିତନୁତେ ତୁଣ୍ଡାବଲୀ ଲବ୍‌ଧୟେ
କର୍ଣ୍ଣକ୍ରୋଡ଼କଡ଼ମ୍ବିନୀ ଘଟୟତେ କର୍ଣ୍ଣାର୍ବୁଦେଭ୍ୟଃ ସ୍ପୃହାମ୍ ।
ଚେତଃ ପ୍ରାଙ୍ଗଣସଙ୍ଗିନୀ ବିଜୟତେ ସର୍ବେନ୍ଦ୍ରିୟାଣାଂ କୃତମ୍
ନୋ ଜାନେ ଜନିତା କିୟଦ୍ଭିରମୃତୈଃ କୃଷ୍ଣେତି ବର୍ଣ୍ଣଦ୍ୱୟୀ ।

ବିଦଗ୍ଧ ମାଧବ ୧ମ ଅଙ୍କ ୩୩ଶ ଶ୍ଳୋକ ୨୫ ପଦର ଅନୁରୂପ ।

ଉଚ୍ଚାରଣ କରିବାବେଳେ ମୁଖରେ । ଶେଷାନନହେବାକୁ ବାଞ୍ଛେ ମୁଁ ଖରେ ଯେ
ପଡ଼ଇ ଯେତେବେଳେ ସେ ମାନସରେ । ଜ୍ଞାନେନ୍ଦ୍ରିୟମାନଙ୍କ ଗୁମାନ ସରେ ଯେ
କୃଷ୍ଣବୋଲ ସେ ଯେଉଁ ବେନ ଅକ୍ଷର । କାମାନ୍ଧମାନଙ୍କ କନୀନିକା ଅକ୍ଷର ଯେ ॥
କି ସେ ତାଟଙ୍କ ପ୍ରୀତିନାସା ଶ୍ରୁତିର । କି ଭୁକ୍ତି ମୁକ୍ତି ଫଳ ବେନଶ୍ରୁତିର ଯେ ।୪
କିବା ଜୀବ ପରମ ସର୍ବଲୋକର । କାମୀତମ ଚନ୍ଦ୍ରାର୍କ କି ତ୍ରିଲୋକର ଯେ ॥
କିବା ଆନନ୍ଦ ଆହ୍ଲାଦ ମୂରତି । ସେନାମରେ କେବଳ ଇଚ୍ଛେ ମୁଁ ରତି ଯେ ।୫
ଉପମା ହେବ କାହା ପରଶଂସାରେ । ତୁଳା କହି ତ ନାହିଁ ବିଧି ସଂସାରେ ଯେ
ତା ଶୁଣିଲେ କି ରହେ ପତିବରତ । ମୋ ମାନସ ଆରତି ଅନୁବରତ ଯେ ।୬
କୃଷ୍ଣ ନାମ ବଡ଼ଶୀ ମନ-ମତ୍ସ୍ୟର । ମୋ ହୃଦରୁ ଛଡ଼ାଇ ଦେଲା ମତ୍ସର ଯେ ।
ଯେଯାହାବୋଇଲେବୋଲ ସହିବାର । ବଳାତ୍କାରେହେଲାନି ମୋସହିବାର ଯେ

---

୩—ଶେଷାନନ—ଅନନ୍ତ [ବାସୁକି] ପରି ସହସ୍ର ମୁଖ ହେବାକୁ ଖରେ—ଶୀଘ୍ର । ମାନସରେ—ମନରେ । ଜ୍ଞାନେନ୍ଦ୍ରିୟ [ଚକ୍ଷୁ, କର୍ଣ୍ଣ, ନାସିକା, ଜିହ୍ୱା ଓ ଚର୍ମ] ଏମାନଙ୍କର ଗୁମାନ [ଟାଣପଣ] ସରଇ ଅର୍ଥାତ୍ ସେମାନେ ନିଷ୍କ୍ରିୟ ହୋଇ ନିଜ ନିଜର କାର୍ଯ୍ୟ କରି ପାରନ୍ତି ନାହିଁ ।

୪—କାମାନ୍ଧମାନ [କନ୍ଦର୍ପ ପୀଡ଼ାରେ ଅନ୍ଧ ହୋଇଥିବା ସ୍ତ୍ରୀମାନଙ୍କର] ଅକ୍ଷର [ଆଖିର] କନୀନିକା [ଆଖିପିତୁଳା] ଅଟେ ।

ପ୍ରୀତି ନାସାଶ୍ରୁତିର [ପ୍ରୀତି ରୂପକନାକର କର୍ଣ୍ଣର] ତାଟଙ୍କ [ଡଡ଼ିକା] କି ? ଶ୍ରୁତିର [ବେଦର] ଭୁକ୍ତି ମୁକ୍ତି [ଭୋଗ ଓ ମୋକ୍ଷରୂପ] ଫଳଦ୍ୱୟ କି ?

ମୁକ୍ତି ସ୍ତ୍ରୀ କର୍ଣ୍ଣପୁରୌ ମୁନିହୃଦୟଦ୍ୱୟବସ୍ତ୍ରପକ୍ଷୌ ଗାରଭୂମିଃ
ସଂସାରାପାରସିନ୍ଧୋଃ କଳିକଲୁଷତମସ୍ତୋମସୋମାର୍କବମ୍ବୌ ।

ଭୋଗ—ଧର୍ମକାର୍ଯ୍ୟ କଲେ ଯେଉଁ ସ୍ୱର୍ଗାଦି ସୁଖ ଭୋଗ ହୁଏ । ମୋକ୍ଷ—ଈଶ୍ୱରଙ୍କଠାରେ ମିଳିଯିବା—ଯାହା ପରେ ଆଉ ଜନ୍ମ ହୁଏ ନାହିଁ । ତାହା ସାଲୋକ୍ୟ, ସାରୂପ୍ୟ, ସାମୀପ୍ୟ, ସାଯୁଜ୍ୟ, ସାର୍ଷ୍ଟି ।

୫—ସମସ୍ତ ଜଗତର ଜୀବାତ୍ମା ପରମାତ୍ମା କି ? ତ୍ରିଲୋକର କାମୀତମ [କାମୀମାନଙ୍କର ଅଜ୍ଞାନରୂପ ଅନ୍ଧକାର ନାଶ କରିବାକୁ] ଚନ୍ଦ୍ର ସୂର୍ଯ୍ୟ କି ? ଆନନ୍ଦ ଓ ଆହ୍ଲାଦ ଦୁହିଙ୍କର ସ୍ୱରୂପ କି ? ଆହ୍ଲାଦ—ପ୍ରୀତିଯୁକ୍ତ ଆନନ୍ଦ । ରତି—ପ୍ରୀତି ବା ଅନୁରାଗ । ଜୀବ—ଅଣୁ ଚୈତନ୍ୟ, ପରମାତ୍ମାର ଅଂଶ ମାତ୍ର । ପରମ—ପରଂବ୍ରହ୍ମ, ବିଶ୍ୱଚୈତନ୍ୟ ।

୬—ପରଶଂସାରେ—ପ୍ରଶଂସାରେ କାହାର ଉପମା [ତୁଳନା] ହେବ । ତୁଳା—ତୁଳନା, ସମାନ । ବିଧି—ବ୍ରହ୍ମା । ପତିବରତ—ପତିବ୍ରତାପଣ । ମାନସ ଆରତି—ମନର ଦୁଃଖ । ଅନୁବରତ—ସବୁବେଳେ ।

୭—ବଡଶୀ—ବନଶୀ । ମନ ମତ୍ସ୍ୟର—ମନ ରୂପକ ମାଛର । କୃଷ୍ଣଙ୍କ ନାମ ହେଲା ବନଶୀ—ମନ ହେଲା ମତ୍ସ୍ୟ—ମନକୃଷ୍ଣଙ୍କଠାରେ ଲାଗି ରହିଲା । ମତ୍ସର—

କରୁ କରୁ ସେ ନାମ ସୁମରଣକୁ । ବନ୍ଧ ଭେଟାଇ ଦେଉ ସୁ-ମରଣକୁ ଯେ ।
ତୁମ୍ଭେ କରି ବସିଲେ ନିବାରଣକୁ । ଔଷଧେ ନାହିଁ ମୋ ଜୀବ ତାରଣକୁ ଯେ ॥
ରଙ୍ଗସେ ସଂସାରେବୋଲନ୍ତି ନାରଙ୍ଗ । ଶ୍ୱେତବର୍ଣ୍ଣ ଦିଶଇ ତାହା ନା ରଙ୍ଗ ଯେ ।
ନାମ ନାମୀ ଅଭେଦେ ଶଙ୍କା ଜନିତ । ଚିନ୍ତା ସେ ନ ଗଲା ଦିବାରଜନୀ ତ ଯେ ।
ଯା ନାମ ସ୍ୱାଦୁ ଲେଭେ ମାନସ ରତ । ତା ରୂପ ହୋଇଥିବ ସୁଧାସାର ତ ଯେ ।
ନାମ ଅର୍ଥରୁ ତା ବର୍ଣ୍ଣ ଆଭାସଇ । ତଥାପି ସଂଶୟତାରୁଁ ନ ଭାସଇ ଯେ । ୧୦।
କୃଷ୍ଣନାମ ଭାଷନ୍ତି ସେ କଳାନିଧି । ନାମରୁ ବର୍ଣ୍ଣ ଭିନ୍ନ ଯେ କଳାନିଧି ଯେ ।
ଅଭେଦ ନାମନାମୀ ଅଛି ବେଦରେ । ଏ ଅଧାଦାରୁଁ ଅଛି ମୁଁ ନିର୍ବେଦରେ ଯେ ।
ମର୍ମଦାରଣ ସେ ଅବଳା ଜନଙ୍କ । ସେ ନାମ ଅଟଇ କି କ ମଜନକ ଯେ ।

---

ଗର୍ବ ବା ଦ୍ୱେଷ । ସହିବାର—ସଖୀ ସବୁ । ବଳାତ୍କାରେ—ବାଧରେ ମୋର ସବୁ ସହିବାର (ସହ୍ୟ କରିବାର) ହେଲଣି ।

୮—ସୁମରଣକୁ—ସ୍ମରଣକୁ । ବନ୍ଧ—ବିଧାତା । ସୁ-ମରଣକୁ—ଉତ୍ତମ ମୃତ୍ୟୁକୁ । ଏହିଦ୍ୱାରା ଜନ୍ମାନ୍ତରରେ କୃଷ୍ଣଙ୍କୁ ପାଇବା ଇଚ୍ଛା ସୂଚିତ ହେଲା । ମଲା-ବେଳେ ଲୋକେ ଯାହା ମନେ କରନ୍ତି—ଅନ୍ୟ ଜନ୍ମରେ ତାହା ପାଆନ୍ତି । ନିବାରଣକୁ—ନିଷେଧ, ମନା । ଔଷଧ···ତାରଣକୁ—ମୋ ଜୀବ ରକ୍ଷା ପାଇଁ ଔଷଧ ନାହିଁ ।

୯—ଏ ସଂସାରରେ ନାରଙ୍ଗ ଫଳ ରଙ୍ଗ ବୋଲାଏ । ଯେ ମଧ ଶ୍ୱେତବର୍ଣ୍ଣ (ଧଳା) ଦିଶେ ତାହା ନା (ନାମ) ରଙ୍ଗ (ବର୍ଣ୍ଣ) ଅଟେ । ଅତଏବ କୃଷ୍ଣବର୍ଣ୍ଣ ଓ କୃଷ୍ଣନାମଧାରୀ ବ୍ୟକ୍ତିର ଅଭେଦ (ସମତା) ଅଛି କି ନାହିଁ ? ଏ ବିଷୟରେ ମୋର ଶଙ୍କା ଜନ୍ମିଅଛି ଏବଂ ଦିନରାତି ମୋର ଏ ଚିନ୍ତା ଯାଉନାହିଁ । ନାରଙ୍ଗ—ଯେ ରଙ୍ଗ ନୁହେଁ, ଯୌଗିକ ଅର୍ଥ ।

୧୦—ମାନସ—ମନ । ରତ—ଆସକ୍ତ । ସୁଧାସାର—ଅମୃତର ପୋଷଣ, ଅମୃତର ଆଧାର । ଆଭାସଇ—ଜଣା ପଡୁଛି । ସଂଶୟତାରୁ—ସନ୍ଦେହରୁ । ନ ଭାସଇ—କହିପାରୁ ନାହିଁ ।

୧୧—ସେ କଳାନିଧି [୬୪ କଳା ବା କାମକଳାର ସ୍ଥାନ] କୃଷ୍ଣ ନାମକୁ ଭାଷନ୍ତି (ଧରିଛନ୍ତି) କିନ୍ତୁ ଯେ କଳାନିଧି [ଚନ୍ଦ୍ର], ତାହାର ନାମ [କଳାନିଧି ନାମ] ବର୍ଣ୍ଣରୁ (କୃଷ୍ଣବର୍ଣ୍ଣରୁ) ଭିନ୍ନ ଅଟେ । ଅର୍ଥାତ୍ ଶୁକ୍ଳ ହେଲେ ହେଁ ଚନ୍ଦ୍ର କଳାନିଧି ନାମ ଧରିଅଛି । କିନ୍ତୁ କୃଷ୍ଣ କଳା ହେବା କଳାନିଧି (କୃଷ୍ଣବର୍ଣ୍ଣର ସ୍ଥାନ) ନାମକୁ ସାର୍ଥ କରିଅଛନ୍ତି । ନାମ ଓ ନାମୀ (ନାମଧାରୀ ଲୋକର) ଉଭୟଙ୍କର ଅଭେଦ [ଏକତା] ବୋଲି ବେଦରେ (ଶାସ୍ତ୍ରରେ) ଅଛି । ଏ (ଏକଥା) ଅଧାଦାରୁ (ଅନୁମାନ କରି ବୁଝିବାରୁ ବା ଯୋଗ କରି ବୁଝିବାରୁ) । ନିର୍ବେଦରେ—ଉଦାସୀନ ଭାବରେ ।

କି ଭାଗ୍ୟଁ ହେଲା ମୋତେ ପରାପତ ରେ । ଆଜଯାଏଥିଲି କାହିଁ ଗୁପତରେ ଯେ
କରିବଇଁ ଯୋଗିନୀ ଆଚରଣକୁ । ତୁଣ୍ଡେ କରି ସେ ନାମ ଉଚ୍ଚାରଣକୁ ଯେ ॥
ପର୍ଯ୍ୟଟନ କରିବି ଏ ଧରଣୀକି । ଶୁଣି ଦୟା କରିବେ ଏ ଆରତିକି ଯେ ।୧୩।
ଦୂର କଲାନି ଲାଜ ଧ୍ରୁବ ଲୋକରେ । ଅପକୀରତି ଭରୁ ଧ୍ରୁବଲୋକରେ ଯେ
ମୋ ମନ ହୋଇଲା ତ ମତ୍ତବାରଣ । କି କରିବି ନୋହିଲା କରି ବାରଣ ଯେ ॥
ଶ୍ରବଣରେନାହିଁ ତ ମୋରରସନା । କି ସ୍ୱାଦୁ ଲାଗି ବୋଲେଆନେ ରସ ନା ଯେ
ରସନାରେ ମୋହର ନାହିଁ ତ ଶ୍ରୁତି । କି ଶୁଣି କରି ନ ଗଣିଲି ତ ଶ୍ରୁତି ଯେ ।୧୫।
ଦେହ ଉପରେ ସିନା ମନାଧିକାର । ସେହି ଦେଖିଲା ନାହିଁ କଲେ ଧିକ୍କାର ଯେ ।
କେ ଜାଣି ତହୁଁ ପାଇଲି କି ପଦାର୍ଥ । ଜାଣୁ କି କହ ସଖି କୃଷ୍ଣ ପଦାର୍ଥ ଯେ ॥
କ୍ଷଣେ ବସିଲି ନାହିଁ ମୁହିଁ ନି-ଦରେ । ତୁଣ୍ଡ ବାହାର ଶୋଇଥିଲେ ନିଦରେ ଯେ
ଆନ କିଛି ନ ଆସେତହିଁ ବାହାରେ । ଯାହିବୋଇଲେ କୃଷ୍ଣନାମବାହାରେ ଯେ॥
ମୁଁ କରିଛି ଗୁପତ ନିଧି ବିଧିରେ । ବଳେ ଉଛୁଳି ନ ରହୁଛି ବିଧିରେ ଯେ ।
ଖ୍ୟାତ ହେଲେ ମରିବି ମୁଁ ମନ୍ଦାକ୍ଷରେ । କାହା ମୁଖ ଚାହିଁବି ଏ ମନ୍ଦାକ୍ଷରେ ଯେ

---

୧୨—କର୍ମଦାରଣ···ହୃଦସ୍ଥ କରିତ ପକାଉଅଛୁ । କାମ ଜନକ—କନ୍ଦର୍ପର ପିତା (ବିଷ୍ଣୁ) ଅଟଇ କି ? କିମ୍ବା (ଅକଥନୀୟ) କନ୍ଦର୍ପର ଉଦ୍ରେକକାରୀ । ପରାପତ—ପ୍ରାପ୍ତ ।

୧୩—ଯୋଗିନୀ ଆଚରଣକୁ—ସନ୍ୟାସିନୀ ଆଚାର ବା ବ୍ରତକୁ । ଧରଣୀକି—ଧରଣୀ, ପୃଥିବୀକୁ । ଆରତି—ଆର୍ତ୍ତି, କ୍ଲେଶକୁ । ୧୨ ଛାନ୍ଦର ୧୩ ପଦ ଦେଖ ଓ ୪୮ ଛାନ୍ଦ ୩୬ ପଦ ଦେଖ, ଲାବଣ୍ୟବତୀ ୪୦ ଛାନ୍ଦ—୧୪ ପଦ ଦେଖ ।

୧୪—ଧ୍ରୁବ—ନିଶ୍ଚୟ । ଲୋକରେ—ସଂସାରରେ । ଅପକୀରତି—ଅପକୀର୍ତ୍ତି, ଅକୀର୍ତ୍ତି । ଭରୁ—ପୂର୍ଣ୍ଣ ହେଉ । ଧ୍ରୁବଲୋକରେ—ଧ୍ରୁବଲୋକ ପର୍ଯ୍ୟନ୍ତ ସମସ୍ତ ଜଗତରେ । ମତ୍ତବାରଣ—ପାଗଳା ହାତୀ । ବାରଣ—ନିଷେଧ ।

୧୫—ମୋର କାନରେ ଜିଭ ନାହିଁ । ସେ କିପରି ସ୍ୱାଦୁ ଲାଗି ଅନ୍ୟ ବିଷୟରେ ରସ ନାହିଁ ବୋଲି କହୁଛୁ । ମୋର ରସନା [ଜିଭ]ରେ ଶ୍ରୁତି [କାନ] ନାହିଁ ତ । କି (କଣ) ଶୁଣି କରି ଶ୍ରୁତି (ବେଦକୁ) ଗଣିଲି (ଖାତିର କଲି) ନାହିଁ ।

୧୬—ମନାଧିକାର—ମନର ଅଧିକାର । [ଏହା ପ୍ରକୃତ ଓଡ଼ିଆ ସନ୍ଧି । ଆଜିକାଲି ପଣ୍ଡିତମ୍ମନ୍ୟ ସାହିତ୍ୟିକମାନେ ସଂସ୍କୃତର ଦ୍ୱାହି ଦେଇ ଏପରି ସନ୍ଧି କରୁ ନାହାନ୍ତି] । ଧିକ୍କାର—ତିରସ୍କାର । କୃଷ୍ଣ ପଦାର୍ଥ—କୃଷ୍ଣ ଶବ୍ଦର ଅର୍ଥ ବା କି ଦ୍ରବ୍ୟ ।

୧୭—ନି-ଦରେ—ନିର୍ଭୟରେ । ନିଦରେ—ନିଦ୍ରାରେ । ତହିଁ ବାହାରେ—ତାହା ଛଡ଼ା । ଯାହି—ଯାହା କିଛି ।

୧୮—ନିଧି ବିଧିରେ—ନିଧି (ଧନ) ପ୍ରକାରରେ ମୁଁ ଲୁଚାଇ ଅଛୁ । ବିଧୀରେ—ବିଶେଷ ଧୀର ଭାବରେ । ବିଧିରେ—ନିୟମରେ । ନିଧି—କୁବେରଙ୍କ ନବନିଧି—ମହାପଦ୍ମ, ପଦ୍ମ, ଶଙ୍ଖ, ମକର, କଚ୍ଛପ, ମୁକୁନ୍ଦ, କୁନ୍ଦ, ନୀଳ,

ଧିକ ତ ହେଲା ପତିବରତ ଋଣୀ । ପୋଡ଼ିଯାଉ ହେବାର ବରତରୁଣୀ ଯେ ।
ମୁଁ କେ, କାହା ନାମରେ କଲି ଧିଆନ । କରୁଁ କରୁଁ ବସ୍ତୁର ହେଲା ଧୀ ଆନ ଯୋ
କରେ ଚନ୍ଦ୍ର ଧରନ୍ତି କାହିଁ ବାମନ । ଏ ବସ୍ତୁର କରୁଛି କାହିଁ ବା ମନ ଯେ ।
ମୃଗତୃଷ୍ଣାକୁ ମଣିଅଛି ନୀର ତ । ଆଶ ନାଶ ନୋହିଲା ମୋର ନିରତ ଯେ ।୨୦।
ଶୁଣି ସଜନୀ କହେ ସୁ ରମଣୀକି । ଦେଲୁ କେଇ ମନକୁ ଚିନ୍ତାମଣିକି ଯେ ।
ଶୁଣିଛୁ ବନେ ମୁନି ଋଷିଭାରତୀ । କୃଷ୍ଣଚରଣ ଦାସୀ ଲକ୍ଷ୍ମୀ ଭାରତୀ ଯେ ।୨୧।
ସେ କି ? ଆନ କେ ତାଙ୍କ ନାମ ବହଇ । ନାମରେ ସୁଧାସ୍ୱାଦୁ ନଦୀ ବହଇଯେ ।
ତହିଁ ମଜ୍ଜିଲେ ତୋର ଯିବ ପ୍ର-ତାପ । କେ ଜାଣିଛି ଅଚିହ୍ନକର୍ମା ପ୍ରତାପ ଯେ ।।
କେତେ ଆଶ୍ଚର୍ଯ୍ୟ କଥା ମନେ କର ରେ । ବହିବଳେ ସାଗରଥିଲା କରରେ ଯେ
ପଦକେ ନଭ ପୁଣି ଚୋଡ଼ା ଯାଇଛି । ବହି କଲେ ମିଳଇ ମନେ ଯା ଇଚ୍ଛି ଯେ।।
ଏ ରୂପେ କହି ମନ ବୋଧି ରାଧାର । ଜାଣି ସଖୀର ବାଞ୍ଛା ସେ ନିରାଧାର ଯେ
ଭରସା ଦେଇ କରି ସେ ସୁମତିକ । ଉପାସ୍ୱରେ ରଖିଲା ନିଜ ମସ୍ତକ ଯେ ।୨୪।

---

ଝଙ୍କ । କେତେକ ମହାପଦ ଓ ପଦ୍ମକୁ ଏକ ଧରି ଆଠନିଧି ବୋଲି କୁହନ୍ତି ।
ଖ୍ୟାତ—ପ୍ରକାଶିତ । ମନ୍ଦାକ୍ଷରେ—ଲଜ୍ଜରେ । ମନ୍ଦାକ୍ଷରେ—ମନ୍ଦ (ପୋଡ଼ା) ଆଖିରେ ।

୧୯—ପତିବରତ-ଋଣୀ—ପତିବ୍ରତାପଣର ଧାରୁଆ, ପତିବ୍ରତାପଣ ଗୁଡ଼ିବା ହେତୁ । ବରତରୁଣୀ—ଶ୍ରେଷ୍ଠ ସ୍ତ୍ରୀ । ଧିଆନ—ଭାବନା । ଧୀ—ବୁଦ୍ଧି । ଆନ—ଅନ୍ୟ ପ୍ରକାର ହେଲା ।

୨୦—ମୃଗତୃଷ୍ଣାକୁ—ମରୀଚିକାକୁ, ମିଛଜଳକୁ । ସୂର୍ଯ୍ୟକିରଣରେ ଜଳ ଭ୍ରାନ୍ତି । ନୀର—ପାଣି । ଆଶ—ବାଞ୍ଛା । ନିରତ—ସବୁବେଳେ ।

୨୧—ସୁ-ରମଣୀ—ଉତ୍ତମ ସ୍ତ୍ରୀ ରାଧା । ଚିନ୍ତାମଣି—କୃଷ୍ଣଚନ୍ଦ୍ର । ଋଷିଭାରତୀ—ମୁନିଙ୍କ ବାକ୍ୟ, ଦୁର୍ବାସା ଋଷିଙ୍କ କଥା । ଲକ୍ଷ୍ମୀ ଓ ଭାରତୀ (ସରସ୍ୱତୀ) ।

୨୨—ସେ କି ? ସେ କି ଆଶ୍ଚର୍ଯ୍ୟ କଥା ବା ସେ କି ଆଶ୍ଚର୍ଯ୍ୟ ପୁରୁଷ । ଆନ କେ—ଆଉ କିଏ ?

୨୩—ପ୍ରତାପ—ଅଧିକ କାମ ପୀଡ଼ା ଓ ଦେହର ତାତି । ଅଚିହ୍ନକର୍ମା—ଅଦ୍ଭୁତ କାର୍ଯ୍ୟକାରୀ ଈଶ୍ୱରଙ୍କର । ପ୍ରତାପ—ପ୍ରଭାବ ।

୨୩—ସାଗର—ସମୁଦ୍ର । କରରେ—ହାତରେ । ଅଗସ୍ତି ଋଷିଙ୍କ ହାତରେ ସମୁଦ୍ରସାକର ପାଣି ରହିଥିଲା । ସାତସିନ୍ଧୁ ଚଳୁ ଭିତରେ ରହିଛୁ—ଲ—୮—୭୧ । ପୁନଶ୍ଚ ଲ-୧୪ ଛାନ୍ଦ ୧୫—୨୧ । ପଦକେ—ଗୋଟିଏ ପାଦରେ । ନଭ—ଆକାଶ । ବାମନ ଅବତାରରେ ଗୋଟିଏ ପାଦରେ ଆକାଶ ମାଡ଼ି ଯାଇଥିଲେ ।

୨୪—ସେ ନିରାଧାର (କୃଷ୍ଣ) ସଖୀର (ରାଧାର) ବାଞ୍ଛା ଜାଣି କମ୍ବା ସଖୀର ନିରାଧାର (ନିଶ୍ଚିତ) ବାଞ୍ଛା ଜାଣି କମ୍ବା—ସୁମତିକ (ରାଧାଙ୍କୁ) ନିରାଧାର (ପରମେଶ୍ୱରଙ୍କ) ଭରସା ଦେଇ ।

କରି ନବାନୁରାଗ ଭାବ ରଚିତ । ତୋଷ ନୋହେ ସାମନ୍ତସିଂହାର ଚିତ୍ତ ଯେ ।
ମିଳନ କରାଇଲେ ରାଧା ହରିଙ୍କି । ଲଭିବ ଆନନ୍ଦ ସୁଖଲହରୀକି ଯେ ।୨୫।

---

ଦଶମ ଛାନ୍ଦ

## ଶ୍ରୀକୃଷ୍ଣଙ୍କ ପଟ୍ଟ-ଅବଲୋକନ

ଆଦ୍ୟ-ପ୍ରାନ୍ତାନୁପ୍ରାସ

ରାଗ—ଆହାରି ( ବାଳ ଚନ୍ଦ୍ରଧରା-ବାଣୀରେ )

ଧୀରେ ଶୁଣ ଏ ଉତ୍ତରୁ ରସ । ଧୀରେ ଭଜ ବିଶାଖା ହୋଇ ବିରସ ॥
ବ୍ରଜ-ପାକରେ କରେ ଅନ୍ୱେଷଣ । ବର-ବରନାର ଯିବାକୁ କଷଣ । ୨ ।
ଦିନେ ନାନ୍ଦୀମୁଖୀ ଭେଟି ସୁଯୋଗରେ । ଦିନେ ବିଶାଖା କହଇ ତା ଆଗରେ॥
ସଜନୀକ ଆମ୍ଭର କ ବ୍ୟାଧି ହେଲା । ସଜ ଲାଗି ଆଦର କଲେନ ହେଳା ।୪।
ପୂର୍ଣ୍ଣମାସୀ କୃଷ୍ଣନାମ ଶୁଣାଇଲେ । ପୂର୍ଣ୍ଣ ଚିନ୍ତାରେ ରାଧାଙ୍କୁ ଭସାଇଲେ ।୫।
ଶ୍ରବଣ କରି ସେ ନାମ ହୃଦେ ଧରି ।ଶ୍ରବଣ କାହିଁ ନ ଦେଲେ ଜବାଧରି ।୬।
ଆନ ଆନନୁଁ ନୁହଇ ତା ବାହାର । ଆନନ୍ଦ କ ହେବ ବିନ୍ଧ ନୋହେ ହାର ।୭।

---

୨୫—ନବାନୁରାଗ—ପୂର୍ବରାଗରେ ନାୟକଙ୍କ ଠାରେ ଅନୁରକ୍ତ ଜନ୍ମିବା ବିଷୟ ।

---

୧—ଧୀରେ—ପଣ୍ଡିତମାନେ । ଧୀରେ—ବୁଦ୍ଧିରେ । ବିରସ—ଦୁଃଖିତ ।

୨—ବ୍ରଜପାକରେ—ଗୋପପୁରପାକରେ । ବରବରନା—ସୁନ୍ଦରୀ ରାଧାଙ୍କର । କଷଣ—କଷ୍ଟ ।

୩—ନାନ୍ଦୀମୁଖୀ —ନାନ୍ଦୀମୁଖୀ ଗୌରବର୍ଣ୍ଣା ପଟ୍ଟବସ୍ତ୍ରଧାରିଣୀ । ସାନ୍ଦୀପନିଃ ପିତା ତସ୍ୟା ମାତା ଚ ସୁମୁଖୀ ସତୀ ॥ ଭ୍ରାତା ମଧୁମଙ୍ଗଳୋଽସ୍ୟାଃ ପୌର୍ଣ୍ଣମାସୀ ପିତାମହୀ । ନାନାରତ୍ନଭୂଷିତାଙ୍ଗୀ କୈଶୋରବୟସୋଜ୍ଜ୍ୱଳା ॥ ନାନା ସନ୍ଧାନକୁଶଳା ନାନାଶିଳ୍ପବିଧାୟିନୀ । ଦ୍ୱୟୋର୍ମିଳନନୈପୁଣ୍ୟା ସଦାପ୍ରେମ-ଯୁତା ଭବେତ୍ । ରାଧାକୃଷ୍ଣଗଣୋଦ୍ଦେଶଦୀପିକା ।

ଦିନେ—ଦୁଃଖିତ ଭାବରେ ।

୪—ବ୍ୟାଧି—ରୋଗ । ସଜ (ବେଶଭୂଷା) ଲାଗି (ପିନ୍ଧିବାରେ) ଯେଉଁ ଆଦର ଥିଲା (ସେଥିରେ) ହେଳା କଲେଣି ।

୬—ଜବାଧରି—ମନ୍ଦାର ଫୁଲ ପରି ଲାଲ ଓଠ ଯାହାର—ରାଧା ଶ୍ରବଣ—କର୍ଣ୍ଣ । ୭ । ଆନନୁଁ—ମୁହଁରୁ । ହାର—ମାଳା ।

ବରସାଧ୍ୱୀ ତୁମ୍ଭେ ତ ପୁଣି ସୁଜାଣ । ବରାଙ୍ଗୀ ବ୍ରତ ପାଇଁ କ କହୁ ଜାଣ ॥୮॥
ହସି କହେ ନାନ୍ଦୀମୁଖୀ ଏ ବଚନେ । ହଂସୀଗତ ବ୍ୟାଧି ଯିବ ଏ ପାଚନେ ॥
ନାଗର କୃଷ୍ଣ ସଙ୍ଗରେ ମିଳାଇବ । ନାଗକେଶର ସୁରସେ ମଣ୍ଡାଇବ ।୧୦।
ରୁଚ ପଦ୍ମିନୀ ମୂଳ ତହିଁ ପଡ଼ିବ । ରୁଚିର ପରପାକରେ ସଜାଡ଼ିବ । ୧୧ ।
ସୂଚିକାରସ ସଂଯୋଗ କରିବଟି । ଶୁଚି ହୋଇ ପିଉ ରାଧା, କହୁବଟି ।୧୨।
ଯିବ ଦେହଦାହତାପ, ଏହା କର । ଜୀବନସଙ୍ଗୀ ତୁମ୍ଭେ ସମ୍ବାନକର ।୧୩।
ବିଶାଖା ବୋଲେ ଏ ଦ୍ରବ୍ୟ ସୁଦୁର୍ଲଭ । ବିଶାରଦ ବୈଦ୍ୟ ବିନା କ ସୁଲଭ ॥
ଆଣି ଦେଲେ ନାନ୍ଦୀମୁଖୀ ଏବଚନେ ଆନ ମୁଁ ପଦାର୍ଥେ ଦେବି ତା ରୋଚନେ
ପୁରକୁ ନେଇ ସେ କୃଷ୍ଣପଟ୍ଟ ଆଣି । ପୁରତେ ମେଲନ୍ତେ ରହେ କାହା ଆଣି ॥

---

୮—ବରସାଧ୍ୱୀ—ବଡ଼ ସତୀ । ସୁଜାଣ—ସୁବିଜ୍ଞ । ବରାଙ୍ଗୀ—ସୁନ୍ଦରୀ ରାଧା । ହଂସୀଗତ—ହଂସୀପରି ଗ୍ମନ ଯାହାଙ୍କର ରାଧା :—

୯—ପାଚନେ—ଔଷଧରେ ।

୧୦—୧୨—ନାଗର—ଶୁଣ୍ଠୀ । କୃଷ୍ଣ—ମରୀଚ । ନାଗ-କେଶର ସୁରସେ—ନାଗେଶ୍ୱର । ଫୁଲ ରସରେ ରୁଚ—ଟଙ୍କ ବା ଲୁଣ । ପଦ୍ମିନୀ ମୂଳ—ପଦ୍ମମୂଳ । ରୁଚିର ପରପାକରେ—ଉତ୍ତମ ସିଦ୍ଧ କରି । ସୂଚିକାରସ—କେତକୀ ରସ ବା ସୂଚିକାଭରଣ ଔଷଧ କରି । ବଟି—ବଟିକା । ଶୁଚି—ଶୁଦ୍ଧ ହୋଇ । ଅନ୍ୟପକ୍ଷରେ—ନାଗର [ ବିଳାସୀ ] ଶ୍ରୀକୃଷ୍ଣଙ୍କର ସାଙ୍ଗରେ ମିଳାଇବ । ନାଗ କେଶର—ନାଗ—ସର୍ପ, ସେମାନଙ୍କର କ [ଯମ] ଗରୁଡ଼, ତାହାର ଈଶ (ଶ୍ରୀକୃଷ୍ଣଙ୍କର) ସୁରସରେ ଅଥବା—ନାଗକେଶ ( ଶ୍ରୀକୃଷ୍ଣ ) ରସ୍ତୁ ( ରସିବାରୁ ) ରସେ ( ସମ୍ଭୋଗରେ ) ମଣ୍ଡାଇବ । ଅତଏବ ପଦ୍ମିନୀ [ ପଦ୍ମିନୀ ଜାତିର ସ୍ତ୍ରୀ, ରାଧା ] ଙ୍କର ରୁଚ ( ଅନୁରାଗ ରୂପକ ) ମୂଳ କମ୍ବା ରାଧାଙ୍କର ରୁଚ ( ଅନୁରାଗ ) ମୂଳ [ନିଶ୍ଚୟ] ତହିଁରେ ପଡ଼ିବ । ରୁଚିର [ ଶୋଭାର ] ପରପାକରେ ( ପରିଣତ ଅବସ୍ଥାରେ ) ଅର୍ଥାତ୍ ଉତ୍କୃଷ୍ଟ ଶୋଭାରେ ସଜାଡ଼ିବ [ ସଜ୍ଜିତ କରିବ ] । ସୂଚିକା ( ଦୂତିକାଦ୍ୱାରା ) ରସରେ ସଂଯୋଗ କରିବ । ରାଧା ଶୁଚ [ ଶୃଙ୍ଗାର ରସକୁ ] ପିଉ ( ଭୋଗ କରୁ ) ।

ବୈଦେହୀ ପାଚନ ରସରତ୍ନାକର ବାରଚନକୁ ଅର୍ଚ୍ଚନ ଚନ୍ଦ୍ର—ବୋ୩୫-୨୪-

୧୩—ସମ୍ବାନକର—ସଖୀମାନେ । ୧୪—ବିଶାରଦ—ଦକ୍ଷ, ନିପୁଣ ।

୧୫—ରୋଚନେ—ରୁଚିପାଇଁ ।

୧୬—ପୁରକୁ—ଘରକୁ । କୃଷ୍ଣପଟ୍ଟ—ଶ୍ରୀକୃଷ୍ଣଙ୍କର ଚିତ୍ରପଟ୍ଟ । ଆଣି—ଟାଣ ପଣ । ବିଦଗ୍ଧମାଧବର ପ୍ରଥମଅଙ୍କରେ ଅନ୍ୟପ୍ରକାର ଲିଖିତ ଅଛି । ପୌର୍ଣ୍ଣମାସୀ ନାନ୍ଦୀମୁଖୀକି କହିଲେ, "ତୁ ଯାଇ ବିଶାଖାକୁ କହ, ସେ କୃଷ୍ଣଙ୍କ ଚିତ୍ରପଟ୍ଟ ନିର୍ମାଣ କରୁ ।"

ପୂର୍ବେ ମଦ୍‌ଗିରା ସଧନ୍ୟତାମାଲେଖ୍ୟବିଚକ୍ଷଣା ବିଶାଖା
ଯଥେଷ୍ଟଂ ସ୍ୱସଖୀନେତ୍ରାରବିନ୍ଦସ୍ତୋରନନ୍ଦାୟ ନନ୍ଦସୂନୋଃ ପ୍ରତିଚ୍ଛନ୍ଦଂ ନିର୍ମାତୁ ॥

ବିଧାନ କେ କଲା ବିଶାଖିକା ଭାଷେ । ବିଧାତାକୃତ୍ୟ ପରିଏ ନ ଆଭାସେ ।
ପଟ କି ଏ ପଟମୂର୍ତ୍ତି କି କପଟ । ସତତ ନୋହିବ ଦେଖି କେ ଲମ୍ପଟ ।୧୮।
ଧୀରେ ଶୁଣ ନାନ୍ଦୀମୁଖୀ କହେ ଗିର । ଧୀରେ ଭାବ କାନ୍ତ ଏ ଟି ତୋ ସଙ୍ଗୀର
ତାତ ଦତ୍ତ କଲା ଦନୁ କହିଛନ୍ତି । ତା ତଳପା ତଳେ ରାଧା ରହିଛନ୍ତି ।୨୦।
ପରମେଷ୍ଠୀ ପୂର୍ବେ କରୁଥିଲା ସେବା । ପରମପଟକୁ ଲେଖିଥିବ ସେ ବା ।୨୧।
ପରସନ୍ନେ ଦେଇଥିଲେ ମୋ ପିତାଙ୍କୁ । ପରତେ ମୁଁ ତାତ କହିବାରେ ତାଙ୍କୁ ॥
ଭାଷିଲା ବିଶାଖା ଏହା ଯା ବୋଇଲା । ଭାସିଲା ଜନକୁ କୂଳେ ଲଗାଇଲା ॥
ଆନନ୍ଦ ସେ ପଟ ଘେନ ଏହା ଭାଷି । ଆନନ ପ୍ରସନ୍ନ କରି ପିକଭାଷୀ ।୨୪।
ପୂରେ ପ୍ରବେଶ ରାଧାର ଯାଇଁ ବେଗେ । ପୂରେ ହା ରବେ ସେ ପୁଷ୍ପ ଉଦବେଗେ
ସତରଲନେତ୍ରା ମୁଖକଳାକରୁଁ । ସତତ ଉଛରେ ଗୋପ୍ୟ କରୁଁ କରୁଁ ॥
ସଖୀ ବେଢ଼ି କରୁଛନ୍ତି ଉପଚାର । ସହି ନୋହେ କେ ବୋଲେ ଏ କି ପ୍ରଚାର ॥
ସଜସରୋଜବଦନ କରି ନତ । ସଜନୀ ଅନବରତେ ଅଜ୍ଞାନ ତ । ୨୮ ।
ଜଟିଳା ପୁଛନ୍ତେ ସଖୀ ବ୍ୟାଧିଛଳେ । ଜଟିଳେ ଶ୍ରୀରାଧାର ସ୍ନେହ ବହଳେ ॥

---

୧୭—ବିଧାନ—ନିର୍ମାଣ । କେ—କିଏ । ବିଧାତା···ଆଭାସେ—ବିଧାତା କଲା ପରି ଜଣାଯାଉ ନାହିଁ । କୃତ୍ୟ—କାର୍ଯ୍ୟ ।

୧୮—କପଟ—କୁହୁକ, ଛଳ । ସତତ—ସବୁବେଳେ । ଲମ୍ପଟ—ଆସକ୍ତ ।

୧୯—ଧୀରେ—ବୁଦ୍ଧିରେ; ଭାବ—ଜାଣ । କାନ୍ତ—ପ୍ରିୟ, ସ୍ୱାମୀ । ସଙ୍ଗୀର—ସଖୀ ରାଧାର ।

୨୦—ତାତ—ପିତା; ସାନ୍ଦୀପନ ଋଷି ନାନ୍ଦୀମୁଖୀଙ୍କର ପିତା ଅଟନ୍ତି ।

୨୧—ପରମେଷ୍ଠୀ—ବ୍ରହ୍ମା, ପରମପଟକୁ—ଉତ୍କୃଷ୍ଟ କୃଷ୍ଣଙ୍କର ଚିତ୍ରପଟକୁ ।

୨୨—ପରତେ—ଚିହ୍ନେ । ୨୪ । ପିକଭାଷୀ—ବିଶାଖା ।

୨୫—ପୂରେ—ପୂର୍ଣ୍ଣ ହେଉଥିଲା । ହା ରବେ—ହାହାକାର ଶବ୍ଦରେ । ପୁଷ୍ପ—ଗୃହ । ଉଦବେଗେ—ଆକୁଳତାରେ ।

ପୁଷ୍ପ ପୂରିଲା ଏହିକାଳେ ହା ରବେ ତହିଁ ନ ସହି ସହିଗଲେ ଧାଇଁ । ଲ ୨୨—୧୫ ।

୨୬—ଗୋପ୍ୟ କରୁଁ କରୁଁ ( ଘୋଡ଼ାଇ ରଖିଲେ ସୁଦ୍ଧା ) ସତରଲନେତ୍ରା—ଚଞ୍ଚଳାକ୍ଷୀ ( ରାଧାଙ୍କର ) ମୁଖ କଳାକରୁ ( ମୁଖ ଚନ୍ଦ୍ରରୁ ) ସବୁବେଳେ ଉଛାରିତ ହେଉଥିଲା ।

୨୭—ଉପଚାର—ବିରହ ତାପ ଶାନ୍ତି ପାଇଁ ଶୀତଳ ଉପାୟ ।

୨୮—ସରୋଜ—ପଦ୍ମ ।

୨୯—ବ୍ୟାଧିଛଳେ—ରୋଗ ଛଳନାରେ । ଜଟିଳେ—ଭଣ୍ଡିଦେଲେ । ସ୍ନେହବହଳେ—ସ୍ନେହ ଓ ଶରଧାରେ ।

ଏଣୁ କାଳେ ବଣାଖା କହଇ ଯାଇଁ । ଏ ଘେନ କଥା ଭୃମ୍ବର ତ ନ ଯାଇ ॥
କୁଳଟାମାନଙ୍କୁ ନୋହେ ଏ ଦୂଷଣ । କୁଳସ୍ତ୍ରୀର ଶାନ୍ତକ ଏ ଅଭୂଷଣ ॥
ଜାତ ସୁଧାବାକ୍ୟ, ଧୈର୍ଯ୍ୟ ନ ରହଇ । ଜାତବେଦବତ ହୃଦ କେ ଦହଇ ॥
ବାସବ-ମୋହନର ଶୁଣି ଏ ଭାରତୀ । ବାସରୁ କାଢ଼େ ବଣାଖା ସେ ମୂରତି ॥
ଅନାଇଁ ସେ ପଟ ସୁଧା ସ୍ତମ୍ଭୀଭୂତ । ଅନାସ୍ୱନ୍ତେ କହେ କ ଏ ଅଦଭୁତ ॥
ମାନସ ମୋର ନେଲା ତ ଆକରଷି । ମାନ ରଖିବ କେ ପୁଣି ଏଥି ରସି ॥
ଅଚ୍ଛ ନା ଏରୂପ ମିଛେ ଦେଖାଇଲ । ଅଚ୍ଛିଦ୍ର ଲୋଭ ମୋର ତ ବଢ଼ାଇଲ ॥
ବ୍ରହ୍ମା ସୃଷ୍ଟିରେ ନାହିଁ ଏ ଅନୁରୂପ । ବ୍ରହ୍ମାଣ୍ଡ ବାହାର ପ୍ରତେ ଏ ସ୍ୱରୂପ ॥
ସର୍ବକଳାବନ୍ତ ଏ ପୁରୁଷୋତ୍ତମ । ସର୍ବପର ଦେଖିଲେ ଛାଡ଼ିବ ଭ୍ରମ ।୩୮।
ଅବଶେ ନାଶୀ ଅବଧ ଲହି ବହି । ଅବଧ ବଧକୁ ଅଛି ଏହା ବହି ॥
କରଇ ବରୁର ଏହୁ ଅତ ଚଇ । କର ଥସ୍ୱେ କେଡ଼େ ଯେ ଲେଖିଲା ଚଇ ॥
କାମପୀଡ଼ା ନ ଥିବ ଯାହାର ଚତ୍ତେ । କାମନା କରୁଛୁ ଶକ୍ୟ ସେ ରଚତେ ॥

---

୩୧—କୁଳଟା—ଅସତୀ । ଦୂଷଣ—ଦୋଷ । କନ୍ତୁ ଅଭୂଷଣ—ଅସୁନ୍ଦର ।

୩୨—ସୁଧାବାକ୍ୟ ଜାତ—ସୁଧା କହିଲେ । ଜାତବେଦବତ—ଅଗ୍ନି ପରି । କେ—କଏ ।

୩୩—ବାସବମୋହନର—ଇନ୍ଦ୍ରଙ୍କର ମୋହନକରୀ ସୁଧାଙ୍କର । ଭାରତୀ—ବଚନ । ବାସରୁ—ଲୁଗାରୁ ।

୩୪—ସ୍ତମ୍ଭୀଭୂତ—ନିଶ୍ଚଳ, ଜଡ଼; ଅଦଭୁତ—ଆଶ୍ଚର୍ଯ୍ୟ । ୩୬—ଅଚ୍ଛିଦ୍ର—ସମ୍ପୂର୍ଣ୍ଣ ।

୩୭—ଅନୁରୂପ—ସମାନ, ତୁଲ୍ୟ । ବ୍ରହ୍ମାଣ୍ଡ ବାହାର—ଅଲୌକିକ । ପ୍ରତେ—ପ୍ରତୀତ (ବୋଧ) ହୁଏ ।

୩୮—ସର୍ବକଳାବନ୍ତ—୬୪ କଳା ବା କାମକଳାଯୁକ୍ତ । ସର୍ବପର—ଶିବଶତ୍ରୁ, କନ୍ଦର୍ପ । ଭ୍ରମ—ଗର୍ବ ।

୩୯—ଅବଶେ—ଅବଶ୍ୟ ବା ବାଧ୍ୟ ହୋଇ । ବହି—ବିଧାତା । ନାଶୀଅବଧ—ଅବଧ୍ୟ । ଲହି—ଲେଖି । ବହି—ବିଧାନ କରିଅଛି । ଏହାର କ ଲବଧ କରି ଅବଧ ବଧ ବ୍ୟାଧଙ୍କୁ କହିବା କି ହେତେ । ଲ-୨୨—୬ ।

୪୦—ଅତଚତ୍ର—ଆଶ୍ଚର୍ଯ୍ୟ । ଯେ ଚତ୍ର—ଛବି ଲେଖିଲା ସେ କେଡ଼େ—ଏହା ଥସ୍ୱେ (ସ୍ଥିର) କର ବା ଯେ ଚତ୍ର ଲେଖିଛି ତାର ହାତ କେଡ଼େ ସ୍ଥିର ।

୪୧—କାମନା କରୁଚ—ବରୁରୁଅଛି । ଶକ୍ୟ—ସମର୍ଥ । ରଚତେ—ରଚନା କରିବାକୁ ।

ପୁରୁଷ ଅବଶ ହେବ ଦେଖି ତାର । ପୁରୁଷାର୍ଥ ଧନ୍ୟ ଯେ ଲେଖିନ୍ତି ତାର ॥
ଘନରସ ମୂର୍ତ୍ତିମନ୍ତ ଏ ସାକ୍ଷାତ । ଘନରସ୍ୱରୂପ କି କରନ୍ତୁ ଖ୍ୟାତ ॥
ମଦନାର୍ବୁଦେ ଲକ୍ଷକୁ ନୋହେ ସମ । ମଦ ସରିଯିବ ଚାହିଁ ଏ ସୁଷମ ॥
କି ଚିତ୍ର ଭଙ୍ଗିମା ରୂପ ପ୍ରାଣ ହରେ । କଞ୍ଚିତ ଚିତ୍ତ ନ ରହେ ମୋ ଦେହରେ ॥
ସେ ସ୍ୱରୂପ ମୋ ଦେହେ ମିଶାଅ ଥରେ । ଶେଷ ହେଉ ତାପ, ଦେଖ, ତନୁଥରେ
କରୁଁ ନେଇ ସଜମାର ଲଦି ଶିରେ । କରୁଁ କୋଳ ସୁଖ ଦେଲ ସୁହାସୀରେ
ବାର ବାର ଧରାଇ ଉର ଉପର । ବାରବର୍ଷା ତାପ ଊଣା ତତପର ॥
ଆପଯୁକ୍ତ ନେବେ ପୁଣି କରୁଁ ତଳେ । ଆପଣା ମୂରତି ଦେଖେ ପାଦତଳେ ॥
ଭାଲେ ଧନ୍ୟ ଧନ୍ୟ ମୋର ପୁଣ୍ୟବର । ଭାଲେ ଲିହିଥିବ ଏହା ବେଦବର ॥
ସଜନି ଦେଖିଲେ ହେଲି ମୁଁ ଆରତ । ସଜଡ଼ାଇ ଆଣିଲେ କି ଏ ମୂରତ ॥
କଳ୍ପକେ ଏ ମୂରତି କି ଲେଖାଯିବ । କଳ୍ପେ କଳ୍ପନା କର କେ ସରଜିବ ॥
ଦୃଷ୍ଟି ଶ୍ରୁତିଗମ୍ୟ କାହିଁ ଏ ଅଛି କି । ଦୃଷ୍ଟି ଶ୍ରୁତିବିଦେ କହିବେ କଛି କି ॥
ସରଜନା ନ ଥିଲେ ଦେଖା ନ ଯାଏ । ସରସେ ମନକୁ ମୋର ଏ ମଜ୍ଜାଏ ॥

---

୪୨—ଅବଶ—ମୋହିତ । ତାର—କାନ୍ତ । ତାର ପୁରୁଷାର୍ଥ—ପୌରୁଷ ।

୪୩—ମୂର୍ତ୍ତିମନ୍ତ ଘନରସ— ଦେହଧାରୀ ଗାଢ଼ ଶୃଙ୍ଗାରସ । ଘନରସ୍ୱରୂପ—ମେଘମାଳାର ସ୍ୱରୂପ । ଖ୍ୟାତ—ପ୍ରକାଶିତ ।

୪୪—ମଦନାର୍ବୁଦେ—ଅର୍ବୁଦ ସଂଖ୍ୟକ ମଦନ । ଲକ୍ଷ୍ୟକୁ—ତୁଳନାକୁ । ସମ—ଯୋଗ୍ୟ । ମଦ—ଗର୍ବ । ସୁଷମ—ସୌନ୍ଦର୍ଯ୍ୟ ।

୪୫—ଭଙ୍ଗିମାରୂପ—ଭଙ୍ଗିଯୁକ୍ତ ସୌନ୍ଦର୍ଯ୍ୟ । କଞ୍ଚିତ—ଅଳ୍ପ ସମସ୍ତ ।

୪୮—ବାର ବାର—ବହୁତ ଥର । ଉର—ଛାତି । ବାରବର୍ଷା—ବାରବର୍ଷର ବାଧାଙ୍କର । ତତପର— ତାହା ପରେ ।

୪୯—ଆପଯୁକ୍ତ – ଜଳଯୁକ୍ତ, ନେତ୍ରକପୂର୍ଣ୍ଣ ।

୫୦—ଭାଲେ—ଚନ୍ଦ୍ରେ । ପୁଣ୍ୟବର—ଉତ୍କୃଷ୍ଟ ସୁକୃତ । ଭାଲେ—କପାଳରେ । ବେଦବର—ବିଧାତା ।

୫୧—ଆରତ—ଦୁଃଖିତ । ସଜଡ଼ାଇ—ତିଆରି କରି ।

୫୨—କଳ୍ପକେ—କଳ୍ପେ କାଳରେ, ଯୁଗ ଯୁଗରେ । କଳ୍ପେ—ବର୍ଣ୍ଣର କରେ । କଳ୍ପନା କର—ଭାବନା କରି । ସରଜିବ— ଗଢ଼ିବ ।

୫୩—ଦୃଷ୍ଟି ଶ୍ରୁତିଗମ୍ୟ—ଦେଖା ଶୁଣା । ଶ୍ରୁତିବିଦେ (ବେଦ ଜାଣିଥିବା ଲୋକେ ) କଛି ଅଂଶ (ଦୃଷ୍ଟି ) ଦେଖି ପାରିବେ କି ?

୫୪—ମୂର୍ତ୍ତି ସୃଷ୍ଟି ହୋଇ ନ ଥିଲେ କିପରି ଦେଖାଯାନ୍ତା ଓ ଚିତ୍ରପଟ ଲେଖା ହୁଅନ୍ତା ।

କାନ୍ତ ମୋ ଏ ହେବେ ହେବ ମୁଁ କଙ୍କଣ । କାନ୍ତବଦନା କହିଲେ ସତ୍ୟ କର ॥
ଅପ୍ରାପ୍ତ ହେଲେ ଆଶାରେ ଜୀବ ଯିବ । ଅପ୍ରାରବ୍ଧ କର୍ମ ମୋର କେ ଭୁଞ୍ଜିବ ॥
ସୁମନ୍ତି ଏମନ୍ତ ପାଣ୍ଡୁ ବମନରେ । ସୁମରଣା କରି ମଜ୍ଜେ ଉଚ୍ଛନ୍ନରେ ।୫୭।
ଅଭିନବ-ବସ୍ତା ରାଧା ଶ୍ରୀଚରଣ । ଅଭିମନ୍ୟୁ କବି କରେ ସୁମରଣ ।୫୮।
ଚଉପଠ ଦରଶନ ଛନ୍ଦ ସରେ । ଚଉ ଆଦ୍ୟ ପ୍ରାନ୍ତ ଯମକ ରସରେ ।୫୯।

---

## ଏକାଦଶ ଛାନ୍ଦ

## ଶ୍ରୀରାଧା ଲାଲସା ବିଳାପ

ରାଗ—ଭୈରବ

ରସ ବିଦୁଷେ ଏ ଛନ୍ଦ ରସ । ରସଲତା ହୋଇଣ ବିରସ ।
ରସଧର ଅଙ୍ଗ ଚିହ୍ନ ଗୃହିଁ ବୋଲେ କପା ଘନରସ ନ ବରଷ ହେ ସୁନ୍ଦର ॥
ହରଷରେ ସୁରସେ ବିହର । ହରବଇରି-ବେଦନା ହର ।
ହରିଣୀ ହୃଦସ୍ଥ କ୍ଷତ ହେଲା ପରି ବଢ଼େ ବ୍ୟାକୁଳ ମୋର ଦେହର,ହେ ସୁନ୍ଦର॥
ରାଗ-ବସନ୍ତଭୈରବ-ଗ ଓ ଛ; ଆଦ୍ୟପ୍ରାନ୍ତାନୁପ୍ରାସ; ରାଗ-ଭୈରବ ଇଚ୍ଛାବତୀ ବାଣୀରେ କ ଓ ଖ;

---

୫୫—କାନ୍ତ—ପତି । କାନ୍ତବଦନା—ସୁନ୍ଦରମୁହିଁ ରାଧା ।
୫୬—ଅପ୍ରାରବ୍ଧ କର୍ମ—ଯେଉଁ କର୍ମ ବା ପାପ ଅଦୃଷ୍ଟରୂପେ ଆତ୍ମାରେ ଅବସ୍ଥିତ ଏବଂ ଯାହାର ଭୋଗକାଳ ଉପସ୍ଥିତ ହୋଇ ନାହିଁ । ଏହା ଅନାଦି ଓ ଅନନ୍ତ । ଭକ୍ତିରସାମୃତସିନ୍ଧୁ ପୂର୍ବ ଲହରୀ ଦେଖ ।
୫୭—ବମନରେ—ଦୁଃଖରେ । ଉଚ୍ଛନ୍ନରେ—ବିହ୍ୱଳତାରେ ।
୫୮—ଅଭିନବ-ବସ୍ତା—ନୂତନ ବସ୍ତୁସ୍ଥା । ୫୯—ସରେ—ଶେଷ ହେଲା ।

---

୧— ରସ ବିଦୁଷେ—ରସ ଜାଣିଥିବା ଲୋକେ, ରସିକେ । ରସ—ଅନୁଗ୍ରହ କର । ରସଲତା—ରସବତୀ, ରାଧା । ରସଧର ଅଙ୍ଗଚିହ୍ନ—ମେଘପରି (ରସଧର —ଜଳଧର ମେଘ ଓ ରସମୟ କୃଷ୍ଣ) ଶ୍ୟାମଳ ଦେହ କୃଷ୍ଣଙ୍କର ଚିତ୍ରପଟକୁ । ଘନରସ—ମେଘର ଜଳ ଓ ଗାଢ଼ ଶୃଙ୍ଗାରରସ ।

୨—ଆନନ୍ଦରେ ମୋ ସହିତ ସୁରସେ (କ୍ରୀଡ଼ାରସରେ) ବିହାର କର । ହରବୈରି ବେଦନା ହର—ମହାଦେବଙ୍କ ଶତ୍ରୁ କନ୍ଦର୍ପର ପୀଡ଼ା ହରଣ କର । ହରିଣୀ (ମୃଗୀର) ହୃଦସ୍ଥ (କ୍ଷତ) ଶରଦ୍ୱାରା ବିଦ୍ଧ ହେଲେ ଯେପରି ବ୍ୟାକୁଳତା ବଢ଼େ, ସେହିପରି ମୋ ଦେହର ବ୍ୟାକୁଳତା ବଢ଼ୁଅଛି । ବ୍ୟାକୁଳ—ବ୍ୟାକୁଳତା ।

ମାନଶୀ କ ମୁଁ ତୁମ୍ଭ ସମାନ । ମାନ ନ କରବ କଥା ମାନ ।
ମାନସ ତାପ ଲେପକୁ ବେଗେ ହୁଅ ଥରେ ତୁମ୍ଭେ ଅମୃତସମାନ,ହେ ସୁନ୍ଦର ।।
ମନାଉଛୁ ହୋଇଛୁ ବମନା । ମନା କରବ ନାହିଁ କାମନା ।
ମନାସିଲେ ସଙ୍ଗ ଅଭିଳାଷ ଭୃଙ୍ଗ ତାହା ବାରଇ ଜନକ ସୁମନା, ହେ ସୁନ୍ଦର ।।
ସାର ଶୀତକାଳକୁ ନୀଶାର । ସାରଙ୍ଗକୁ ଯେମନ୍ତ ଆଶାର ।
ସାରସଲପନ ସେହ୍ନପରି ମୋର ହୃଦ ତାପହରୀ ଘନସାର, ହେ ସୁନ୍ଦର ।୫।
ଶର ମାର ଦହେ ଫୁଲଶର । ଶରଣ ମୁଁ ପାଦସାରସର ।
ସରଳ ହୃଦୟୁ ନର୍ଦ୍ଦୟୁ ହୋଇଲେ ବାନା ଉଡ଼ିବ ଅପଯଶର, ହେ ସୁନ୍ଦର ।୬।
କର ବଗ୍ଭର, ଏ କଳାକର କ-ର ଭୂଷଣ କଲେ ଶଙ୍କର ।
କରତାଉଅଛ ଅନୁଗତ ଜନେ ପୁଣି ଏ କ ସ୍ୱତ ଶ୍ରେଷ୍ଠଙ୍କର, ହେ ସୁନ୍ଦର ।୭।
ଭା-ସରୋଜମୁଖେ ସୁଧାଭାସ । ଭାଷ ଏତେକ, ଦୁଖେ ନ ଭାସ ।
ଭାସକର ପର ଦେହ ହୃଦପଦ୍ମ ତୋଷପାଇଁ ଏକଥା ଆଭାସ, ହେ ସୁନ୍ଦର ।୮।
ରସରାଜେ ନ ଦଅ ହରସ । ରସ, ପୀୟୂଷ-ଭାଷ ବରଷ ।
ରସବାଞ୍ଛା ପ୍ରତିବନ୍ଧିବାକୁ ମୋର କର ନାହିଁ ହୃଦ ଆଦରଶ, ହେ ସୁନ୍ଦର ।୯।

---

୩—ମାନଶୀ ମୁଁ—ମନୁଷ୍ୟ ସ୍ତ୍ରୀ ମୁଁ ତୁମ୍ଭ ସମାନ ହେବ କ ବା ମୁଁ ମାନ ବକ (ହରାଇ) ତୁମ୍ଭ ସମାନ ହେବ ? ମାନ—ଅଭିମାନ ।

କଥାମାନ—ତୁମ୍ଭ କଥା ସବୁରେ କମ୍ବା ମୋ କଥା ଘେନ । ମାନସତାପ ଲେପକୁ—ମନର ସନ୍ତାପ ଦୂର କରବାକୁ । ଅମୃତ ସମାନ—ଅମୃତ ପରି ଓ ଜଳ ପରି । ଜଳ ତାପ ନାଶ କରେ ।

୪—ବମନା—ଦୁଃଖିତା । କାମନା ତୁମ୍ଭ ଇଚ୍ଛା । ଭୃଙ୍ଗ—ଭ୍ରମର । ଅଭିଳାଷ—କାମନା, ଇଚ୍ଛା । ସୁମନା—ଫୁଲ । ।

୫—ନୀଶାର—ରେଜେଇ ପରି । ସାରଙ୍ଗ—ଚାତକକୁ । ଆସାର—ମେଘ ବୃଷ୍ଟିର ଧାର । ସାରସ ଲପନ—ପଦ୍ମ ମୁଖ । ତାପହରୀ—ପୀଡ଼ାନାଶକାରୀ । ଘନସାର—କର୍ପୂର ଓ ଜଳ ।

୬—ପଦସାରସର—ପାଦପଦ୍ମରେ । ବାନା—ପତାକା । ଅପଯଶ—ଅପକୀର୍ତ୍ତି, ନନ୍ଦା ।

୭—କଳାକର (ଚନ୍ଦ୍ର) ଅନୁସରବାରୁ ଶଙ୍କର (ଶିବ) ତାଙ୍କୁ କ-ର (ମସ୍ତକର) ଭୂଷଣ କଲେ ।

୮—ଭା—ସରୋଜମୁଖେ [କାନ୍ତିପୂର୍ଣ୍ଣ ପଦ୍ମମୁଖରେ] ସୁଧାରସ (ଅମୃତ ତୁଲ୍ୟ) । ଏତକ ଭାଷ (କୁହ) ତୁ ଦୁଃଖରେ ଭାସ ନାହିଁ । ଭାସକର—ସୂର୍ଯ୍ୟ । ଆଭାସ—ଜାଣ ।

୯—ରସରାଜେ ନ ଦଅ ହରଷ—କାମକୁ ଆଉ (ମୋତେ ପୀଡ଼ା କରବା ଦ୍ୱାରା) ହର୍ଷ ଦଅ ନାହିଁ । କମ୍ବା ରସରାଜେ—(ରସରାଜ ଅର୍ଥରେ ଓଡ଼ିଆରେ

ସରଜକ ତୁମ୍ଭେ ତ ରସର । ସରଘର ବର ହରଷର ।
ସର ବିପସିତ ଦାନ ଦେବାପାଇଁ ଇଚ୍ଛା ହେଉନାହିଁ ମାନସର, ହେ ସୁନ୍ଦର ॥
ପରମ ସୁଷମା ସ୍ୱରୂପର । ପରଚେ କି ମୁଁ ବାମା ଗୋପର ।
ପରତକ୍ଷେ ଗୃହୁଁ ଗୃହୁଁ ମନ ଧରେ ଲେଖେ ବିଚେଷ୍ଟା ରସକୂପର, ହେ ସୁନ୍ଦର ॥
ରଜନୀଶ ଦର୍ପଣ ନୀରଜ । ରଞ୍ଜନ ମୁଖେ ହାସ ସରଜ ।
ରଜ ସମ କୃପା କଟାକ୍ଷ କଟାରି ଯୋଗେ ଗୋପୀମଦନ ତରଜ, ହେ ସୁନ୍ଦର ॥
ପଦତଳେ ଅଛି ଇନ୍ଦ୍ରପଦ । ପଦ ପଦକ ଭାଷା ଆସ୍ପଦ ।
ପଦ ପରିହରି ଦେବ କାମଦେବ ଗୁପ୍ତ ପଦଘାତର ବିପଦ, ହେ ସୁନ୍ଦର ।୧୩।
ସଞ୍ଜ ବେଳୁଁ ସଜ କରି ଶେଯ । ସଜ ସୁମନେ ହୋଇବି ସଜ ।
ସଜନୀ ଜାଣିମେ ନାହିଁ ରସ ଦେବ ଥରେ ଟେକ ଶ୍ରୀମୁଖ-କୁଶଜ,ହେ ସୁନ୍ଦର ॥

---

ହୋଇଅଛ) ରସର ଅଧିକାରୀ ବା ରସିକଶ୍ରେଷ୍ଠ । କାହିଁକି ହର୍ଷ ଦେଉ ନାହଁ । ଏବେ ରସ—ଅନୁରକ୍ତ ହୁଅ । କମ୍ବା ରସପୀୟୂଷ—ରସାମୃତପୂର୍ଣ୍ଣ ବଚନ । ବରଷ—ବୃଷ୍ଟି କର—ତୁମ୍ଭର ରସଲେଶ ଇଚ୍ଛା ପ୍ରତିବିମ୍ବିବାକୁ [ପ୍ରତିଫଳିତ ହେବାକୁ] ମୋର ହୃଦୟକୁ ଆଦର୍ଶ (ଦର୍ପଣ) କରୁ ନାହିଁ ଅର୍ଥାତ୍ ତୁମ୍ଭର ରସ ଲେଶ କରୁ ନାହିଁ । ବୈ ୨୧ ଛ ୨° ଛାନ୍ଦ ଦେଖ । ୧୭ ପ, ଓ ୯ ପ ।

ରସର ସରଜକ—ରସ ଜନ୍ମାଅ । ସରଘର—ଗନ୍ଧାଘର ବା ଭଣ୍ଡାର । ବର—ଉତ୍କୃଷ୍ଟ । ସର ବିପସିତ—ରସ । ମାନସର—ମନରେ ।

୧୧—ପରମ ସୁଷମା ସ୍ୱରୂପର—ଅତି ସୁନ୍ଦର ରୂପ ଆପଣଙ୍କର ଗୋପର ବାମା । [ଗୋପ ସ୍ତ୍ରୀ, ଗଉଡୁଣୀ] ମୁଁ ପରଚେ [ପରିଚିତ] କି ? ଅଥବା ଗଉଡ଼ୁଣୀ ମୁଁ କିଣ ଆପଣଙ୍କୁ [ପରଚେ] ଚହ୍ନି ପାରିବ ? ରସକୂପର—ରସାଧାର ଆପଣଙ୍କ ଲେଖରେ ବିଚେଷ୍ଟା ଧରେ (ଭିନ୍ନ ଭିନ୍ନ ଅବସ୍ଥା ଲଭୁଅଛି) ।

୧୨—ରଜନୀଶ [ଚନ୍ଦ୍ର] ଦର୍ପଣ, ନୀରଜ [ପଦ୍ମ]; ଏମାନଙ୍କ ପରି ରଞ୍ଜନ [ସୁନ୍ଦର] ମୁଖରେ ହାସ ସରଜ (ସୃଷ୍ଟି କର) । ରଜସମ (ଅଣୁ ପରମାଣ) କୃପାକଟାକ୍ଷରୂପକ କଟାରି (ଟାଙ୍ଗିଆ) ଯୋଗେ (ଦ୍ୱାରା) ଗୋପୀମଦନ [ମୋର କାମପୀଡ଼ାକୁ] ତରଜ (ତଡ଼ି ଦିଅ) ।

୧୩—ଇନ୍ଦ୍ରପଦ ତୁମ୍ଭ ପାଦତଳରେ ଅଛି । ମତେ ପଦେପଦକ (ପଦେ ପଦେ) ଭାଷା (କଥା) ଆସ୍ପଦ (ପାତ୍ର) କର । ଅତଏବ ତୁମ୍ଭର ପଦ (କଥା ପଦେ ବା ପାଦ) ମୋର କାମଦେବ ଗୁପ୍ତ ପାଦଘାତର (କନ୍ଦର୍ପର ଗୁପ୍ତ ପାଦ ପ୍ରହାରରୁ ଜାତ) ବିପଦକୁ ପରିହରି ଦେବ [ପରିହାର କରିବ] ।

୧୪—ଶେଯ—ଶଯ୍ୟା, ବିଛଣା । ସୁମନେ—ଫୁଲରେ । ଶ୍ରୀମୁଖକୁଶଜ—ଶ୍ରୀମୁଖପଦ୍ମ ।

ବାରିଧର ତନୁ ଦେଖିବାର । ବାର ବାର ଲୋଭ ଅନିବାର ।
ବାରିବସ୍ତ୍ରା ବାହୁ ସଜହେଉଅଛି ଆଶ ଚିତ୍ରେ କୋଳ କରିବାର, ହେ ସୁନ୍ଦର ॥
ତାର ତାର ଭାଷା ବନିତାର । ତାର ତରଳ ନ ରଖେ ତାର ।
ତାରପତି-ମୁଖୀ ବୋଲେ, ଆସ ଆସ, ଆଶ ନ ନାଶ, ମୋତେ ନିସ୍ତାର, ହେ ସୁନ୍ଦର
କରି ସଂକଳ୍ପ ଚିନ୍ତ ଶଙ୍କରୀ । କରିଗତି କହଇ କି କରି ।
କରିଷକ-କରି ବରିଣ କରୁନାହିଁ ମୋତେ ପରି ଚରଣେ କିଙ୍କରୀ, ହେ ସୁନ୍ଦର ॥
ଚିତ୍ତଜାତ-ବଶେ ଅନୁଚିତ । ଚିତ୍ତମୋହନା କଲି ରଚିତ ।
ଚିନ୍ତନ କରୁ ଚିତ୍ର ଚେତା ହୋଇଗଲା ଚିତ୍ତେ ଉଦୟ ତାର କିଞ୍ଚିତ, ହେ ସୁନ୍ଦର ॥
ମରଷଣ ପାଇ ସେ କାମର । ମରକତକେଶୀ ବୋଲେ ମର ।
ମରମ ପରମ ଲଜଧନ ପେଡ଼ା ଫେଡ଼ାଇଲୁ ଦାଣ୍ଡରେ ପାମର, ରେ ମଦନ ॥
ଶରଣ ମୁଁ ବନେ ପ୍ରବୃତରେ । ସରଞ୍ଜନ ନୋହେ ମାନସର ।
ଶର ଶରାସନ ଧରିବାର ତୋର ଧିକ ପୋଡ଼ୁ ପୋଡ଼ୁ ଫୁଲଶର, ରେ ମଦନ ॥
ମାର ବୋଇଲି ଲୋକକୁ ମାର । ମାରଣା ତୁ ନିଶ୍ଚୟ ସମାର ।
ମାର ନାମ ଖ୍ୟାତ କରାଇନାହୁଁ କି ମିତ୍ର ଅଟୁ ପରା ଚନ୍ଦ୍ରମାର, ରେ ମଦନ ।୨୧

---

୧୫—ବାରିଧର ତନୁ (ବାରି ଜଳ) ମେଘପରି ଶ୍ୟାମଳ ଦେହ । ବାର-ବାର—ଥରକୁଥର । ଅନିବାର—ଅନିବାରଣୀୟ, ଯାହା ବାରିହେବ ନାହିଁ । ବାରିବସ୍ତ୍ରା—ବାରିବରଣୀ ରାଧା । ଚିତ୍ରେ—ଚିତ୍ରପଟକୁ । ଆଶେ—ଆଶା ହେଉଛି ।

୧୬—ବନିତାର (ସ୍ତ୍ରୀ ରାଧାଙ୍କର) ତାର (ଉଚ୍ଚସ୍ୱରରେ) "ତାର ଭାଷା" (ରକ୍ଷା କର) ଏହି କଥା ପ୍ରକାଶ ହେଲା ବା "ତାର ତାର" "ରଖ ରଖ" କଥା ତାର (ତାହାଙ୍କର) ତାର (ଆଖି ତୋଳା) ତରଳ (ଚଞ୍ଚଳତାକୁ) ରଖିଲା ନାହିଁ । ତାରପତିମୁଖୀ—ଚନ୍ଦ୍ରମୁଖୀ ରାଧା । ଆଶ—ଆଶାକୁ ।

୧୭—ସଂକଳ୍ପ—ନିଶ୍ଚୟ । ଶଙ୍କରୀ—ଦୁର୍ଗାଙ୍କୁ । କରିଗତି—ଗଜଗମନା ରାଧା । କି କରି—କଣ କରିବ ? କରିଷକରି—ଘଷି ପାଡ଼ିବା ଗହଡ଼ଣୀ ବୋଲି ।

୧୮—ଚିତ୍ତଜାତବଶେ—କନ୍ଦର୍ପ ଅଧୀନ ହେବାରୁ । ଚିତ୍ତମୋହନା—ମନମୋହନୀ ରାଧା ଅନୁଚିତ ରଚିତ କଲା । ଚିନ୍ତନ କରୁ ଚିତ୍ରପଟର ଚେତା (ଜ୍ଞାନ) ଚିତ୍ତରେ କିଞ୍ଚିତ ଉଦୟ (ଜାତ) ହେଲା । କିଞ୍ଚିତ—ଅଳ୍ପ ।

୧୯—ମରଷଣ—ପରାଭବ, ପୀଡ଼ା । ମରକତ କେଶୀ—ନୀଳମଣି ପରି କେଶ ଯେଉଁ ରାଧାର । ମରମ ପରମ ଲଜ ଧନ ପେଡ଼ା—ମର୍ମର (ହୃଦୟର) ଉତ୍କୃଷ୍ଟ ଲଜରୂପକ ଧନର ପେଡ଼ି । ପେଡ଼ାଇଲୁ—ଖୋଲାଇଲୁ ।

୨୦—ମାନସର ସରଞ୍ଜନ ନୋହେ—ମନକୁ ରଞ୍ଜାଉ ନାହିଁ, ଭଲ ଲାଗୁ ନାହିଁ । ଶରାସନ—ଧନୁ ।

ଦରକଣ୍ଠୀ ଚେତନେ ହୃଦର । ଦର ବଢ଼ିଲ ଅପବାଦର ।
ଦରପଣମୁହିଁ କହେ ପୁଣି ମୁହିଁ କଲି ବଟପୀ ସ୍ୱନ୍ତ ଆଦର, ହେ ଦଇବ ॥
ପତିବରତ ମୋର ସମ୍ପତ୍ତି । ପଦ୍ମମୁଖୀ ଦେଲି ଏ ବପତ୍ତି ।
ପତିତ ସ୍ୱନ୍ତକ ମତ ଗତି କଲି ଅନ୍ତେ ହେବ ନରକ ପ୍ରାପତ, ହେ ଦଇବ ।୨୩।
ଧୀରେ ଅବେଦ୍ୟ ଏ କୁବୁଦ୍ଧିରେ । ଧୀରେ ଶୁଣି ତୁଳବ ନଧିରେ ।
ଧୀରେ ଅଭିମନ୍ୟୁ ସାମନ୍ତସିଂହାର ସଦା ସ୍ୱବର ରସନଧିରେ, ହେ ସୁଜନେ ॥

---

## ଦ୍ୱାଦଶ ଛାନ୍ଦ

## ଶ୍ରୀରାଧାଙ୍କାମୁକୁ ଦୂତୀପ୍ରେରଣ

ରାଗ—ଗୌରୀ । ଛପୋଇବାଣୀରେ (ମଧ୍ୟଯମକ)

ଏ ଉତ୍ତରୁ ଧୀରେ ଶୁଣ ହେ ସଧୀରେ ବସ୍ତୃତ ବଧିରେ ଆନନ୍ଦରେ ।
ଗୋବନ୍ଦ ଚତୁର କହନ୍ତ କାତର ହୋଇଣ ମିତର ପୁରତରେ । ୧ ।
ରାଧା ନା କହ ତ ହେଉଛି ମୁଁ ହତ ଦହୁଛି ଦେହ ତ ମାରଣରେ ।
ଆଜ ମୋର ଜୀବ ଯମପୁର ଯିବ ନଶ୍ଚୟ ରାଜୀବମୁଖୀ ନାଁରେ । ୨ ।

---

୨୧—ମାର ବୋଇଲି ଲେକକୁ—କନ୍ଦର୍ପକୁ ଡାକଲି ଲେକକୁ । ଦୁଃଖରେ ଯେ କନ୍ଦର୍ପକୁ ଶରଣ ପଶି ଡାକେ । ତାକୁ ମାର—ମାରିପକା । ସ୍ୱମାର—ସ୍ୱୀଙ୍କର । ମାରଣା—ଘାତକ, ବନାଶକାରୀ । ଲ, ୨୨-୨୫ ।

୨୨—ଦରକଣ୍ଠୀ—ଶଙ୍ଖ ପର କଣ୍ଠଯୁକ୍ତା ରାଧାର । ହୃଦର ଚେତନେ—ହୃଦୟରେ ଚେତା ଆସିବାରୁ । ଦର—ଭୟ, ବଟପୀ—ବ୍ୟଭଚାରଣୀ ସ୍ୱନ୍ତ ଆଦର କଲି ।

୨୩—ପଦ୍ମମୁଖୀ—ଚତୁର୍ମୁଖ ବଧାତା । ପତିତସ୍ୱନ୍ତକୁ—ଭ୍ରଷ୍ଟ, ପାପୀର ବ୍ୟବହାରକୁ । ଗତିକଲି—ଗଲି । ଅନ୍ତେ—ମରଣରେ, ମଲେ ।

୨୪—ହେ ଧୀରେ—ପଣ୍ଡିତମାନେ । ଏ ଛାନ୍ଦକୁ—ମନ୍ଦ ବୁଦ୍ଧିରେ ଅବେଦ୍ୟ—ବୁଝି ହେବ ନାହିଁ । ଧୀରେ—ସୁବୁଦ୍ଧିରେ ଶୁଣି ନଧିରେ—କୁବେରଙ୍କ ସମ୍ପତ୍ତି ସହତ ତୁଳବ—ତୁଳନା କରିବ । ଧୀରେ—ସ୍ଥିର ସ୍ୱବରେ । ରସନଧିରେ—ଶ୍ରୀରାଧା କୃଷ୍ଣଙ୍କୁ ।

---

୧—ହେ ଧୀରମାନେ ସଧୀରେ—ସୁସ୍ଥିରସ୍ୱବରେ ବସ୍ତୃତ ବଧିପୂର୍ବକ ଶୁଣ ।

୨—ନା—ନାମ । ମାର—କନ୍ଦର୍ପ । ରାଜୀବମୁଖୀ—ପଦ୍ମମୁଖୀ ରାଧାଙ୍କ ନାମରେ ।

ସେ କି ଜଗତର ମୋହନ ମନ୍ତର ହେଲା ତ ଚିତ୍ତର ମୋହପାଶୀ ।
ମତ୍ତଗଜଗତି ନ କଲେ ସଙ୍ଗତି ମୋହୋର କି ଗତି, ଗଲା ଗ୍ରାସି ।୩।
ମାଧବ ହସିଲା, ମାଙ୍କଁ ଟି ଭାଷିଲା ବିବେକ ଧ୍ୱଂସିଲା ଗୋବିନ୍ଦର ।
ପୀଡ଼ିଲା ମଦନ ଶୁଖିଲା ବଦନ ବଢ଼ିଲା କଦନ-ଅକୂପାର । ୪ ।
ବିଜ୍ର କି ପଡ଼ିଲା ସାହସ ଉଡ଼ିଲା ଚେତନା ବୁଡ଼ିଲା ଗୃହୁଁ ଗୃହୁଁ ।
ଜ୍ଞାନ ନ ରହିଲା ଲୋଚକ ବହିଲା ମରମ ଦହିଲା କାମ ଯହୁଁ । ୫ ।
ଏ ସ୍ଥିତି ଗ୍ରହିଁଲେ ବେଦନା ବହିଲେ ସଖାଏ କହିଲେ ଶାନ୍ତ କରି ।
ଏତେକ ସଙ୍ଗୀର ନ ସହିଲ ଗିର ସଦନ-ଭଙ୍ଗୀର ପଥ ହରି । ୬ ।
ନୃହସି ଆରତ ଖୋଜିବା ଜରଜ ପେଷିବା ପୀରତି ଲଗାଇବା ।
ସେ ନବନାଗରୀ ସୁରସନଗରୀ ସୁପ୍ରେମସାଗରୀ ମନାଇବା । ୭ ।
ଅସାଧ୍ୟ ଦୁଷ୍ଟରେ ହେଲେ ଏ କ୍ଷିତରେ ଖୋଜ ଝଟିତରେ ଉପାୟକୁ ।
ମୋହନ କରିବା ତା ମନ ହରିବା ଲଭି ନ ପାରିବା ଯେବେ ତାକୁ ।୮।
ନାନା ଧୀ-କୂଟରେ ଜଗିବା ବାଟରେ ଅବଶ୍ୟ ଭେଟରେ ପଡ଼ିବ ତ ।
ନୋହିଲେ ମିଶିବା ତା ପୁରେ ପଶିବା ବଳେ ଆକର୍ଷିବା ପ୍ରାଣମିତ ।୯।
ନୋହିଲେ ଅତନୁ ପୂଜିବା ସୁତନୁ ବଶ ହୋଇ ତନୁ ଦାନ ଦେବ ।
ନୋହିଲେ ପ୍ରାପତ ପାର୍ବତୀର ପତି ପୂଜିବା ତପତ ନାଶ ଯିବ ।୧୦।
ସଖାଙ୍କ ସାନ୍ତ୍ୱନା ବଚନେ ଚେତନା ପାଇଣ ନୂତନା ଭାବ ଧ୍ୟାୟି ।
ଗୋବିନ୍ଦ ରଚନ କଲେ ତ ବଚନ ସେ ଯାଏ ବଞ୍ଚନ କି ହୁଅଇ ? ।୧୧।

---

୩—ସଙ୍ଗତ—ମିଳନ ।

୪—ମାଧବ—କୃଷ୍ଣଙ୍କର ସଖା । ବିବେକ ଧ୍ୱଂସିଲା—ବିଗ୍ଭରଶକ୍ତି, ବୁଦ୍ଧି ବଣା ହୋଇଗଲା । କଦନ-ଅକୂପାର—କଷ୍ଟସମୁଦ୍ର । ବଦନ—ମୁଖ ।

୬—ସଙ୍ଗୀର—ମିତ୍ରର । ଗିର—କଥା । ହେ ହରି ! ତୁମ୍ଭେ ଭଙ୍ଗୀର ସଦନ ପଥ—ପରିହାସର ଘର ପଥ । ବା ସଦନଭଙ୍ଗୀ ଘରଭଙ୍ଗା ।

୭—ଆରତ—ଦୁଃଖିତ । ଜରଠ—ବୃଦ୍ଧା ଦୂତୀ । ସୁରସ-ନଗରୀ-ରସର ସ୍ଥଳୀ । ସୁପ୍ରେମସାଗରୀ—ପ୍ରେମ ସମୁଦ୍ର ରୂପିଣୀ ରାଧାଙ୍କୁ ।

୮—କ୍ଷିତରେ—ପୃଥିବୀରେ । ଝଟିତରେ—ଶୀଘ୍ର । ମୋହନ କରିବା—ମୋହିବା ।

୯—ଧୀକୂଟରେ—ନାନାପ୍ରକାର ବୁଦ୍ଧି କପଟରେ । ପାଠାନ୍ତରେ—ନାନାହ—ନାନାପ୍ରକାର କପଟରେ । ପୁରେ—ଘରେ ।

୧୦—ଅତନୁ—କନ୍ଦର୍ପ । ସୁତନୁ—ସୁନ୍ଦରୀ ରାଧା । ତନୁ—ଦେହ । ପାର୍ବତୀର ପତି—ଶିବଙ୍କୁ । ତପତ—ପୀଡ଼ା ।

୧୧—ନୂତନା—ନବୀନା ରାଧା । ଭାବ—ବିଷୟ । ବଞ୍ଚନ—ବଞ୍ଚିବା, ବଞ୍ଚି ହେବ କି ?

ସେ କୃଷ୍ଣଭ୍ରମରା-କେଶୀ ନା ସୁମରି ନାସ୍ତା ଯିବ ମରି ନ ପାଇଲେ ।
ପ୍ରାଣ ପ୍ରୟାଗରେ କି ଶିବନଗରେ କି ଗଙ୍ଗାସାଗରେ ଦେବି ବଳେ ।୧୨।
କି ଯୋଗୀ ହୋଇବି ତା ଗୁଣ ଗାଇବି ଏ ଦେହ ଥୋଇବି ମହୀ ଫେରି ।
ତା ପଦ ଧୂଳିକି ମୋର ମଉଳିକି ଦେବ କେ ବୋଲି କି ଦୟା କରି ।୧୩।
ହୃଦୟ ପଥର ହେଲାନି ଏଥର ବିଦେହ ପଥର ସେ ସଙ୍ଗାଳି ।
କଙ୍ଗାଳୀ ବରତଥାଳ ସେ ମୋର ତ ନାମ ଗଳାର ତ ଦୁଃଖ ଝୋଳି ।୧୪।
ଭାବଦର୍ଶିନୀକି ଛାଡ଼ିବି ମୁଁ ନିକି ନିନ୍ଦିବି ମୁନିଙ୍କି ଏ ବେଶରେ
ତା ନାମ ଛାପରେ ଛାଇ ସ୍ୱରୂପରେ ବସିବି ତପରେ ମୁଁ ନିସ୍ତାରେ । ୧୫ ।
ରାଧା ଲମ୍ପଟରେ ତ୍ରିବେଣୀ ତଟରେ ବଟ ନିକଟରେ କରି କୁଟୀ ।
ପଞ୍ଚାତପ ତାପି ହୋଇବି ସନ୍ତାପି ମଦନ ପ୍ରତାପୀ ଯିବ ହଟି । ୧୬ ।
କେବଳ ରାଧାର ନାମ ନୀରାଧାର ମୋହର ଆଧାର ଆଜଠନ୍ତୁ ।
ମୁଜିବି ଶଙ୍କର ବୋଲିବି ଶଂକର କରିବି କଙ୍କର ସେ ସୁତନୁ । ୧୭ ।
ସବୁରୂପେ ଗତି ମୋର ଗଜଗତି ଇଚ୍ଛଇ ଭଗତି ନବକାନ୍ତି ।
ଆଦ୍ୟ ତ ପ୍ରକଟ ପ୍ରାନ୍ତହିଁ ନିକଟ ହେଲା ଅପ୍ରକଟ ମଧ୍ୟ ଶାନ୍ତି । ୧୮ ।

---

୧୨—କୃଷ୍ଣଭ୍ରମରକେଶୀ—କଳାଭଅଁର ପରି କେଶ ଯାହାର, ରାଧା, ନାସ୍ତା—ନାସ୍ତସ୍ତ । ପ୍ରୟାଗ—ଗଙ୍ଗା ଓ ଯମୁନାର ସଙ୍ଗମ ସ୍ଥାନ । ଶିବନଗରେ—କାଶୀରେ । ଗଙ୍ଗାସାଗରେ—ଗଙ୍ଗା ମୁହାଣରେ ।

୧୩—ଥୋଇବି—ଧ୍ୟାନରେ ବସିବି । ମଉଳିକି—ମସ୍ତକରେ ।

୧୪—ବିଦେହ ପଥର—କନ୍ଦର୍ପର ବାଟରେ । କଙ୍ଗାଳୀବରତଥାଳ—ଦରିଦ୍ରର ଭିକ୍ଷାପାତ୍ର । ଝୋଳି—ଝୁଲି, ଝୋଲି ।

୧୫—ଭାବଦର୍ଶିନୀକି—ଶୃଙ୍ଗାରଭାବର ଦର୍ଶନକାରିଣୀ ରାଧାଙ୍କୁ । ଶୃଙ୍ଗାର ରସ ସର୍ବସ୍ୱା ତା ନାମ......ନିଜ ରୂପକୁ - ଦେହକୁ ତା ନାମ ଛାପରେ ଆଚ୍ଛାଦନ କରି । ନିସ୍ତାରେ—ନିସ୍ତମରେ ।

୧୬—କୁଟି—କୁଡ଼ିଆ ଘର । ତ୍ରିବେଣୀ—ଗଙ୍ଗା, ଯମୁନା, ସରସ୍ୱତୀର ମିଳନ ସ୍ଥାନର କୂଳରେ । ପଞ୍ଚାତପ—ପଞ୍ଚାଗ୍ନି, ଚାରିଦିଗରେ ଅଗ୍ନି ଏବଂ ଉପରେ ସୂର୍ଯ୍ୟ । ତାପି—ଜଳେଇ ବା ଛାପି । ସନ୍ତାପୀ—ତପ୍ତ ।

୧୭—ନୀରାଧାର—ନିରାଶ୍ରୟ ବା ନୀରାହାର । ଆଧାର—ଆଶ୍ରୟ ବା ଆହାର ଦ୍ରବ୍ୟ । ଶଙ୍କର—ଶିବ । ଶଂ-କର—ମଙ୍ଗଳକର ।

୧୮—ଗତି—ଉପାୟ । ଗଜଗତି—ଗଜଗମନା ରାଧା । ନବକାନ୍ତି ଭଗତି—ନଅ ପ୍ରକାର ଭକ୍ତି । * ନବକାନ୍ତି ଭଗତି—ଶ୍ରବଣ, କୀର୍ତ୍ତନ, ସ୍ମରଣ, ପାଦସେବା, ଅର୍ଚ୍ଚନ, ବନ୍ଦନ, ଦାସତ୍ୱ, ସଖ୍ୟ ଓ ଆତ୍ମସମର୍ପଣ; ନୃସିଂହ ପୁରାଣ *ମ ରତ୍ନାକର ୭୮୭ ପୃଷ୍ଠା ଦେଖ ।

ଗୋବିନ୍ଦ ଭାରତୀ ଶ୍ରବଣେ ଆରତି ସଖୀଏ ପୀରତି ବଶେ ହୋଇଲେ ।
କେ ପଛକୁ ଯାଇ ଉରେ ଆଉଜାଇ ଲୁଅଉପୁଜାଇ କେହୁ ବୋଲେ । ୧୯ ।
କେ ବୋଲେ ହେ ବନ୍ଧୁ ଆମ୍ଭ ପ୍ରାଣ ବଧୂ ଦେଇ ପରବଧୂଠାରେ ମନ ।
ଆମ୍ଭ ମନ ରସା ତୋ ବିନା ଏ ରସା ମଧ୍ୟରେ ଭରସା ନାହିଁ ଆନ ।୨୦।
ଆହେ ତ୍ରିଭୁବନ-ମୋହନ ଭବନ ଅନ୍ଧାର ଜୀବନ ଯାଉଛନ୍ତି ।
ତୋହୋ ବିରସରେ ଆମ୍ଭ ବୁଦ୍ଧି ସରେ ଗୃହିଁକୁ ତୋଷରେ କାହାକୁତି ।୨୧।
ପ୍ରାଣ ନ ଗଲା ତ ଏହା ଦେଖିଲା ତ ଦଇବ କଲା ତ ଏତେ ସର ।
ନେତ୍ର ଫୁଟିଯାଉ ହୃଦ ଫାଟିଯାଉ ପ୍ରାଣ ହଟିଯାଉ ବେଗ କର । ୨୨ ।
ସଖୀ ଏସନରେ ହୋଇ ବିମନରେ ବୋଲନ୍ତି ଛନ୍ଦରେ ସ୍ନେହ ଘେନ ।
ତୋରି ଗମନରେ ଇଚ୍ଛି ସୁମନରେ ମିଳି ସେ ବନରେ କାମସେନା । ୨୩ ।
ଗୋବିନ୍ଦ ବିଧୁର ବଦନ ବିଧୁର ଦେଖି କଲା ଧୂରରୁଁ ବିଚାର ।
ଜଗତବନ୍ଦନ ଶ୍ରୀଅଙ୍ଗେ କଦନ କରୁଛି ମଦନ ଏତେ ଦୂର । ୨୪ ।
ପାଖକୁ ଆସିଲା ଅଳପ ହସିଲା ହୋଇ ସେ ଭାଷିଲା ସଖୀ ଗୃହିଁ ।
ଏ ନନ୍ଦକୁମାର ଅତି ସୁକୁମାର ଗୃହିଁ ଯାକୁ ମାର ହେବ ମୋହି । ୨୫ ।
ଏ ମାରେ ମୋହନ ହେବାରେ ଗହନ ଅବ୍ୟାଜେ ବହନ କରି କହ ।
ହେଲେ କି ମତିକି ବରି ଯୁବତୀକି ଏଣୁ ବିପତ୍ତିକି ପାଏ ଦେହ । ୨୬ ।
ଶ୍ରୀମୁଖ ଶୁଖିଛି ମୋହିତ ନୋହିଛି ଦମ୍ଭକୁ ବହିଛି କଉଁ ନାରୀ ।
ସଖୀ ତ ଏତିକ ଅଛ ଏ କେତେକ କଥାଏ ମାନକ ନାହିଁ କରି । ୨୭ ।

---

ଆଦ୍ୟ—୧୯, ଭାରତୀ ନାମଶ୍ରବଣ । ପ୍ରକଟ—ପ୍ରକାଶିତ । ପ୍ରାନ୍ତ—ଆତ୍ମ ସମର୍ପଣ ନିକଟରେ । ମଧ୍ୟସ୍ଥିତ—ମହିର ଭଲ୍ଲପାକ ଅପ୍ରକାଶିତ ରହିଲା । କମ୍ପା ପ୍ରାନ୍ତ—ମରଣ । ମହିର ଅବସ୍ଥାଗୁଡ଼ିକ ରହିଲା ।

୨୦—ବଧୂ—ନାଶ କରୁ । ମନରସା—ଯେ ମନ ରସାଏ । ରସାମଧ୍ୟରେ—ପୃଥିବୀ ଭିତରେ ।

୨୧—ତ୍ରିଭୁବନମୋହନ—ତିନି ଲୋକର ମୋହନକାରୀ । ଭବନ—ଘର ଅନ୍ଧାର ଦିଶୁଛି । ସରେ—ଶେଷ ହେଉଅଛି ।

୨୩—କାମସେନା—ସେହି ନାମର ଦୂତୀ । ତୋରି—ତ୍ୱରା, ଶୀଘ୍ର । ସୁମନରେ—ଫୁଲରେ ।

୨୪—ଗୋବିନ୍ଦ-ବିଧୁର—କୃଷ୍ଣଚନ୍ଦ୍ରଙ୍କର । ବିଧୁର—ଦୁଃଖିତ, ବିବର୍ଣ୍ଣ । ଧୂରରୁ—ଦୂରରୁ । ଜଗତବନ୍ଦନ—ସଂସାରରେ ପୂଜ୍ୟ । କଦନ—ପୀଡ଼ା ।

୨୬—ଏ ଶ୍ରୀକୃଷ୍ଣ ମାରେ—କନ୍ଦର୍ପଦ୍ୱାରା, ମୋହିତ ହେବାରୁ ଗହନ—ଅକ୍ଷମ ହୋଇଅଛୁ ବା ଗହନ—ଗୂଢ଼, ଗୁପ୍ତକଥା । ବହନ କରି—ଶୀଘ୍ର । ଅବ୍ୟାଜେ—କପଟ ନ ରଖି ।

ମାଧବ ଭାଷିଲା ତୁମ୍ଭର ଆସିଲାଠାରୁଁ ତ ଫଳିଲା ଶୁଭ ଆଜ ।
କହି ବା ପାରିବ ଟିକି ଗୋ, ତାରିବ, ଆମ୍ଭଙ୍କୁ କରିବ ଯେବେ କାର୍ଯ୍ୟ ।୨୮।
ସଞ୍ଚାରୀ କହିଲା, ସଖାରେ ମହିଳା ମୋ ସାଧ ନୋହିଲାର କେ ହେବ ।
କଲେ ମୁହିଁ ଚିତ୍ତ ନୃନାରୀ କାଞ୍ଛିତ ଦଣ୍ଡିକେ ଶଚୀ ତ ଭଳିଯିବ । ୨୯ ।
ଜଳରେ ଲୁଚାଇ ଅଗ୍ନିକି ବଞ୍ଚାଇ ମୋହୋରେ ସଞ୍ଚାଇବାର ହେବ ।
ଅନଳ ଭିତରେ ବାରୁଦ ଯତରେ ବସ୍ତୁର ଚିତ୍ତରେ ରଖାଯିବ । ୩୦ ।
ପରଖ ସିଦ୍ଧିକି ଅଷ୍ଟମ ନିଧିକି କି କଳାନିଧିଙ୍କି ଆଣି ଦେବ ।
କାଗଜର ତରି କରି ସିନ୍ଧୁ ତରି ଯିବାକୁ ମନ୍ତ୍ରୀ ବନାଇବ । ୩୧ ।
ଥାଉ ହେବା କାନ୍ତ ସଙ୍ଗତେ ଏକାନ୍ତ ଯେ ପୁରୁଷ କାନ୍ତ ଦେଖି ନାହିଁ ।
ତା ମନ ରଞ୍ଜାଇ ନାଗରୀ ବଜାଇ ସୁରସେ ମଜ୍ଜାଇ ଦେବ ମୁହିଁ । ୩୧ ।
କରୁଛି ଗୁମାନ କୁଳିଶ ସମାନ ହୋଇଥିଲେ ମାନ ଭାଙ୍ଗି ଦେବ ।
ଅତନୁ ବିହାର ନ ଥିବ ଯାହାର ହୃଦରେ ତାହାର କି କରିବ ? । ୩୩ ।
ଶୁଣି କଣ୍ଠହାର ଗୋବିନ୍ଦ ବାହାର କରି ଉପହାର ମତେ ଦେଲେ ।
ଦେଇ ମୋତେ, ତାର-ପଦ୍ମମୁଖି ତାର, ସୁଯଶ ବିସ୍ତାର ତୁ; ବୋଇଲେ ।୩୪।
ଶ୍ରୀରାଧିକା ବିନା ମୁଁ ତ ଜୀଇବି ନା ଅମର-ନବୀନା ପ୍ରାପ୍ତ ହେଲେ ।
ଭଲ ନା ପାଞ୍ଛିତ ଦେଲି ନେଇ ଚିତ୍ତ ତୁମ୍ଭଙ୍କୁ ଉଚିତ ଦୂତୀ ବୋଲେ । ୩୫ ।

---

୨୭—ଏ କେତେକ—ସାମାନ୍ୟ କଥା ।

୨୯—ସଞ୍ଚାରୀ—ଦୂତୀ । ମହିଳା—ନାରୀ । ନୃନାରୀ—ମନୁଷ୍ୟ ସ୍ତ୍ରୀ ଅଳ୍ପକ କଥା । ଶଚୀ—ଇନ୍ଦ୍ରଙ୍କର ସ୍ତ୍ରୀ । ଭଳିଯିବ—ବିହ୍ୱଳ ହୋଇ ମଜିଯିବ ।

୩୦—ମୋହୋରେ—ମୋଦ୍ୱାରା, ... ସଞ୍ଚାଇବାରହେବ—ସଞ୍ଚି ରଖାଯିବ, ଅନଳ—ଅଗ୍ନି । ବାରୁଦଯତରେ—ବାରୁଦ ପରି ।

୩୧—ସିଦ୍ଧିକି—କୁଶଳତାକୁ । ପରଖ—ପରୀକ୍ଷା କର । ଅଷ୍ଟମନିଧି—ଅଷ୍ଟନିଧି—କୁବେରଙ୍କର ସମ୍ପତ୍ତି—ଅଷ୍ଟ ଅର୍ଥରେ ଅଷ୍ଟମ ଓଡ଼ିଆରେ ହୁଏ ବା ଅଷ୍ଟମନିଧି—ନୀଳମଣି । କଳାନିଧି—ଚନ୍ଦ୍ର । ତରି—ନୌକା । ମନ୍ତ୍ରୀ ବନାଇବ—ମନ୍ତ୍ରଣାକାରୀ ବା ସମର୍ଥ ହେବ ।

୩୨—କାନ୍ତ—ପତି, ସଙ୍ଗତେ ଏକାନ୍ତ—ମିଳିତ, ହେବା ନାହିଁର କଥା ଥାଉ; ଯେ ପୁଣି ସୁନ୍ଦର ପୁରୁଷ ଦେଖି ନାହିଁ ।

୩୩—କୁଳିଶ ସମାନ—ବଜ୍ର ପରି କଠିନ । ଅତନୁବିହାର—କନ୍ଦର୍ପ-ବିକାର । ... ଅର୍ଥାତ୍ ବାଳିକା । କି କରିବ ? ସବୁ କରି ଦେବ; ବା କିଛି କରି ପାରିବ ନାହିଁ ।

୩୪—କଣ୍ଠହାର—ଗଳାର ମାଳକୁ । ଉପହାରମତେ—ପୁରସ୍କାର ରୂପରେ । ତାରପଦ୍ମମୁଖୀ—ଚନ୍ଦ୍ରମୁଖୀ ରାଧାଙ୍କୁ । ତାର—ରକ୍ଷା କର ।

କେଉଁ ରାଧାର ତ ନାମକୁ ଧର ତ ଦୁଇ ରାଧାର ତ ନାମ ଖ୍ୟାତ ।
ଗୋବିନ୍ଦ କହିଲେ ଦୁଇ କେ ମହିଳେ ଜାଣୁ ତ ପହିଲେ ଏକମୂର୍ତ୍ତି । ୩୬ ।
ଦୂତିକା ଭାରତୀ କହଇ ପୀରତିବସନ ଧିରନ୍ତି ହୋଇ ଶୁଣ ।
ବୃଷଭାନୁଜେମା ରାଧା ତାକୁ ଯେ ମା ସରି ନୋହେ ଯେ ମାଙ୍କ ଟି ଜାଣ ।୩୭।
ମଲ୍ଲ ଗୋବର୍ଦ୍ଧନର ଯେ ଜୀବଧନ ମାନସବନ୍ଧନପାଶୀ ବାଳୀ ।
ରାଧା ନାମ ଟି ତ ତାହାର ବିହିତ ନାମ ପୁଣିହିଁ ତ ଚନ୍ଦ୍ରାବଳୀ । ୩୮ ।
ଶ୍ରବଣେ କେଶବ ବୋଇଲେ, ଆସବ ପିଇଛୁ ଆଶବଶରୁ ମୁହିଁ ।
ମନ ଅବାରଣ ପ୍ରମତ୍ତ ବାରଣ ପରି ରଣରଣ ବଶ ତହିଁ । ୩୯ ।
ଏମନ୍ତ ମୁହିଁ ତ ସୁଜାଣ ତୁହି ତ ଯେ ହେବ ମୋ ହିତ ତାହା କର ।
ଦୂତିକା ଜବରେ ଜାଣି ତା ଭାବରେ ଗଲା ସେ ନବରେ ତତପର । ୪୦ ।
ଶ୍ରବଣ-କୁହର-ସୁଖ ମନୋହର ପ୍ରେମ ସନ୍ଦୋହର ସାର ଘର ।
ଯେଣେ ହେ ସଙ୍ଗୀତବିଦ ଏହୁ ଗୀତ ନାମ ତ୍ରିଭଙ୍ଗୀ ତ ନୟମର । ୪୧ ।
ବୋଲଇ ସାମନ୍ତସିଂହାର ଶ୍ୟାମ ତ ମୋହୋର ସାମନ୍ତ କାହିଁ ଆନ ।
ଶ୍ରୀପଦ୍ମଚରଣ ଭଙ୍ଗୀ ଆଚରଣ କରି ସୁମରଣ ଯାଉ ଦିନ । ୪୨ ।

---

୩୫—ଅମରନବାନା—ଦେବକନ୍ୟା । ଜାଇବ ନା—ଜାଇବ ନାହିଁ । ନା—ନାମ ।

୩୬—ନାମ ଖ୍ୟାତ—ନାମର ଯଶ । ହେ ମହିଳେ—ହେ ନାରୀ ଦୂତ । ପହିଲେ—ପ୍ରଥମରୁ । ଏକମୂର୍ତ୍ତି—ଗୋଟିଏ ।

୩୭—ଭାରତୀ—ବଚନ । ଧିରତ—ଧୃତ, ଧୈର୍ଯ୍ୟଧରି । ମା—ଲକ୍ଷ୍ମୀ ।

୩୮—ମାନସବନ୍ଧନପାଶୀ—ମନବନ୍ଧା ଫାଶ ।

୩୯—ଶ୍ରବଣେ—ଶୁଣି । ଆସବ—ମଦ । ଆଶବଶରୁ—ଆଶା ଥିବାରୁ ମନ ପ୍ରମତ୍ତ ବାରଣ—ମତୁଆଲା ହାତୀପରି; ଅବାରଣ—ବାରଣ କରି ହୁଏ ନାହିଁ । ତହିଁ—ସେ ପୁଣି, ରଣରଣ—କନ୍ଦର୍ପର, ବଶ—ଅଧୀନ ହୋଇଅଛୁ ।

୪୦—ସୁଜାଣ—ସୁଜ୍ଞାନ, ପଣ୍ଡିତା । ନବରେ—ନଅରକୁ । ଜବରେ ଶୀଘ୍ର । ତତପର—ତାହାପରେ ବା ତତ୍ପର ହୋଇ ।

୪୧—ଶ୍ରବଣକୁହର ସୁଖ—(କୁହର—ଗାତ) କର୍ଣ୍ଣସୁଖକର । ସନ୍ଦୋହ—ସମୂହ । ସାର—ଶ୍ରେଷ୍ଠ ଘର ବା ସରଘର । ନୟମର ତ୍ରିଭଙ୍ଗୀ—ଛନ୍ଦଠାରେ ଅନୁପ୍ରାସ ରହିଅଛୁ ।

୪୨—ଶ୍ୟାମ—କୃଷ୍ଣ । ସାମନ୍ତ—ପ୍ରଭୁ । କାହିଁ ଆନ ? ଆଉ କେହି ନୁହେ । ଭଙ୍ଗୀ ଆଚରଣ—ଶୋଭନିଧି ବା ଛନ୍ଦ ହୋଇଥିବା ବିଧି ସ୍ମରଣ କରି ।

# ତ୍ରୟୋଦଶ ଛାନ୍ଦ

## ଚନ୍ଦ୍ରାବଳୀ ଦର୍ଶନ

( ଶ୍ରୀକୃଷ୍ଣ ଗୋଷ୍ଠରଣ ବଦ୍ୟାପ୍ରାପ୍ତି )

ଅନୁପ୍ରାସ । ରାଗ—ରାମକେରୀ

ସାଧବ ଶୁଣ ହେ ମାଧବ ଦୂତୀ କର ପ୍ରେଷଣ ।
କାତର ହୋଇଣ ଉତ୍ତର କଲେ ସଖାଙ୍କୁ ପୁଣ । ୧ ।
ସତେ କ ମିତ ହୋ ମୋତେ କ ବଶ ହେବ ରାଧିକା ।
ଦଶିବ ମୋ ଶିବ ଆସିବ ସଙ୍ଗ ଶୁଭେ ଦୂତିକା । ୨ ।
ହସିବ, ଏତେ କ ଭାଷିବ, ଦସ୍ଥା କଲ୍ପ କଣୋଗ୍ଧ ।
ରହିବ ପରାଣ, ଦହିବ ନାହିଁ ହର-ଭଗାର । ୩ ।
"ରସିଲ ନାହିଁ ସେ," ଭାଷିଲେ ଯେବେ ଆସି ସଞ୍ଚାରୀ ।
ଜୀବ ତ ବାହାର ଯିବ ତ କ୍ଷଣେ ନ ରହି କର । ୪ ।
କରବ କ ବୁଦ୍ଧି ଧରବ କେହ୍ନ ଧୈର୍ଯ୍ୟ ହବେକ ।
ମରବ ତା ଲଗି ତରବ ସ୍ମରସିନ୍ଧୁ ପାତକ । ୫ ।
ମୋହନା ନାମ କ ମୋହ ନା ନ ରଖିବ ଜଗତେ ।
ପୋଡ଼ିଲ ହୃଦୟ ପଡ଼ିଲ ଦନୁ ମୋ କର୍ଣ୍ଣଗତେ । ୬ ।
କହୁଁ ତ ଏପର ବହୁତ ଦଶା ଅବଶେ ଛନ୍ନ ।
ଅଧିର-ବଦନ ଅଧିର ସ୍ୱେଦ କମ୍ପ ଜନନ । ୭ ।
ଅବଶ ବେଳରେ ପ୍ରବେଶ ହେଲେ ଶ୍ରୀପୂର୍ଣ୍ଣମାସୀ ।
ଦମ୍ଭରେ କୃଷ୍ଣ ଆରମ୍ଭରେ ଶୀଘ୍ରେ ମାନ୍ୟ ପ୍ରକାଶି । ୮ ।

---

୧—ହେ ସାଧବ—ସାଧୁମାନେ । ୨—ଶିବ—ମଙ୍ଗଳ । ୩—ହର ଭଗାର—କନ୍ଦର୍ପ । ୪—ସଞ୍ଚାରୀ—ଦୂତୀ ।

୫—କେହ୍ନ—କପର । ସ୍ମର ସିନ୍ଧୁପାତକ—କନ୍ଦର୍ପ ସମୁଦ୍ରରେ ପଡ଼ିବା ରୂପ ପାପ ।

୬—ମୋହନା—ମୋହନକାରୀ ରାଧାଙ୍କର । ମୋହ ନା—ମୋର ନାମ ।

୭—ଦଶା ଅବଶେ ଛନ୍ନ—ସକଳାଙ୍ଗ କାମଦଶାରେ ଅଶକତ ହୋଇ । କାତର ଅଧିର—କୃଷ୍ଣଚନ୍ଦ୍ରଙ୍କର । ଅଧିର—ମଳିନ, ଦୁଃଖିତ । ସ୍ୱେଦ—ଝାଳ ଓ କମ୍ପ । ଜନନ—ଜାତ ହେଲା ଅର୍ଥାତ୍ ସାତ୍ତ୍ୱିକ କାମ ବକାର ହେଲା ।

କ୍ଷେମକୁ ବାଞ୍ଛି, ସେ ଶ୍ୟାମକୁ ମନ୍ଦହାସେ ବୋଇଲେ ।
ନୀରସ ବଦନ-ସାରସ ହେଲେ କ ଚନ୍ଦ୍ରାବଳେ । ୯ ।
ମଦନ ରାଜନ କଦନ ପରାପ୍ତେ ତ ମଣଇଁ ।
କାହାରେ ମନକୁ ବହାରେ ଅଛ କ ହୋ ବଳାଇ । ୧୦ ।
ନାଗରୀ କେ ଗୋପନଗରୀ ମଧ୍ୟେ ତୁମ୍ଭଙ୍କୁ ଦେଖି ।
ବରଲା ନାହିଁ ସେ ପାରଲା କେହ୍ନ ଜୀବନ ରଖି । ୧୧ ।
ଶୁଣିମ ଯେ ନାମ ମଣିମ ସେ ତ ଅମୃତବତ ।
ଭାଙ୍ଗିବ ଗରବ ଲଗିବ ତାକୁ ଅନଙ୍ଗ-ଭୂତ । ୧୨ ।
ଦେଖିବ ଆଦ୍ରର ରଖିବ ଦମ୍ଭ କଉଁ ଗୁଆଁରୀ ।
କଙ୍କରୀ ହେବାକୁ ଶଙ୍କରୀ ରମା ହେବେ ଆତୁରୀ । ୧୩ ।
ଲାଜରେ ଗୋବିନ୍ଦ ବ୍ୟାଜରେ କଲେ ପ୍ରତି ଉତ୍ତର ।
ମହତ ହୋଇଣ କହ ତ ହେବ କ ଭାଙ୍ଗିବାର । ୧୪ ।
କନ୍ଦର୍ପ କରୂପ ତା ଦର୍ପ ପୁଣି କେମନ୍ତ ଆଜ୍ଞା ।
ପୀରତି ତୁମ୍ଭର ସୁରତି ଖ୍ୟାତି ଶୁଣିଲ ଆଜ । ୧୫ ।
ଗୋକୁଳପାକର ଗୋକୁଳ ବ୍ୟାଧିବନ୍ତ ହେବାରେ ।
ବିରସ ବଦ୍ଧିତ ହରଷ ନାହିଁ ସେହି ଚନ୍ତାରେ । ୧୬ ।
ଶୁଣିଲେ ଏମନ୍ତ ଭଣିଲେ ପୁଣି ଶ୍ରୀପୂର୍ଣ୍ଣମାସୀ ।
ନ କର ଭାବନା ନକର ଅଛୁ ଗୋ-ଶାସ୍ତ୍ରରାଶି । ୧୭ ।

---

୮—ଅବଶବେଳରେ—ଅଶକତ ସମୟରେ । ଆରମ୍ଭରେ—ପଦ୍ଧତି ବା ମର୍ଯ୍ୟାଦାରେ । ମାନ୍ୟପ୍ରକାଶି—ସମ୍ମାନ କରି ।

୯—କ୍ଷେମକୁ—ଅମଙ୍ଗଳକୁ । ନୀରସ—ଶୁଖିଲା । ବଦନସାରସ—ମୁଖପଦ୍ମ ।

୧୦—ମଦନ ରାଜନ—କନ୍ଦର୍ପ ରାଜା । କଦନ—କଷ୍ଟ । କାହାରେ—କାହାଠାରେ । ବହାରେ—ଜେଲ କରିବାରେ ।

୧୨—ଅନଙ୍ଗଭୂତ—କନ୍ଦର୍ପରୂପକ ଭୂତ ।

୧୩—ଗୁଆଁରୀ—ମୂର୍ଖଣୀ, ବୁଦ୍ଧିଶୂନ୍ୟା । କଙ୍କରୀ—ଦାସୀ । ଶଙ୍କରୀ—ପାର୍ବତୀ । ଆତୁରୀ—ଆକୁଳ ।

୧୪—ବ୍ୟାଜରେ—ଛଳରେ । ମହତ—ମାନ୍ୟଲୋକ, ବଡ଼ଲୋକ । ଭାଙ୍ଗିବାର ହେବ କ—କଥା ଭାଙ୍ଗି ପାରିବ କ ?

୧୫—କରୂପ—କପଟ । ଦର୍ପ—ପ୍ରଭାବ, କ୍ଷମତା । ଆଜ୍ଞା—ଆଜ୍ଞ ।

୧୬—ଗୋକୁଳପାକର—ସମସ୍ତ ଗୋପପୁରର । ଗୋକୁଳ—ଗୋରୁମାନେ । ବ୍ୟାଧିବନ୍ତ—ରୋଗୀ । ବିରସ—ଦୁଃଖ ।

ଗୋ-ବର୍ଦ୍ଧନକୁ ଗୋବର୍ଦ୍ଧନ ମଲ୍ଲ ବିଦ୍ୟା ପାଇଛୁ ।
ଭାଇ ସେ ତୁମ୍ଭର ଯାଇଁ ସେଠାକୁ ମାଗ ହେ କିଛୁ । ୧୮ ।
ଆଶ ତହିଁ ଥିଲେ ଆସ ତ ମୋହୋ ସଙ୍ଗତେ ଆଜ ।
ଦଇବ କଲ୍ୟନ ପାଇବ ତୁମ୍ଭ ଇଚ୍ଛିଲା କାର୍ଯ୍ୟ । ୧୯ ।
ମୁଦରେ ଗୋବିନ୍ଦ ହୃଦରେ ଲଭି ଅଛି ବିସ୍ମୟ ।
ବେଗରେ ଯେ ମଲ୍ଲ-ନଗରେ ବିଜେ କଲେ ଶ୍ରୀଧର । ୨୦ ।
ସୁବଳ ଗହଣେ କେବଳ ପୂର୍ଣ୍ଣିମାସୀ ଆବର ।
ଚଳିଲେ ବନ୍ଧନ ମିଳିଲେ ଯାଇଁ ମଲ୍ଲ ନଗର । ୨୧ ।
ଦେଖିଲାକ୍ଷଣି ତ ଲେଖିଲା ଇଷ୍ଟ ଆଗତ ମଲ୍ଲ ।
ଆସିଲାରୁ ଭାଇ ଦିଶିଲା ମୋର ସକଳ ଭଲ । ୨୨ ।
ବିଚାର ଯେତେକ ପଚାରିଲା ସେ ସମସ୍ତ ଶୁଭ ।
ରସାଇ ପୁଚ୍ଛିଲା ବସାଇ ଚନ୍ଦ୍ରାବଳୀବଲ୍ଲଭ । ୨୩ ।
ରଞ୍ଜାଇ ମନକୁ ଭୁଞ୍ଜାଇ ଦ୍ରବ୍ୟ ସାମଗ୍ରୀମାନ ।
ସୁମନ ବସନ ସୁମନ ହୋଇ ଦେଲା ବହନ । ୨୪ ।
କହିଲା ମଲ୍ଲ ଯେ ରହିଲା ଏବେ ବଳ ନନ୍ଦର ।
କି କରୁଥାଉ ତୁ ନ କରୁ ଭେଟି କଂସ ରାଜାର । ୨୫ ।
ଘରେ ତ ବସିଲେ ସରେ ତ ଭାଇ ଅଚଳ ନିଧି ।
ଉପାୟେ ନ କଲେ କେ ପାଏ କାହିଁ କଉଁ ସମୃଧି । ୨୬ ।
ଆଦର ଅବା ନ ଆଦର କହୁଅଛୁ ଭଲ ତ ।
ଭେଦ ରଖିଛୁ କି ସୋଦର ସାନ ତୁହି ମୋର ତ । ୨୭ ।
ମଥାକୁ ପୋତିଲେ କଥାକୁ ଶୁଣି ହସି ଶ୍ରୀଧର ।
ହାସକୁ ପ୍ରକାଶି ଭାଷକୁ ପୂର୍ଣ୍ଣିମାସୀ ଉଚ୍ଚାରି । ୨୮ ।

---

୧୭—ନିକର—ସମୂହ, ସବୁ । ଗୋଶାସ୍ତ୍ରବିଶି—ଗୋରୁ ଚିକିତ୍ସା ଶାସ୍ତ୍ର ।
୧୮—ଗୋ-ବର୍ଦ୍ଧନକୁ—ଗୋରୁ ବଢ଼ିବାକୁ ।
୨୧—ଗହଣେ—ସଙ୍ଗରେ । ଆବର—ଆଉର ।
୨୨—ଲେଖିଲା—ବିଚାରିଲା । ଇଷ୍ଟ ଆଗତ—ପ୍ରିୟଲୋକ ଆସିବାର ।
୨୩—ଚନ୍ଦ୍ରାବଳୀବଲ୍ଲଭ—ଗୋବର୍ଦ୍ଧନ ମଲ୍ଲ ।
୨୪—ସୁମନ—ଫୁଲ । ସୁମନ—ଭଲ ମନରେ ।
୨୬—ଅଚଳନିଧି—ଅକ୍ଷୟ ସମ୍ପତ୍ତି । ସମୃଧି ବା ସମୃଦ୍ଧି—ବିପୁଳ ସମ୍ପତ୍ତି ।
୨୭—ସୋଦର—ଭାଇ ।

ରସିଛୁ ଭାଇ ତ ଆସିଛୁ ଗୋରୁ ବନ୍ଦ୍ୟା ନେବାକୁ ।
କହିଲେ ମଲ୍ଲ ଯେ ପହିଲେ ବନ୍ଦ୍ୟା ଦେବ କୃଷ୍ଣଙ୍କୁ । ୨୯ ।
ତାହାର ମୋହର ବାହାର ଭିତର ଅଛଇ କି ।
ଘର ତ ତାହାର ନଗର ନ ଆସଇ କାହିଁକି । ୩୦ ।
ଯାହା ତ ତା ମନ ତାହା ତ ଦେନ ଯାଉ ଏକ୍ଷଣି ।
ବଚନ ଏରୂପେ ରଚନ କଲା ଅନେକ ପୁଣି । ୩୧ ।
ମୋହନ କରରେ ବହନ ଦେଲା ଗୋଣାସ୍ତ ପୋଥି ।
ଚଟାଇ କୃଷ୍ଣଙ୍କୁ ବୁଝାଇ ଦେଲା ଯେ ଗୁପ୍ତତଥି । ୩୨ ।
କୃଷ୍ଣରେ ବସାଇ କୃଷ୍ଣରେ ପୁରୋଦର-ଶୟନେ ।
ଜାୟାରେ କହେ ନର୍ମାୟାରେ ଅତି ହରଷମନେ । ୩୩ ।
ସଜନୀ ସହରେ ସଜନକରକୁ ଲାଗି ହୋଇ ।
ଯାଇ ତ ବନ୍ଦାଅ ଭାଇ ତ ମୋର ଅଟେ କହ୍ନାଇ । ୩୪ ।
ତରକ ଅଛ ସେ ପର କି ନନ୍ଦରାଜା କୁମର ।
ରମଣି ଦିଅ ଗୋ ସୁମଣି ରତ୍ନମାଳ ସତ୍ୱର । ୩୫ ।
ଆନନ୍ଦମନେ ରସାନନ୍ଦ ବନ୍ଦାପନା କରଣେ ।
ସୁବେଶ ହୋଇଣ ପ୍ରବେଶ ଚନ୍ଦ୍ରାବଳୀ ତକ୍ଷଣେ । ୩୬ ।
ରଜନୀଶମୁଖୀ ସଜନୀ ମେଳେ କୃଷ୍ଣ ବନ୍ଦାଇ ।
ଯତନ ଦେଲା ସେ ରତନ ହାର କଣ୍ଠେ ଲମ୍ବାଇ । ୩୭ ।
ଅତନୁ ଦେବତା ସୁତନୁ କି ଏ ମଣି ସୁତନୁ ।
ଦେବର ସମ୍ବନ୍ଧେ ସେ ବର ମାନ୍ୟ ଗୁଡ଼ିଲା ମନୁ । ୩୮ ।

---

୩୨—ମୋହନ କରରେ—କୃଷ୍ଣଙ୍କ ହାତରେ । ଚଟାଇ—ରଞ୍ଜାଇ, ମନାଇ । ତଥି—ଗୁପ୍ତତଥ୍ୟ, ତତ୍ତ୍ୱ ବା ତହିଁର ଯେ ଗୁପ୍ତ ବିଷୟ ।

୩୩—କୃଷ୍ଣରେ—ଆଗ୍ରହରେ । ପୁରୋଦର ଶୟନେ—ଘର ଭିତର ଶଯ୍ୟାରେ । ଜାୟା—ଭାର୍ଯ୍ୟା । ନର୍ମାୟାରେ—କପଟ ନ ରଖି ।

୩୪—ସଜନୀ ସହରେ—ସଖିମାନଙ୍କ ସହିତ । ସଜନକରକୁ—ଅଳଙ୍କାର ସମୂହକୁ ।

୩୭—ରଜନୀଶମୁଖୀ—ଚନ୍ଦ୍ରମୁଖୀ, ଚନ୍ଦ୍ରାବଳୀ । ଯତନ—ସୁନ୍ଦର । ପାଠାନ୍ତର—ଯତନେ—ଯତ୍ନରେ ।

୩୮—ଅତନୁଦେବତା—କନ୍ଦର୍ପ, ସୁତନୁ—କାମଦେବଙ୍କର ଉତ୍ତମ ମୂର୍ତ୍ତିକି ? ସୁତନୁ—ସୁନ୍ଦରୀ, ଚନ୍ଦ୍ରାବଳୀ ଏହା ମଣି ଦେବର ସମ୍ବନ୍ଧେ—ଦିଅର ସମ୍ପର୍କ ଥିବାରୁ, ମନରୁ ବରମାନ୍ୟ—ଅଧିକ ସମ୍ମାନ, ଗୁଡ଼ିଲା ।

ଉଡ଼ି ନ ପଡ଼ନେ ଧଡ଼କ ଦନ୍ତବାସରେ ଧରି ।
ନାସିକା ଫୁଲାଇ ରସିକା ମନ୍ଦହାସ ବିସ୍ତାରି । ୩୯ ।
ମୋଡ଼ିଲା ବଦନ ଆଡ଼ିଲା କରି ବାସ ପଣନ୍ତ ।
ନଚାଇ ଭ୍ରୂଲତା ଲୁଚାଇ ମାରେ ନେତ୍ରାନ୍ତ କୁନ୍ତ । ୪୦ ।
ଦଣ୍ଡକ ରହି ପଦଣ୍ଡକ ଯାଇଁ ତ୍ରପା କୃପାରେ ।
ଶମ୍ପାଗଉରୀ କମ୍ପାଇଣ ଗାତ୍ର ଏଏ ଭଙ୍ଗୀରେ । ୪୧ ।
ପଲକ ନ ଚଳେ ପୁଲକ ଗଣ୍ଡ ଗାତ୍ରେ ପୂରଇ ।
ଭାବ ଅଳଙ୍କାର ଭାବକୁ ଅଙ୍ଗୀକାର କରଇ । ୪୨ ।
ଉଲ୍ଲାସ ହୋଇଲା ବିଳାସ ଲୀଳା ଲଳିତ ରୀତି ।
ଉତ୍କଟ ହୋଇଣ ପ୍ରକଟ ହେଲା ନାଗରୀ ମାତି । ୪୩ ।
କଳା କମଳ ମୁଖ କଳାକରବଦନା ଦେଖି ।
ରସିଲା ମନ ସେ ଭାସିଲା କାମ-ଜଳେ ସୁମୁଖୀ । ୪୪ ।

---

୩୯—ଦନ୍ତବାସରେ—ଓଠରେ ।

୪୦—ନେତ୍ରାନ୍ତ କୁନ୍ତ—କୋଣେଇ ଚାହିଁବା ରୂପକ କୁନ୍ତ ଅସ୍ତ୍ର ।

୪୧—ତ୍ରପାକୃପାରେ—ଲଜ୍ଜା ଓ ଆଦରରେ । ଶମ୍ପାଗଉରୀ—ବିଜୁଳି ପରି ଗୋରୀ ଚନ୍ଦ୍ରାବଳୀ । ଗାତ୍ର—ଦେହ ।

୪୨—ପଲକ—ଆଖିପତା । ପୁଲକ—ରୋମ ଟାଙ୍କୁରିବା । ଗଣ୍ଡ—ଗାଲ । ଗାତ୍ର—ଦେହ । ଅର୍ଥାତ୍—କାମବିକାର ଜନ୍ମିଲା । ତାହାଙ୍କର ଭାବ—ଶୃଙ୍ଗାର ଭାବ, ଅଳଙ୍କାର ଭାବକୁ ଅଙ୍ଗୀକାର—ସ୍ୱୀକାର କଲା । ଅଳଙ୍କାର—ଶରୀରର ଶୋଭାଜନକ ସତ୍ତ୍ୱଗୁଣ ଜାତ ସ୍ୱାଭାବିକ ଧର୍ମ । ସଂଖ୍ୟା ୨୮ । ସାହିତ୍ୟ ଦର୍ପଣ ୩ୟ ପରିଚ୍ଛେଦ ଦେଖ ।

୪୩—ବିଳାସ—ପ୍ରିୟଦର୍ଶନାଦି ହେତୁ ଯିବା, ବସିବା, ଠିଆହେବା ପ୍ରଭୃତି ଓ ମୁଖ, ଚକ୍ଷୁ ପ୍ରଭୃତିର କାର୍ଯ୍ୟରେ ଯେ ଠାଣି ବା ବିଚିତ୍ରତା ତାହା ବିଳାସ ନାମରେ କଥିତ । ଯାନସ୍ଥାନାସନାଦୀନାଂ ମୁଖ ନେତ୍ରାଦିକର୍ମଣମ୍ । ବିଶେଷସ୍ତୁ ବିଳାସଃ ସ୍ୟାଦିଷ୍ଟସନ୍ଦର୍ଶନାଦିନା ସା: ଦ: । ଲୀଳା—ପ୍ରୀତିରେ ବ୍ୟାକୁଳ ହୋଇ ଶରୀର, ବେଶ, ଅଳଙ୍କାର, ପ୍ରେମକଥା ପ୍ରଭୃତିରେ ପ୍ରିୟର ଅନୁକରଣ କରିବା ।

ଲଳିତ—କୋମଳତା ହେତୁ ଅଙ୍ଗମାନଙ୍କର ମନୋହର ବିନ୍ୟାସ ବା ଚାଳନ—ସୁକୁମାରତୟାଙ୍ଗାନାଂ ବିନ୍ୟାସୋ ଲଳିତଂ ଭବେତ୍ । ରୀତି—ପ୍ରକାର, ଉଲ୍ଲାସ—ପ୍ରକାଶିତ ହେଲା. ନାଗରୀ—ବିଳାସିନୀ ସ୍ତ୍ରୀଙ୍କର; ମାତି—ବ୍ୟବହାର, ଉତ୍କଟ—ଅଧିକ, ହୋଇ ପ୍ରକଟ ପ୍ରକାଶିତ ହେଲା ।

୪୪—କଳାକରବଦନା—ଚନ୍ଦ୍ରମୁଖୀ ଚନ୍ଦ୍ରାବଳୀ । କଳାକମଳମୁଖ—କୃଷ୍ଣଙ୍କର ପଦ୍ମମୁହଁ ।

ବାଳାର ମନ ଯେ ମାଳାର ଦେବା ବେଳେ ଆତୁର ।
ବରଣ କରି ମୁଁ ଶରଣ ହେବି, କରେ ବିସ୍ତର । ୪୫ ।
ମନ ବାରଣ ଅବାରଣ କୋଳ ଇଚ୍ଛେ ଲମ୍ପଟେ ।
ବିସ୍ମର ମାହୁନ୍ତ ପ୍ରସ୍ମର ଲଜ୍ଜାଙ୍କୁଶେ ଆକଟେ । ୪୬ ।
ବାହୁଡ଼ ଆସନ୍ତେ ସେ ହୁଡ଼ ହୁଡ଼ ପଡ଼ଇ ପଥ ।
ପଡ଼ିଲା ମୋହରେ ପୋଡ଼ିଲା ମନକୁ ମନମଥ । ୪୭ ।
ଗୋବିନ୍ଦ କରି ଅରବିନ୍ଦମୁଖୀ-ମୁଖ ଦର୍ଶନ ।
ନିଶ୍ଚଳ ହୋଇଲା ଅଚଳ ପରି ସର୍ବାଙ୍ଗ ସ୍ଥାନ । ୪୮ ।
ଭିବିତ ବାସବ ପବି ତ ହେଲା ଲଜ୍ଜା ତହିଁକି ।
ତୀକ୍ଷଣ ଶରକୁ ସେକ୍ଷଣ ସ୍ମର ବିନ୍ଧିଲା ହାଁକି । ୪୯ ।
ଉଭୟ ମନେ ସ୍ମରଭୟ ଚେତଚେବେଳୁ ପାଇଲେ ।
ବିକାର ହାସରୁ ସ୍ୱୀକାର ମଣି ମନ ବୋଧିଲେ । ୫୦ ।
ସେକ୍ଷଣେ ମୋହନ ତକ୍ଷଣେ ଗଲେ ମେଲାଣି ହୋଇ ।
ଭେଟିଲେ ସଖାଙ୍କୁ ବଟିଲେ ବାହ୍ୟ ଲୋକେ ଭୁଲାଇ । ୫୧ ।
ଭଗବତଙ୍କୁ କହି ଭଗବତୀ ଗଲେ ସ୍ୱପୁରେ ।
ଅପ୍ରାସରେ ଏ ଅନୁପ୍ରାସ ଛନ୍ଦ ବିସ୍ତରି ଧୀରେ । ୫୨ ।
ବିଦଗଧ ଏ ବିଦଗଧ-ଚିନ୍ତାମଣି ପ୍ରବନ୍ଧ ।
ବୁଧଙ୍କ ମନକୁ ବୋଧକ, ଅଜ୍ଞ ଏଥିକି ଅନ୍ଧ । ୫୩ ।
ଗୋବିନ୍ଦ-ଗୁରୁ-ଅରବିନ୍ଦ-ପଦ-ରସେ ମିଳିନ୍ଦ ।
ହେଲେ ତ ଜାଣିମ ନହେଲେ ତ ଏଥି ନୁଗନ୍ଧିସ୍ୱାଦ । ୫୪ ।

---

୪୬—ମନବାରଣ—ମନରୂପକ ହାତୀ । ଅବାରଣ—ବନ୍ଦ କରି ହୁଏ ନାହିଁ । ଲମ୍ପଟେ—ଆସକ୍ତ ହୋଇ । ବିସ୍ମର—ବିବେକରୂପ ମାହୁନ୍ତ । ପ୍ରସ୍ମର—ଉଦ୍ଧତ ହୋଇ ଲଜ୍ଜାରୂପକ ଅଙ୍କୁଶଦ୍ୱାରା ଆକଟ କରୁଛି । ହାତୀକୁ ମାହୁନ୍ତ ଅଙ୍କୁଶ-ଦ୍ୱାରା ଆକଟ କରେ, ଏଠାରେ ବିବେକ ଲଜ୍ଜାଦ୍ୱାରା ମନକୁ ଆକଟ କଲା ।

୪୭—ମନମଥ—କନ୍ଦର୍ପ ।

୪୮—ଅରବିନ୍ଦମୁଖୀ—ପଦ୍ମମୁହାଁ, ଚନ୍ଦ୍ରାବଳୀ । ଅଚଳ—ପର୍ବତ ।

୪୯—ବାସବପବି—ଇନ୍ଦ୍ରର ବଜ୍ର । ଭିବିତ ହେଲା—ବିସ୍ତର କଲା । ସ୍ମର—କନ୍ଦର୍ପ । ହାଙ୍କି—ଟାଣି ।

୫୧—ବଟିଲେ—ଭଣ୍ଡିଲେ । ବାହ୍ୟ ଲୋକେ—ବାହାର ଲୋକଙ୍କୁ ।

୫୨—ଅପ୍ରାସରେ—ଅକ୍ଳେଶରେ ।

୫୩—ବିଦଗଧ—ହେ ପଣ୍ଡିତମାନେ । ପ୍ରବନ୍ଧ—ଗ୍ରନ୍ଥ । ବୁଧଙ୍କ—ପଣ୍ଡିତ-ମାନଙ୍କର । ବୋଧକ—ବୁଝିପାରିବେ । ଅଜ୍ଞ—ମୂର୍ଖ ।

ଘଡଇ କେବଳ ଭାସଇ ଭବଜଳେ ମୂର୍ଦ୍ଧ ତ ।
ସାମନ୍ତସିଂହାର ସାମନ୍ତ ଶ୍ୟାମ ଚନ୍ଦ୍ର ନାହିଁ ତ । ୫୫ ।

---

## ଚତୁର୍ଦ୍ଦଶ ଛାନ୍ଦ

## ଚନ୍ଦ୍ରାବଳୀ ଭାବ-ଭାବନା—ଦୂତୀ ପ୍ରେରଣ

ରାଗ—କାଳୀ । ଆଦ୍ୟଯମକ—ପଞ୍ଚାକ୍ଷର ।

ଶ୍ରବଣେ ଧୀରେ ଶ୍ରବଣେ ଧୀରେ ଲଭିବ ମହାନନ୍ଦ ।
ଭାବ କରତ ଭାବନୀ ରତ ହୋଇ ପରମାନନ୍ଦ । ୧ ।
ଭାସନ୍ତ ରସେ ଭାଷନ୍ତ ରସେ ମିତ ଆଗରେ ବସି ।
ଗୁଣୀ ତିଳକ ଗୁଣି, ତିଳକ ଯୁଗ ହୋଇଲା ଆସି । ୨ ।
ଦର ସନକ ଦରଶନ କଲେ ତ ପାଇବେ ମାରେ ।
ତାର ମୂରତ ତାର ମୂଁ ରତ ଲକ୍ଷିବ କ ଗୁଣରେ । ୩ ।

---

୫୫—ଗୋବିନ୍ଦଙ୍କର ଗୁରୁ—ସନ୍ଦର. ଅରବିନ୍ଦପଦରସେ—ପଦ୍ମରୂପ ପାଦର ମକରନ୍ଦରେ, ମିଳିନ୍ଦ—ଭ୍ରମର, ହେଲେ ଏ ହୃଦର ଅଭିପ୍ରାୟରୂପ ସୁବାସ ଓ ସ୍ୱାଦୁ—ମାଧୁର୍ଯ୍ୟ ହେଲେ—ଅକ୍ଳେଶରେ; ଜାଣିବ ।

୫୫—ଭବଜଳେ—ସଂସାର ସାଗରରେ ।

---

( ପଞ୍ଚାକ୍ଷରୀ ଆଦ୍ୟଯମକ—କୋଟିବ୍ରହ୍ମାଣ୍ଡସୁନ୍ଦରୀ ୧୭ ଛାନ୍ଦ ଓ ସଦାନନ୍ଦ କବିସୂର୍ଯ୍ୟଙ୍କ ଯୁଗଳରସାମୃତ ଭଉଁରୀ ୧୭ ଛାନ୍ଦ ଦେଖ )

୧—ହେ ଧୀରମାନେ ଶ୍ରବଣେ—କାନରେ, ଶ୍ରବଣେ—ଶୁଣିବାଦ୍ୱାରା, ଧୀରେ—ବୁଦ୍ଧିରେ, ମନରେ; ମହାନନ୍ଦ ଲଭିବ । ପରମାନନ୍ଦ—ଶ୍ରୀକୃଷ୍ଣ, ଭାବନୀ-ରତ ସ୍ତ୍ରୀ, (ଚନ୍ଦ୍ରାବଳୀ) ଠାରେ ଆସକ୍ତ ହୋଇ । କରତ ଭାବ—ସୁନ୍ଦର ଭାବନା କର ।

୨—ରସେ—ଶୃଙ୍ଗାରରସରୂପକ ଜଳରେ, ଭାସନ୍ତ । ବସି ମିତମାନଙ୍କ ଆଗରେ ରସେ—ଅନୁରାଗରେ, ଭାଷନ୍ତ । ଗୁଣୀତିଳକ—ଗୁଣବତୀ ଶ୍ରେଷ୍ଠା ଶ୍ରୀ ଚନ୍ଦ୍ରାବଳୀଙ୍କୁ, ଗୁଣି—ଭାବନା କରି, ତିଳକ—କ୍ଷଣକେ, ଆସି ଯୁଗ ହୋଇଲା । କିମ୍ବା ହେ ଗୁଣୀତିଳକ—ମିତ ।

୩—ଦର—ଭୟ । ସନକ—ଜଣେ ଋଷି । ମାରେ—କନ୍ଦର୍ପଙ୍କୁ । ତାର ମୂରତ—ଦାପ୍ରିବନ୍ତ ଆକାର । ତାର—ସେହି ଚନ୍ଦ୍ରାବଳୀର । ରତି—କନ୍ଦର୍ପ ପତ୍ନୀକୁ । ଲକ୍ଷିବ—ସମାନ କରିବ ।

ମୋହ ନାଶର ମୋହନା ଶର ଜନମି ଅଛୁ ସେହ ।
ପର ସଂସାରେ ପରଶଂସାରେ କହବ କେହ ମୁହିଁ । ୪ ।
ଚନ୍ଦ୍ରାବଳୀ କ ଚନ୍ଦ୍ରାବଳୀ କ ହାର ଶରଣ ନଖେ ।
ଦରପଣତ ଦର ପଣତ ପାଇବ ଯୋଖୁଁ ମୁଖେ । ୫ ।
କ ସୁ-ମନରେ କ ସୁମନରେ ମନାଇଥିଲ ହର ।
ତାର ଆଲୋକ ତାର ଆଲୋକ ହେଲା ସେ ପୁଣ୍ୟ ମୋର । ୬ ।
ସୁରମଣୀକ ସୁରମଣୀକ ଚକ କ ମୋହବାର ।
ରତ ଭାରତୀ ରତଭାରତ କ, ସେ ତ ଅଳଙ୍କାର । ୭ ।
ମୋହ ନମିତ୍ତ ମୋହନୀମିତ ଜନମିଅଛୁ ଆସି ।
ଆନନ ଭାବ ଆନ ନ ଭାବ ସେ ମନ ବନ୍ଧପାଶୀ । ୮ ।
ସୁନ୍ଦରପଣ ସୁ-ଦରପଣ ଦେଖି ପାଇବେ ହର ।
ଆନନ ରସି ଆନ ନ ରସି ଯୋଗୀ ଇଚ୍ଛିବେ ଘର । ୯ ।
ଅପସରା କ ଅପସର କ ନ ପିବେ ମାନ ମ୍ଳାନେ ।
ଅଳକାପନ୍ତ ଅଳକାପତ ଦେଖି ମଜ୍ଜିବ ଛନ୍ଦେ । ୧୦ ।

---

୪—ମୋହ ନାଶର—ମତେ ନାଶ କରବାକୁ । ମୋହନା ଶର—ମୋହକାରୀ ବାଣ । ପର—ଅନ୍ୟ କମ୍ବା ଶ୍ରେଷ୍ଠ । ପରଶଂସାରେ—ପ୍ରଶଂସା କର । କେହ—କାହାକୁ ବା କପର ।

୫—ଚନ୍ଦ୍ରାବଳୀ—ଗୃନ୍ଦ ସଖୀ । ଦରପଣ—ଆରଶି । ଦରପଣ—ଭସ୍ମ । ଯୋଖୁ—ତୁଳନା କଲେ ।

୬—ସୁମନରେ—ଭଲ ମନରେ । କ ସୁମନରେ—କେଉଁ ଫୁଲରେ । ହର—ଶିବ । ତାର ଆଲୋକ—ତାରାର ଦୀପ୍ତି ପର । ତାର ଆଲୋକ—ସେହ ଚନ୍ଦ୍ରାବଳୀର ଦେଖା ।

୭—ସୁରମଣୀକ—ଇନ୍ଦ୍ରଙ୍କ । ସୁ-ରମଣୀ—ସୁନ୍ଦରୀ ସ୍ତ୍ରୀ, ଚନ୍ଦ୍ରାବଳୀ ପକ୍ଷରେ । ଚକ—ଆଶ୍ଚର୍ଯ୍ୟ । ଭାରତୀ—ସରସ୍ୱତୀ । ରତଭାରତୀ—ରତଏ—ଟିକଏ, କଥା । ଅର୍ଥାତ୍—ଅତ ତୁଚ୍ଛ । ଚନ୍ଦ୍ରାବଳୀ ଅଳଙ୍କାର—ଏମାନେ ତୁଳନା କନଷ ।

୮—ମୋହ ନମିତ୍ତ—ମୋ ପାଇଁ । ମୋହନୀ—ମୋହକାରଣୀ । ଆନନ—ମୁଖ । ଆନ—ଅନ୍ୟ । କହୁ ନ ଭାବ—ଭାବନା ନ କର । ମନବନ୍ଧପାଶୀ—ମନବନ୍ଧା ଫାଶ ।

୯—ସୁନ୍ଦରପଣ—ସୌନ୍ଦର୍ଯ୍ୟ । ସୁ—ଦରପଣ-ବଡ଼ ଭସ୍ମ । ହର—ମହାଦେବ । ଆନ ନ ରସି—ଅନ୍ୟରେ ଆସକ୍ତ ନ ହୋଇ । ଯୋଗୀ······ ସନ୍ନ୍ୟାସୀ ଗୃହୀ ହେବାକୁ ମନ କରବେ ।

ମନମଥର ମନ ମନ୍ଥରଗମନା ମୋହ୍ନିପାରେ
ନ ବିନାଶେ କି ନବନା ସେ କି ଅନକୁ ଲୋକନରେ । ୧୧ ।
ଧ୍ୟାନ କରୁ ଧୀଆନ କରୁଅଛି ମୋର ତା ଛବି ।
କୁସୁମଶର କୁସୁମ ଶର ହେଲା ଆସି ତ ପବି । ୧୨ ।
ଜୀବନ ଯିବ ଜୀବନଜୀବ ନ ହେଲେ ଗୃନ୍ଦମୁହିଁ ।
ସୁନାସୀର ତ ସୁ-ନାସୀରତ ପାଇଲେ ହେବ ମୁହିଁ । ୧୩ ।
ଗତି କି କଲ ଗତିକି କଳାବତୀ ଆସିବା ବେଳେ ।
ସୁମତି ହରି ସୁମତି ହରି ନେଲା ମୋର ସେ କାଳେ । ୧୪ ।
ଦର୍ପକର ସେ ଦର୍ପକ ରସେ ଭାସିଲି ତାକୁ ଚାହିଁ ।
ଅଙ୍ଗନାବର ଅଙ୍ଗ-ନାବର ବିନା ତରିବି କେହ୍ନି । ୧୫ ।
ସେ ହିତ ଦିଶେ ଯେହ୍ନି ତ ଦିଶେ ନୟନ ପାଶେ ମୋର ।
କେହ୍ନି ତରକ-କେ ହିତର କି ଜାଣ ଉପାୟେ କର । ୧୬ ।

---

୧୦—ଅପସସ୍ତି—ଅପ୍‌ସରାମାନେ । ଅପସର ନ ଯିବେ—ଅଡ଼େଇ ହୋଇ ନ ଯିବେ କି ? ମାନ ମ୍ଳାନେ—ଗର୍ବନାଶ ହେବାରୁ କିମ୍ବା ଅପମାନରୁ । ଅଳକାପନ୍ତ୍ର—ଅଳକା ସବୁ । ଅଳକାପତି—କୁବେର । ଛନ୍ଦେ—ଉତ୍କଣ୍ଠାରେ ବା ବହ୍ୱଳ ହୋଇ ।

୧୧—ମନମଥର—କନ୍ଦର୍ପର । ମନ୍ଥରଗମନା—ମନ୍ଦଗମନା ଚନ୍ଦ୍ରାବଳୀ । ନ ବିନାଶେ କି—ବିନାଶ ନ କରିବ କି ? ନବୀନା—ନବଯୁବତୀ ଚନ୍ଦ୍ରାବଳୀ । ଲୋକନରେ—ଦୃଷ୍ଟିରେ ।

୧୨—ଧ୍ୟାନ—ଭାବନା, ଚିନ୍ତା । ଧୀ—ବୁଦ୍ଧି । ଆନ—ଅନ୍ୟ ପ୍ରକାର । ଛବି—ଶୋଭା । କୁସୁମଶର କୁସୁମଶର—କନ୍ଦର୍ପର ଫୁଲବାଣ । ପବି—ବଜ୍ର ।

୧୩—ଜୀବନ—ପ୍ରାଣ । ଜୀବନ ଜୀବ—ପ୍ରାଣଧନ ପରି । ସୁନାସୀର—ଇନ୍ଦ୍ର । ସୁ-ନାସୀରତ—ସୁନ୍ଦର ନାସିକା ଯୁକ୍ତ ଚନ୍ଦ୍ରାବଳୀର ସମ୍ଭୋଗ ।

୧୪—ଗତି—ଗମନ । ଗତି—ଅବସ୍ଥା ବା ଭଙ୍ଗୀ । ସୁମତି ହରି—ବୁଦ୍ଧିମତୀ ଚନ୍ଦ୍ରାବଳୀର କାନ୍ତି । ସୁମତି—ଉତ୍ତମ ବୁଦ୍ଧି ହରି ନେଲା ।

୧୫—ସେ ଦର୍ପକର—କନ୍ଦର୍ପର । ଦର୍ପକ—ଗର୍ବକାରୀ, ଉତ୍ତେଜକ । କିମ୍ବା ଦର୍ପକ ରସରେ—କାମ ରସରେ ସେ ଦର୍ପକ । ଅଙ୍ଗନାବର—ସ୍ତ୍ରୀ ଶ୍ରେଷ୍ଠ ଚନ୍ଦ୍ରାବଳୀର ଅଙ୍ଗରୂପ ନୌକା ।

୧୬—ସେ ଚନ୍ଦ୍ରାବଳୀ ମୋ ପକ୍ଷରେ ହିତ—ମଙ୍ଗଳ ରୂପରେ ଦେଖାଯାଏ । ସେହ୍ନି ପୁଣି ଅଖି ଆଗରେ ଦିଶେ । ତରକ—ଭାବ । ହିତର—ଉପକାର, ମଙ୍ଗଳର ।

ବିଚର କରି ବି-ଚର କରିଗତି ତୁମ୍ଭକୁ ପେଷ ।
ବିଦେହ ଶରେ ବି-ଦେହ ସରେ, ମୋର ପୂରାଅ ଆଶ । ୧୭ ।
ହରିର ଭାଷ ହରିର ଭା-ସକଳ ସଖୀମୁଖୁଁ ଶୁଣି ।
ବିରସ ତେଜ, ବୀର ସତେଜ ହୁଅ ବୋଇଲେ ବାଣୀ । ୧୮ ।
ଗୋ ବରଧନ ଗୋବରଧନ କାନ୍ତାକୁ ଲେଖ ଲେଖ ।
ମାନବୀ ସେ, ତ ମାନ, ବିଷେ ତ ଦେଖିଛୁ ତୁମ୍ଭ ମୁଖ । ୧୯ ।
ଚିନ୍ତେ ବାମାର ଚିତ୍ତେ ବା ମାର ପ୍ରବେଶ ହୋଇବନି ।
ପରମଦାର ପରମ ଦାରଣ ହୃଦ କରିବନି । ୨୦ ।
ନବ ରମଣୀ ନବର ମଣି ଅଛୁ ଶ୍ରୀଦାମ ଯାଉ ।
ଶଂଖାର-ଗୁଣ-ସଖାର ଗୁଣ ଏତକ କରିଥାଉ । ୨୧ ।
ଭାବଇ ଲେଖ ଭାବର ଲେଖନ କରି ମତେ ଦେଲେ ।
ମାଧବ ଭାଷି, ମାଧବ ଭାଷି ଯାଅ ଏ ଶୁଭ ବେଳେ । ୨୨ ।

---

୧୭—ବିଚର—ବିଶିଷ୍ଟ ଦୂତ ଅଥବା ପକ୍ଷୀକୁ ଦୂତ କରି । କରିଗତି—ଗଜଗମନା ଚନ୍ଦ୍ରାବଳୀ । ବିଦେହ—ଶରେ—କନ୍ଦର୍ପ ଶରଦ୍ୱାରା । ବି—ବିଶିଷ୍ଟ କିମ୍ବା ନିଶ୍ଚୟ, ଦେହ ସରେ—ନଷ୍ଟ ହେଉଅଛି ।

୧୮—ହରିର ଭାଷ—ଶ୍ରୀକୃଷ୍ଣଙ୍କର କଥା ଓ ହରିର—ନାୟିକା ଚନ୍ଦ୍ରା-ବଳୀର, ଭା—ଶୋଭା । ବିରସ—ଦୁଃଖ । ବୀର—ବଳବାନ୍ ସତେଜ—ଧୀର ।

୧୯—ଗୋବରଧନ—ଗୋରୁଙ୍କୁ ଯେ ବଢ଼ାଏ କିମ୍ବା ଗୋରୁ ପରମ ଧନ ଯାହାର ଅର୍ଥାତ୍ ଗଉଡ଼ । ଗୋବରଧନ କାନ୍ତାକୁ—ଗୋବର୍ଦ୍ଧନ ମଲ୍ଲ ସ୍ତ୍ରୀ ଚନ୍ଦ୍ରାବଳୀଠାକୁ । ଲେଖ—ଚିଠି, ଲେଖା । ମାନବୀ—ମନୁଷ୍ୟର ସ୍ତ୍ରୀ । ମାନ—ଆତ୍ମ କଥା ଘେନ । ବିଷେତ—ବିଷୟରେ, ପ୍ରସଙ୍ଗରେ କିମ୍ବା ବିଶେଷତଃ ।

୨୦—ଚିନ୍ତେ—ବିଚାର କରେ । ବାମାର—ସୁନ୍ଦରୀ ଚନ୍ଦ୍ରାବଳୀର । ଚିତ୍ତେ—ହୃଦୟରେ ବା—ମଧ୍ୟ । ମାର—କନ୍ଦର୍ପ । ପରମଦାର—ପ୍ରମଦା—ନାରୀ ଚନ୍ଦ୍ରାବଳୀର ହୃଦ । ପରମଦାରଣ କରିବନି—ଭଲରୂପେ କରିଥିବଣି ।

୨୧—ନବରମଣୀ ନବର—ସେ ନବୀନା ଚନ୍ଦ୍ରାବଳୀର ନଅରକୁ । ମଣିଅଛୁ—ଚିହ୍ନିଅଛୁ । ଶଙ୍ଖାର—କୃଷ୍ଣଙ୍କର, ଗୁଣ ସଖାର—ଗୁଣସଖାର । ଗୁଣ—ସୌଜନ୍ୟ, ଭଲପଣ କିମ୍ବା ହେ ସଙ୍ଖାର—କୃଷ୍ଣ ! (ଶ୍ରୀଦାମ କୃଷ୍ଣଙ୍କର ଗୁଣ ସଖା ଅଟେ ।)

୨୨—ଭାବର ଲେଖ—ସ୍ନେହର ଚିଠାଉ । ଭାବର—ଅଭିପ୍ରାୟ ଅନୁ-ସାରେ କିମ୍ବା ତେଜୋଯୁକ୍ତ କୃଷ୍ଣ । ଲେଖନ କରି—ଲେଖି । କିମ୍ବା ଭାବର ମିତେ ······ଦେଲେ । ମାଧବ—କୃଷ୍ଣ । ଭାଷି—କହିଲେ । ମାଧବ—ବିଷ୍ଣୁଙ୍କୁ । ଭାଷି—କହି । ଅର୍ଥାତ୍ ମାଧବ ନାମ ଧରି ଯାଅ । ଗଲାବେଳେ ଦୁର୍ଗାମାଧବ କହି ଯାଆନ୍ତୁ ।

ସେ ଉତ୍ତରକୁ ସେ ଉତ୍ତରକୁ ମାନ ବହନ ଗଲା ।
ଅଙ୍ଗନାଶରେ ଅଙ୍ଗନା ସରେ ସେ ପୁରେ ଶୁଣାଗଲା । ୨୩ ।
ରଜନିକର ରଜନୀକର-ମୁଖୀ ବୋଳେ ଗାତ୍ରରେ ।
ହା ରବହିଁ ତ, ହାର ବନ୍ଧ ତ ନ ପାରେ ଅବଶରେ । ୨୪ ।
ସଜ ନିକର ସଜନୀ କର ମଣଇଁ ପର ଭାର ।
ବରଷା ରସ ବରସାରସନୟନୁଁ ବହେ ଡାର । ୨୫ ।
ରସି କାମରେ ରସିକା ମରେ, ସଜନୀ ଆଗେ ଭଣେ ।
ପଶୁପସୁତ ପଶୁପସୁତକୁ ସର କହିଁ ଗୁଣେ । ୨୬ ।
ନାଗ-ରମଣୀ ନାଗରମଣି ଦେଖିଲେ ଭୁଲିପିବେ ।
ସୁର-ସମ୍ପଦ ସୁରସପଦ ଛୁଇଁଲେ ଅରଜିବେ । ୨୭ ।
ସୁର-ତରୁଣୀ ସୁରତ-ଋଣୀ ହୋଇବେ ଦରଶନେ ।
ମାନବୀ କେ ସେ ମାନ ବକ ସେ ବଳେ ଭଜିବେ ଛନ୍ଦେ । ୨୮ ।

---

୨୩—ଉତ୍ତରକୁ—ଉତ୍ତର ଦିଗ । ଉତ୍ତରକୁ—ବାକ୍ୟକୁ । ଅଙ୍ଗନାଶରେ—କନ୍ଦର୍ପଦ୍ୱାରା (ଅଙ୍ଗର ନାଶ ଯାହାର । ଅଙ୍ଗନାଶ—କାମ) । ଅଙ୍ଗନା ସରେ ସ୍ତ୍ରୀ ଚନ୍ଦ୍ରାବଳୀ ସରୁଅଛି । ପୁରେ—ଘରେ । ବା ଅଙ୍ଗ ନାହିଁ ଯାର ସେ ଅଙ୍ଗନା ତା ଶରରେ ।

୨୪—ରଜନିକର—କର୍ପୂର ବା ଧୂଳିସବୁ । ରଜନୀକରମୁଖୀ—ଚନ୍ଦ୍ରମୁଖୀ ଚନ୍ଦ୍ରାବଳୀ । ଗାତ୍ରରେ ଦେହରେ (ଶ୍ରୀକୃଷ୍ଣଙ୍କର ପାଦଧୂଳି ସବୁ ବା ଭୂମିରେ ଗଡ଼ିବାଦ୍ୱାରା ବୋଳୁଥିଲା) । ହା ରବ—'ଆହା' ଏହି ଶବ୍ଦ । ହାର—ମାଳ । ବନ୍ଧ—ବନ୍ଧନ କରି ।

୨୫—ସଜନିକର—ଅଳଙ୍କାର ସବୁ । ସଜନୀ କର—ସଖୀର ହାତ । ପରଭାର—ବଡ଼ ଭାରି । ବରଷାରସ—ବର୍ଷାକାଳ ପରି ପାଣି; ଲୁହ । ବର-ସାରସ ନୟନୁ—ଉତ୍କୃଷ୍ଟ ପଦ୍ମରୂପ ଆଖିରୁ ।

୨୬—କାମରେ ରସି—କନ୍ଦର୍ପରେ ଆସକ୍ତ ହୋଇ । ସୁରସିକା—ଚନ୍ଦ୍ରାବଳୀ, ମରେ—ମରୁଅଛି । ଭଣେ—କହେ । ପଶୁପସୁତ—କାର୍ତ୍ତିକେୟ । ପଶୁପସୁତକୁ—ଗଉଡ଼ ପୁଅ କୃଷ୍ଣଙ୍କୁ ।

୨୭—ନାଗରମଣୀ—ନାଗଲୋକର ସ୍ତ୍ରୀ । ନାଗର-ମଣି—ବିଳାସିଶ୍ରେଷ୍ଠ କୃଷ୍ଣଙ୍କୁ । ସୁରସ ପଦ—ସୁନ୍ଦର ପାଦ ବା ମାଧୁର୍ଯ୍ୟାଦି ରସଯୁକ୍ତ କୃଷ୍ଣଙ୍କ ପାଦ । ସୁରସମ୍ପଦ—ଦେବଙ୍କ ସମ୍ପତ୍ତି ଅର୍ଜିବେ ।

୨୮—ସୁର ତରୁଣୀ—ଦେବତାଙ୍କର ସ୍ତ୍ରୀ । ସୁରତ ଋଣୀ—ସମ୍ଭୋଗରେ ଅଧୀନ । ସେ ମାନବକ—ଅଭିମାନ ଛାଡ଼ି, ଛନ୍ଦେ—ଉତ୍କଣ୍ଠାରେ ଭଜିବେ । ମାନବୀ କେ ? ସାମାନ୍ୟ ମନୁଷ୍ୟ ସ୍ତ୍ରୀ କଥା ବା କଣ ?

କଂକଣୀବର କ କର ବରଜବାର ପାଦେ ହେବ ।
ସଙ୍ଗିନକର ସଙ୍ଗିମା କର ନୋହିଲେ ପ୍ରାଣ ଦେବ । ୨୯ ।
ସାର ସମ୍ପଦ ସାରସପଦ ପାଇ ମୁଁ ଛାଡ଼ି ଦେଲି ।
ମନ୍ଦାକ୍ଷରେ ତ ମନ୍ଦାକ୍ଷରେ ତ ସର୍ବାଙ୍ଗ ନ ଦେଖିଲି ।୩୦।
ଧ୍ରୁବ ଲୋକରେ ଧ୍ରୁବଲୋକରେ ପଡ଼ନ୍ତା ପଛେ ନିନ୍ଦା ।
ବିଧିର ବାମୁ ବିଧୀର ବା ମୁଁ ସେ କାଳେ ହେଲି ଧନ୍ଦା ।୩୧।
ନ କଲି କୋଳ ନକଲି କୋଳ-ସ୍ତ୍ରି ଗଣନା ହେଲି ।
ସ୍ୱ-ବରଧନେ ସ୍ୱବର ଧନେ କଣ ତା ନ ବୋଇଲି ।୩୨।
ଭବ-ମୂରତ ଭବ ମୁଁ ରତ ପାଇବ କ ଉପାୟେ ।
କୁସୁମଧନୁ କୁସୁମ ଧନୁ ଟାଣୁଛି କର୍ଣ୍ଣଯାଏ । ୩୩ ।
ଧରମ ହତ ଧର ମହତ କଥାଏ କହେ ସଖି ।
ଏ ମନ୍ତ୍ରର ତ ଏମନ୍ତ ରତ କେ ଦେଲା ଚନ୍ଦ୍ରମୁଖୀ । ୩୪ ।
କାନ୍ତବର ତ କାନ୍ତବରତ ଛଡ଼ାଇ ଦେଲା ଚୋର ।
ପର-ମନ୍ଦିଷା ପରମ ନିଷ୍ଠା ପରିପେ ଅଗୋଚର । ୩୫ ।

---

୨୯—କଙ୍କଣୀବର—ବଡ଼ ଗୃହିଣୀ । କକର—କପଟ । ବରଜବାର—ଗଉଡ଼ ଭିତରେ ବୀର କୃଷ୍ଣ । ସଙ୍ଗିନକର—ହେ ସଖୀମାନେ । ସଙ୍ଗିମା କର—ମିଳନ କରାଅ ।

୩୦—ସାରସମ୍ପଦ—ଉତ୍କୃଷ୍ଟ ସମ୍ପତ୍ତି, ପତିବ୍ରତାପଣ । ସାରସପଦ—ପଦ୍ମ ପରି ପାଦ । ମନ୍ଦାକ୍ଷରେ—ଲଜ୍ଜରେ । ମନ୍ଦାକ୍ଷରେ—ମନ୍ଦ ଆଖିରେ । ସର୍ବାଙ୍ଗ—ଦେହଟାଯାକ ।

୩୧—ଧ୍ରୁବ—ନିଶ୍ଚେ । ଲୋକରେ ଧ୍ରୁବଲୋକରେ – ଇହଲୋକଠାରୁ ଧ୍ରୁବଲୋକ ପର୍ଯ୍ୟନ୍ତ ସବୁଲୋକରେ । ବିଧିର ବାମୁ—ବିଧାତା ବକ୍ର—ପ୍ରତିକୂଳ, ବିଧୀର—ଅଧୀର । ଧନ୍ଦା—ହାଉଳି ।

୩୨—କୋଳ ନ କଲି—ଆଲିଙ୍ଗନ କଲି ନାହିଁ । ନକଲି—କୋଳସ୍ତ୍ରିଶ—ମିଛରେ କୁଳ ସ୍ତ୍ରୀ ବା ଘୁଷୁରି ସ୍ତ୍ରୀ । ସ୍ୱ-ବରଧନେ—ଶୋଭାଯୁକ୍ତ କୃଷ୍ଣଙ୍କୁ । ସ୍ୱବର ଧନେ—ସ୍ନେହରୂପକ ଧନରେ ।

୩୩—ଭବମୂରତ—ପ୍ରେମର ମୂର୍ତ୍ତି କୃଷ୍ଣଙ୍କର । ରତ—ପ୍ରୀତ । ଭବ—ବସ୍ଥିର କର । କୁସୁମଧନୁ—କାମ । କୁସୁମଧନୁ—ଫୁଲର ଧନୁକୁ ।

୩୪—ଧରମ ହତ ଧର୍ମ ନଷ୍ଟ ହେଲା । ମହତ ଧର—ମହତ୍ତ୍ୱ ବା ବଡ଼ପଣିଆ ରଖ । ମନ୍ତ୍ରର—ମନ୍ଥ । ଏମନ୍ତ—ଏପରି । ରତ—ଅନୁରାଗ ।

୩୫—କାନ୍ତବର—ସୁନ୍ଦର ଶ୍ରେଷ୍ଠ କୃଷ୍ଣ । କାନ୍ତବରତ—ପତିବ୍ରତାପଣ ।

ପରମ ନର ପର ମନର ବଶକୁ କରି ପାରେ ।
ସେବ ଶଙ୍କର ସେ ବଶକର ହେଲେ ବା ହୋଇପାରେ ।୩୬।
ଶତ କୋଟି ତ ଶତକୋଟି ତ ହୋଇଲା ମିତ ଗିର ।
ପର-ବେଶ ତ ପରବେଶ ତ ହୋଇଲା କୃଷ୍ଣ ଘର ।୩୭।
ଭବର ମିତ ଭବରମିତ କାଳେ ଚଟାଉ ଦେଲା ।
ବତର କରୁଁ ବତରକରୁଁ ସିହାଣି ଜାଣିଗଲା ।୩୮।
ଉରୁପଣତ ଉରୁ ପଣତ ପ୍ରସାରି ଲେଖ ଘେନ ।
ପୀୟୂଷକର-ପୀୟୂଷ କରଗତ ପରାୟେ ମାନ ।୩୯।
ମୁଦ ଶ୍ରବଣେ ମୁଦ ଶ୍ରବଣେ ହୋଇବ ଧୀର ନରେ ।
ବଦଗ୍ଧ ଚନ୍ଦ୍ରା ବଦଗ୍ଧଚନ୍ଦ୍ରାମଣି ହରିବ ଖରେ ।୪୦।
ପୂତ-ନାମର ପୂତନା-ମାରଣାଢ୍ୟ ଗୁଣକୁ କହି ।
ଆନନ୍ଦରତ ଆନ ଦରତ ଅଭିମନ୍ୟୁର ନାହିଁ ।୪୧।

---

ପର ମନୀଷା—ପରର ବୁଦ୍ଧି । ପରମ ଦଶା—କାଳବୃଦ୍ଧି ପର ବା ଶ୍ରେଷ୍ଠ ମାଦକ ଜନକ ପର । ଅଗୋଚର—ଜଣାଯାଏ ନାହିଁ ।

୩୬—ପରମ ନର—ପରମ ପୁରୁଷ କୃଷ୍ଣ । ପରମନର ବଶକୁ—ଅନ୍ୟ ଲୋକର ମନକୁ ବଶ କରିପାରେ । ସେବ—ସେବା କର । ଶଙ୍କର ମହାଦେବଙ୍କୁ । ବଶକର—ବଶକାରୀ ବା ଅଧୀନ । ସେ—କୃଷ୍ଣ ।

୩୭—ଶତକୋଟି—ଅସଂଖ୍ୟ । ଶତକୋଟି—ବଜ୍ର । ମିତଗିର—ସଂକ୍ଷିପ୍ତ ବଚନ । ପରବେଶ—ଅନ୍ୟ ବେଶ ବା ଉତ୍କୃଷ୍ଟ ବେଶଧାରୀ । ପରବେଶ—ପ୍ରବେଶ । ପାଠାନ୍ତର—ପରବେ—ଉତ୍ସବରେ । ଘର—ଦୂତ ।

୩୮—ଭବର ମିତ—ଶ୍ରୀଦାମ । ଭବ-ରମିତକାଳେ—କୃଷ୍ଣଙ୍କ ଭବରେ ରତ ଆସକ୍ତ ହୋଇଥିବା ବେଳେ । ବତରକରୁ—ତର୍କଣାରୁ । ସିହାଣୀ—ଚତୁରୀ ଚନ୍ଦ୍ରାବଳୀ ।

୩୯—ଉରୁପଣ—ବଡ଼ପଣ ଯେଉଁ ଚନ୍ଦ୍ରାବଳୀର ସେ । ଉରୁ—ବଡ ପଣତ କାନ (ପ୍ରସାରି) ମେଲଇ । ଲେଖ-ଚଟାଉ, ଘେନ—ନେଲ । ପୀୟୂଷକର ପୀୟୂଷ—ଚନ୍ଦ୍ରର ଅମୃତକୁ । କରଗତ—ହାତରେ ପାଇବା ଭଳି ।

୪୦—ମୁଦଶ୍ରବଣେ—ଚଟାଉ ଶୁଣିଲେ । ମୁଦ—ଆନନ୍ଦ । ଶ୍ରବଣେ—କର୍ଣ୍ଣରେ ।

ଧୀରନରେ—ହେ ପଣ୍ଡିତ ଲୋକମାନେ ! ବଦଗ୍ଧଚନ୍ଦ୍ରା—ଦୁଃଖିଲୋକର ଭାବନାକୁ ବା ରସିକ ଲୋକର ବରହ ଚନ୍ତାକୁ । ଖରେ—ଶୀଘ୍ର ।

୪୧—ପୂତନାମାର—ପବିତ୍ର ନାମଧାରୀ କୃଷ୍ଣଙ୍କର । ପୂତନାମାରଣାଢ୍ୟ—ପୂତନା ରାକ୍ଷସୀକୁ ମାରିବା ପ୍ରଭୃତି । ଆନନ୍ଦରତ—ହର୍ଷରେ ମଜ୍ଜି । ଆନ ଦର-ଅନ୍ୟ କିଛି ଭୟ ।

# ପଞ୍ଚଦଶ ଛାନ୍ଦ

## ଚନ୍ଦ୍ରାବଳୀଙ୍କଠାରୁ କୃଷ୍ଣଙ୍କ ଚଟାଉ

ରାଗ-ଘଣ୍ଟାରବ; ର, ସ ଆଦ୍ୟନ୍ତ ନିୟମ

ରସ ଏ ଛନ୍ଦେ ବିବୁଧ । ର ସ ଆଦ୍ୟ ପ୍ରାନ୍ତେ ବାସ

ରସିକା ମୁଦରେ ଚନ୍ଦ୍ରାନନ ମୁଦରେ ଦେଇ ହେଲା ସ୍ନେହବଶ । ସେ ଗୁଣନିଧୀ ।୧।
ରସାମୃତ କୃଷ୍ଣଭାଷ । ରମଣୀ ପଠନେ ଆଶ ।

ରସିଣ ଚଟାଉ ପଟାଉ ଫିଟାଉ ଟାଉ ଟାଉ ହେଲା ଦୃଶ । ସେ ସୁମତିର ।୨।
ରସନା ଶ୍ରବଣ ଦେଶ । ରଚିଲେ ବାଦ ବିଶେଷ ।

ରସି ମନ ଖରେ ସବୁର ପାଖରେ ଆତୁରେ କଲା ନିବାସ । ସେ ଦୁମତିର ।୩।
ରମଣୀ ହୋଇ ଉଲ୍ଲାସ । ରସନ୍ତେ ଇନ୍ଦ୍ରିୟବଂଶ ।

ରଞ୍ଜନେ ତାଙ୍କର ମୋକ୍ଷପଦ କରକୁ ଦେଲା ଚତୁର୍ଦ୍ଦିଶ ଈଶ । ସେ ପଟଖରେ ।୪।
ରଚନା ଆଦ୍ୟେ ଗିରୀଶ । ରଙ୍ଗ ଚରଣକୁ ଆଶ ।

ରସିଣ ଶ୍ରୀପାଞ୍ଚ ଏ ଉତ୍ତରୁ ପାଞ୍ଚଶର ମୋହନା ପ୍ରକାଶ । ସେ ସୁଭାଷାରେ ।୫।

---

୧—ରସ—ମନ ବଳାଅ । ବିବୁଧ—ହେ ପଣ୍ଡିତମାନେ ! ରସ—"ର" କାର ଓ "ସ" କାର ଅର୍ଥାତ୍ ପହିଲେ "ର" ଓ ଶେଷରେ "ସ" ଅଛି । ବାସ—ବସିଅଛି । ମୁଦରେ —ଚଟାଉରେ । ମୁଦରେ—ଆନନ୍ଦରେ । ଗୁଣନିଧି—ଗୁଣବତୀ ।

୨—ରସାମୃତ—ରସରେ ଅମୃତ ପରି ମିଠା । କୃଷ୍ଣଭାଷ—କୃଷ୍ଣଙ୍କ ଚଠି । ଦୃଶ—ଆଖି ।

୩—ଚନ୍ଦ୍ରାବଳୀର ରସନା—ଜିଭ ଗୁଖିବାକୁ; ଶ୍ରବଣଦେଶ—କାନ, ଶୁଣିବାକୁ ବିଶେଷ ବାଦ—କଳି, କଲେ । କିନ୍ତୁ ମନ ସବୁର ପାଖରେ ରହିଲା (ମନ ସାହାଯ୍ୟରେ ଇନ୍ଦ୍ରିୟମାନେ ପଦାର୍ଥ ସବୁ ବୁଝନ୍ତି । ମନର ମଧ୍ୟ ଏକାବେଳକେ ସବୁ ଇନ୍ଦ୍ରିୟପାଖରେ ରହିବାର ଶକ୍ତି ଅଛି) । ଖରେ—ଶୀଘ୍ର । ଆତୁରେ—ଉତ୍କଣ୍ଠାରେ ।

୪—ଉଲ୍ଲାସ—ଆନନ୍ଦ । ଇନ୍ଦ୍ରିୟବଂଶ—ଇନ୍ଦ୍ରିୟ ସବୁ । ତାଙ୍କର—ଇନ୍ଦ୍ରିୟମାନଙ୍କର, ରଞ୍ଜନେ—ଆନନ୍ଦ ପାଇଁ, କରକୁ ମୋକ୍ଷପଦ ଦେଇ ଖୋଲିବାର ପାଦ୍ର କଲା ବା ମୁକ୍ତଦେଲା, ଅର୍ଥାତ୍ ଚଠି ହାତରେ ଖୋଲିଲା ।

୫—ରଚନା ଆଦ୍ୟେ—ଲେଖାର ପ୍ରଥମରେ । ଗିରୀଶ—ମହାଦେବଙ୍କର, ରଙ୍ଗଚରଣରେ ଆଶା ଅଛି ବା ମହାଦେବଙ୍କ ନାମ । ତାପରେ ତୃନ୍ଦର—ଚନ୍ଦ୍ରାବଳୀର, ରଙ୍ଗଚରଣରେ ଆଶା ଅଛି । ତା ପରେ ଶ୍ରୀ ପାଞ୍ଚ—୫ ଗୋଟି ଶ୍ରୀ ।

ରସନାଧିକ ଅଶେଷ । ରୁଚିର ବିନସ୍ତ ଭାଷ ।
ରସାରେ ସ୍ତବକସ୍ତନାର ଯାବକ ପରି ମୁଁ ହୋଇଲି ଦାସ । ରେ ପ୍ରାଣେଶ୍ୱରି ॥
ରତୀଶ ତାପେ ଅବଶ । ରସଦାମାଙ୍କ ମୋ ଆଶ ।
ରଖ ବା ଶରଣ ନ ରଖ ମରଣ ହେଲେ ହେବଟି ନୀରସ । ଗୋ ଜୀବେଶ୍ୱରି ॥
ରତ୍ନାକରେ କରି ବାସ । ରହିଲେ ଏ ହୀନ କ୍ଳେଶ ।
ରମାପତି ରଥ-ଗ୍ରାସ ମନୋରଥ ପରି ହେବ ଅପଯଶ । ଗୋ ପ୍ରାଣବନ୍ଧୁ ॥
ରଜନୀଶ ସୁଧାରସ । ରମ୍ୟଜିତ-ମୁଖହାସ ।
ରହିଛି ମୋ ମତି ତହିଁରେ ସୁମତି ଅପର ନଶି ଦିବସ । ଗୋ ଗୁଣମଣି ।
ରଙ୍ଗିମା ଭଙ୍ଗୀ ବିଶେଷ । ରହି ହୃଦେ ଦେଲା ତ୍ରାସ ।
ରଖିଥିଲୁ ଧନ ଦୁଃଖ ବରଧନ ପାଇଁ ନେତ୍ରେ ସୁଧାବିଷ । ଗୋ ଜୀବଧନ ॥

---

ପାଞ୍ଚଶର ମୋହନା—କନ୍ଦର୍ପମୋହକାରିଣୀ, ଚନ୍ଦ୍ରାବଳୀର ନାମ ପ୍ରକାଶ ହୋଇଅଛି ।

୬—ରସନାଧି—ରସବତୀ ଚନ୍ଦ୍ରାବଳୀକୁ, ଅଶେଷ—ଅନେକ, ରୁଚିର—ମନୋହର, ବିନସ୍ତ କଥା । ରସାରେ—ଏ ପୃଥିବୀରେ, ସ୍ତବକସ୍ତନାର—ଫୁଲ ତୋଡ଼ା ପରି ସ୍ତନ ଯାହାର, ତୁମ୍ଭର ମୁଁ ଯାବକ—ଅଳତା ପରି, ଦାସ—କିଙ୍କର, ହେଲି ।

୭—ରତୀଶତାପେ—କନ୍ଦର୍ପବାଧାରେ । ଅବଶ—ଅଶକତ । ରସଦାମାଙ୍କ—ରତିଦାମା ଓ ଜଳାଧାର ମେଘ । ନୀରସ—ରସହୀନ, ଶୁଖିଲା ।

୮—ରତ୍ନାକରେ—ରତ୍ନର ଖଣି ବା ସମୁଦ୍ର ତୁମ୍ଭ ନିକଟରେ, ବାସ କରି ଏ ଦୁଃଖୀର କଷ୍ଟ ନ ଗଲେ ରତ୍ନାକରେ—ସମୁଦ୍ରରେ, ରହି ରମାପତି ରଥଗ୍ରାସ—ବିଷ୍ଣୁଙ୍କ ବାହନ ଗରୁଡ଼ର ଖାଇବା ପଦାର୍ଥ—କାଳୀୟ ସର୍ପର ମନୋରଥ—ଇଚ୍ଛା, ପରି ନିନ୍ଦା ହେବ । କାଳି ଗରୁଡ଼କୁ ବର୍ଷକରେ ଥରେ ଖାଦ୍ୟ ଯୋଗାଏ; କିନ୍ତୁ ବର୍ଷେ ତାହା ନ ଦେଇ ଗରୁଡ଼ଙ୍କୁ ଜିଣିବା ଇଚ୍ଛାରେ ଯୁଦ୍ଧ କଲା । କିନ୍ତୁ ଯୁଦ୍ଧରେ ପରାସ୍ତ ହୋଇ ପ୍ରାଣଭୟରେ ପଳାଇ ଯମୁନାରେ ଯାଇ ଲୁଚି ରହିଲା ।

୯—ତୁମ୍ଭ ମୁଖର ହାସ ରଜନୀଶ—ଚନ୍ଦ୍ର, ଓ ସୁଧାରସ—ପଦ୍ମର, ରମ୍ୟଜିତ—ଶୋଭାକୁ ଜିଣିଛି । ମୋ ମନ ତହିଁରେ ଅଛି । ତେଣୁ ଦିନରାତି ସରୁ ନାହିଁ ।

୧୦—ରଙ୍ଗିମା—ଲାଲରଙ୍ଗର । ବିଶେଷ ଭଙ୍ଗୀ—ବାଙ୍କ ଗ୍ରୀହାଣୀ ପ୍ରଭୃତି ଅନେକ ଭଙ୍ଗୀ (ଯେଉଁ ଭଙ୍ଗୀରେ ଗଣ୍ଡ ପ୍ରଭୃତି ସ୍ଥାନ ଲାଲବର୍ଣ୍ଣ ହୋଇଯାଏ) ବରଧନ—ବଢ଼ାଇବା । ନେତ୍ରେ—ଆଖିରେ । ସୁଧାବିଷ—ଅମୃତ ଓ ଗରଳ (ଚାହିଁଲା ବେଳେ ଅମୃତ ପରି ସୁଖ ଏବଂ ପରେ ବିଷ ପରି ଦୁଃଖ ଦେଉଅଛି ।)

ରଙ୍ଗ ଅଧରେ ସୁହାସ । ରସାମୋଦ୍ଗାର ବକାଶ ।
ରଖିଅଛୁ ମାର ଚେତକ ଗମାର ପାଇଥିବାରୁ ଆଶ୍ଲେଷ । ଗୋ ପ୍ରାଣପ୍ରିୟେ ॥
ରଖି ମନ୍ଦାକ୍ଷ ଉଲ୍ଲାସ । ରହଣ କ ଭଙ୍ଗି ରସ ।
ରତନ ମାଳୀ କ ଦଅନ୍ତେ ଭଲ କ ହେଲ ରସିକେ ସୁରେଶ । ଗୋ ଗୁଣନିଧି ॥
ରସା ରସୁଁ ନାସ୍ୱଈଶ । ରମ୍ୟ ଦଶେ କୁଚ ଦେଶ ।
ରତ୍ନସାନୁ-ଶିରପରେ କ ଶଶୀର ଉଦୟ ହେଲ ପ୍ରକାଶ । ସେ ଶୋଭା ଦଶେ ॥
ରହ ଦଣ୍ଡେ ଫେର ବାସ । ରଚିଲୁ ବାଧା ଆଭାସ ।
ରମ୍ୟ ଦୃଷ୍ଟି କୁନ୍ତ ମାର ହୃଦକୁ ତ ଦେଲୁ ହରଷ ପରସ । ରେ ବାମାବର ।
ରଣିତ ନୂପୁର ଘୋଷ । ରସେ ଶ୍ରୁତି କରେ ଆଶ ।
ରଖିଅଛୁ କଣି ମୋପ୍ରାଣ କଙ୍କିଣୀ ତେତେବେଳୁଁ ହେଲ ଦାସ । ଗୋ ପ୍ରାଣପ୍ରିୟେ
ରମ୍ୟ ସ୍ତନ ସୁରବାସ । ରବକର ମୋ ମାନସ ।
ରସଦାମା କର-ସାରଣୀ ମୁଁ କର ଗତିବେଳେ ହୋଇ ତୋଷ ଗୋ । ଜୀବେଶ୍ୱର ।

---

୧୧—ମାର—କନ୍ଦର୍ପ । ଆଶ୍ଲେଷ—ଆଲିଙ୍ଗନ ଅର୍ଥାତ୍ ଯୋଗ ପାଇବାରୁ ।

୧୨—ମନ୍ଦାକ୍ଷ ଉଲ୍ଲାସ (ଲଜ ଓ ହର୍ଷ), ରଖି କ ଭଙ୍ଗୀରେ ରସରେ—ଚତୁରଭାବରେ, ରହଣ ରତନମାଳୀକୁ—ରତ୍ନହାରକୁ, ଦଅନ୍ତେ ମୁଁ ରସିକଙ୍କ ମଧ୍ୟରେ ସୁରେଶ—ଇନ୍ଦ୍ର କ ? ଏହା ଭଲ ହେଲ ।

୧୩—ନାସ୍ୱଈଶ—ସ୍ତ୍ରୀ ଶ୍ରେଷ୍ଠ ତୁମ୍ଭେ, ରସା ରସୁଁ—ମୁହଁ ତଳକୁ କରିବାରୁ, କୁଚଦେଶ—ସ୍ତନ ପ୍ରଦେଶ, ରମ୍ୟ—ସୁନ୍ଦର, ଦଶେ । ରତ୍ନସାନୁ ଶିର ପରେ—ମେରୁ ପର୍ବତର ଶିଖର ଉପରେ, ଶଶୀର—ଚନ୍ଦ୍ରର, ଉଦୟ ପ୍ରକାଶ ହେଲ କ ? (ଉତ୍ପ୍ରେକ୍ଷା) ମୁହଁ ଓ ସ୍ତନ ସେପରି ଶୋଭା ଦଶୁଥିଲ ।

୧୪—ବାସ ଫେର—ପଣନ୍ତ ଟାଣି । ବାଧା ଆଭାସ—କଷ୍ଟ ହେଲପରି କମ୍ପା—ବଧ ଆଭାସ—ମାଇଲ ପରି କଲୁ । ରମ୍ୟଦୃଷ୍ଟି କୁନ୍ତ—ସୁନ୍ଦର ଚାହାଣୀ-ରୂପକ କୁନ୍ତ ଅସ୍ତ୍ର । ପରାସ—କ୍ଲେଶ ।

୧୫—ରଣିତ—ବାଜୁଥିବା । ଘୋଷ—ଶବ୍ଦ । ରସେ—ଆନନ୍ଦରେ । ଶ୍ରୁତି-କାନ ।

୧୬—ସୁରବାସ—ମେରୁ ପର୍ବତ ପରି । ମୋ ମନ ରବକର (ସ୍ପର୍ଶ କରଣପରି) ତାକୁ ଛୁଉଁ ନାହିଁ । ମୁଁ କରସାରଣୀ—ମୁଁ ହାତର ଖେଳବା ଜନସ । କର ଗତବେଳେ—ହାତ ଗୁଳଲବେଳେ ତୋଷ ହୋଇ ରସଦାମା ହୁଅ । କରଗତ —ଦୁଃଖରୁ ରକ୍ଷାକର ।

ରଣରଣେ ହେଲେ ନାଶ । ରସିକମା କ ମାରସ ।
ରଜମାଣ କରେ ପଦ୍ମ ନାଶ କରେ ସେ ହନ୍ଦ୍ରା ପାଏ ଦନେଶ । ଗୋ ଙ୍କବେଶ୍ବର
ରଜ ଅହ୍ବ ଉଡ୍ଡୁ ଈଶ । ରସନ୍ତ ଦେଖ ମହେଶ ।
ରହ୍ବିତ ମୋ ଗୁଣ ହେଲେ ମନେ ଗୁଣ ଅନୁଗତ ହେବୁ ରସ । ଗୋ ଙ୍କବେଶ୍ବର ॥
ରସାଧିକାର ସୁସଶ । ରସାରେ ଶଶୀ ସଦୃଶ ।
ରଙ୍କ ମୋ କୁମୁଦନୟନକୁ ମୁଦ ଚଉଚକୋରକୁ ତୋଷ । ରେ ଙ୍କବେଶ୍ବର ॥
ରଙ୍କୁନେଣୀ ଦେଲେ ଆଶ । ରହ୍ବବ କ କାମବାସ ।
ରଖିଛୁ ପରାଣ ପକାଉଛୁ ସ୍ୱଣ ଆସିବାପାଏ ତୋ ଭାଷ । ରେ ଗୁମାବର ।୨୦।
ରତ୍ତପତ୍ତରେ ଅବଶ । ରସ ରସୁଁ ବୁଦ୍ଧି ଭ୍ରଂଶ ।
ରସଦ ଉତ୍ତର ନୋହିଲେ ସତରବୟସ୍କା ନ ଧରିବୁ ଦୋଷ । ଗୋ ଙ୍କବେଶ୍ବର ॥
ର-ସ-ଧର ଅଙ୍ଗ ଭୂଷ । ରଚନା ହୋଇଲା ଶେଷ ।
ରମଣୀମୁକୁଟ ପଢ଼ୁ ମୁଦକୁଟ ବେଳୁଁ ବେଳୁଁ ପରକାଶ । ହେ ସାଧୁଜନେ ॥
ରଞ୍ଜନ ଲେଉଟ ଭୂଷ । ରସିକା କର ପ୍ରକାଶ ।
ରସିକେ ବସ୍ତ୍ରର ଦେଇ ସଖୀ ଗୃର ପେଷିଲା ଗୋବନ୍ଦ ପାଶ । ହେ ସାଧୁଜନେ ॥

---

୧୭—ରଣରଣେ—କନ୍ଦର୍ପଦ୍ୱାରା । ରସିକନ୍ୟକ—ରସିକାଙ୍କୁ । ନାରସ—ରସହୀନତା । ରଜନୀଶକରେ—ଚନ୍ଦ୍ରକିରଣରେ । ଦନେଶ—ସୂର୍ଯ୍ୟ ।

୧୮—ରଜ—ପାଉଁଶ । ଅହ୍ବ—ସାପ । ଉଡ଼ୁଈଶ—ଚନ୍ଦ୍ର । ତହିଁରେ ମହେଶ—ମହାଦେବ, ରସନ୍ତ । ମୋଗୁଣ ରହିତ—ମୁଁ ଗୁଣଶୂନ୍ୟ ହେଲେ । ଗୁଣ—ବସ୍ତ୍ର କର । ଅନୁଗତ ହେବୁ—ଅନୁସରଣ କରିବାରୁ । ରସ—ଅନୁରକ୍ତ ହୁଅ ।

୧୯—ରସାଧିକାର ସୁଯଶ—ଅଧିକ ରସବତୀ ରୂପର କୀର୍ତ୍ତି । ରସାରେ—ପୃଥିବୀରେ । ଶଶୀସଦୃଶ—ଚନ୍ଦ୍ରପରି । ରଙ୍କ ମୋର କୁମୁଦନୟନକୁ—କଇଁପରି ଆଖିକୁ । ମୁଦ—ଆନନ୍ଦିତ କର । ଚିତ୍ତ ଚକୋରକୁ—ମନରୂପକ ଚକୋର ପକ୍ଷୀକୁ । ତୋଷ—ତୃପ୍ତ କର ।

୨୦—ରଙ୍କୁନେତ୍ରୀ—ମୃଗାକ୍ଷୀ ତୁମ୍ଭେ । ଭୂଷ—ଚିଠି ।

୨୧—ରତିପତିରେ—କନ୍ଦର୍ପ ଦ୍ୱାରା । ରସରସୁଁ—ରସରେ ଆଗ୍ରହ କରିବାରୁ । ବୁଦ୍ଧିଭ୍ରଂଶ—ବିବେକ ହଜିଗଲା । ରସଦ—ଅନୁରାଗପ୍ରଦ । ସତର-ବୟସ୍କା—ସତରବରଷୀ ।

୨୨—ରସଧର—ଅଙ୍ଗ ଭୂଷ—କୃଷ୍ଣଙ୍କର ଚିଠି ଏବଂ 'ର' କାର ଓ 'ସ' କାରକୁ ଅଙ୍ଗରେ ଧରିଥିବା ଚିଠିର । ରମଣୀମୁକୁଟ—ଯୁବତୀଶ୍ରେଷ୍ଠ ଚନ୍ଦ୍ରାବଳୀ । ମୁଦକୂଟ—ଆନନ୍ଦ ସମୂହ ।

ରସାନନ୍ଦ ଲୀଳାରସ । ରସନ୍ତେ ନ ଥାଇ କ୍ଳେଶ ।
ଉପାରେ ସାମନ୍ତସିଂହାର ସାମନ୍ତ ବୃଷଭାନୁସୁତା-ଈଶ । ହେ ସାଧୁଜନେ ।

---

## ଷୋଡ଼ଶ ଛାନ୍ଦ

## କୃଷ୍ଣଙ୍କ ଛାମୁକୁ ଚନ୍ଦ୍ରାବଳୀଙ୍କ ଚଟାଉ

ରାଗ—ଚକ୍ରକେଳି । ଆଦ୍ୟନ୍ତ ନିୟମ 'ସ' 'ର'

**ସ**ନ୍ଥଜନେ ଏ ଛାନ୍ଦକୁ ବିଚାର । ସର୍ବ-ସୁଖାନନ୍ଦ ସାର ମନ୍ଦର ।
ସ ନିୟମ ପ୍ରଥମରେ ପ୍ରାନ୍ତ ର । ସର ଅଟଇ ଏଣୁ ଏ ଉପର । ୧ ।
ସଖା ହସ ହସ ହୋଇ ସତ୍ୱର । ସନ୍ନିକଟ ଯାଇଁ ମୃଦ ଦେବାର ।
ଶତଦଳ-ଦଳ କର ପ୍ରସାର । ସସ୍ନେହରେ ମୃଦ ଘେନି ଅପାର । ୨ ।
ଶତ ରତନ ରଙ୍କ ପାଇବାର । ସମ ଆନନ୍ଦ ବଢ଼ିଲା କୃଷ୍ଣର ।
ସରାଗରେ ଲଗାଇ ହୃଦପର । ସଉତ୍ସୁକେ ଫେଡ଼ିଲେ ମୃଦସାର । ୩ ।

---

୨୩—ରଞ୍ଜନ—ଅନୁରାଗ ଜନ୍ମାଉଥିବା । ଲେଉଟ ଫେରି—ଉତ୍ତର । ସଖା— ମିତ୍ର । ଶ୍ରୀଦାମଙ୍କୁ ଦେଇ ଦୂର—ଦୂର କରି । ପାଶ—ପାଖକୁ ।

୨୪—ରସାନନ୍ଦ—ରସ ଓ ଆନନ୍ଦମୟ କୃଷ୍ଣଙ୍କର । ଲୀଳାରସରେ ରସିଲେ ଆଉ ସଂସାରର କ୍ଳେଶ ରହେ ନାହିଁ । ବୃଷଭାନୁସୁତାଈଶ—ରାଧାଙ୍କ ପତି ଶ୍ରୀକୃଷ୍ଣ । ଉପାରେ—ପୃଥିବୀରେ । ସାମନ୍ତସିଂହାର (କବିଙ୍କର) ସାମନ୍ତ ପ୍ରଭୁ ଅଟନ୍ତି । ବୃଷଭାନୁସୁତା—ରାଧା । ଈଶ—ପତି ।

---

୧—ସର୍ବସୁଖାନନ୍ଦ ସାର ମନ୍ଦର— ସବୁ ପ୍ରକାର ସୁଖ ଓ ପରମାନନ୍ଦର ଉତ୍କୃଷ୍ଟ (ସରଘର) ଗୃହ । ପଦର ଆଦ୍ୟରେ 'ସ' ଅକ୍ଷର ଏବଂ ଶେଷରେ 'ର' ଅକ୍ଷର ରହିଛି । (ଗଲା ଛାନ୍ଦର ଠିକ୍ ଓଲଟା) ସର—ପୋଖରୀ ।

୨—ମୃଦ—ଚଠି । ଶତଦଳ ଦଳ—ପଦ୍ମପତ୍ର ପରି । କର ହାତ । ପ୍ରସାର ବଢ଼େଇ । ସସ୍ନେହରେ—ଆନନ୍ଦରେ । ମୃଦ ଘେନି—ଚଠି ନେଲେ କିମ୍ବା ସ୍ନେହରୁ ଅପାର—ଅସୀମ, ଆନନ୍ଦ ଘେନି ହାତ ବଢ଼ାଇଲେ ।

୩—ରଙ୍କ—କାଙ୍ଗାଳ । ଶତରତନ ଅସଂଖ୍ୟ ରତ୍ନ । ସମ—ପରି । ସରାଗରେ—ଅନୁରାଗ ସହିତ ବା ଆନନ୍ଦରେ । ହୃଦପର—ହୃଦ ଉପରେ ଛାତିରେ । ସଉତ୍ସୁକେ— ଉତ୍କଣ୍ଠା ସହିତ । ମୃଦସାର—ଉତ୍କୃଷ୍ଟ ଚଠି ।

ସରଞ୍ଜନ ବର୍ଣ୍ଣାବଳୀ କେଷର । ସମ ସମଶିର ଘନ ସୁନ୍ଦର ।
ଶଶଧର ଦେଖି ଯେହ୍ନେ ଚକୋର । ସଦାନନ୍ଦ ଆନନ୍ଦର କ ପାର ? ।୪।
ସର୍ବ ଶରଣ ରକ୍ଷଣ ଆଦ୍ୟର । ସରଜନା ଶ୍ରୀ ବର୍ଣ୍ଣ ଉକାର ।
ସଞ୍ଚ ଏ ଅଙ୍କେ ଲେଖା ମନୋହର । ସର୍ବୋତ୍କର୍ଷ କୃଷ୍ଣ ଗୁଣସାଗର ।୫।
ଶମ୍ଭୁ ସ୍ୱୟମ୍ଭୁ ଆଦ୍ୟ ସୁରବାର । ସତତରେ ସୁମରନ୍ତି ପସ୍ୱର ।
ସନାତନ ଅବ୍ୟକ୍ତ ତତ୍ତ୍ୱସାର । ସର୍ବନମସ୍କୃତ ଶ୍ରୀସର୍ବେଶ୍ୱର ।୬।
ସର୍ବମନାକର୍ଷଣ ଶକ୍ତିଧର । ସଂସାରରେ ରସବାର ନାଗର ।
ସରୋଜକଲୁ ବଳ ପଦ ସୁନ୍ଦର । ଶରଣ ମୁଁ ହେଲି ତର୍ଣ୍ଣି ଉଦ୍ଧର ।୭।
ଶତକୋଟି ବନଧୂ ଦୈନ୍ୟ ମୋର । ସମର୍ପିଲି ପରାଣ ଦାସୀ କର ।
ଶରବଣ କରଛୁ ଋଷିଗିର । ସବୁକାଳେ ବନ୍ଧୁ ମୋ ପ୍ରାଣେଶ୍ୱର ।୮।
ସଦୟରେ ସେ ଧନ ଆସିବାର । ସତେ ବରଛୁ ଦେଲ ରତ୍ନହାର ।
ସକରୁଣ ହାସ ଦୃଷ୍ଟି ତୁମ୍ଭର । ସବୁ ରୂପେ କଣିଛ ମନ ମୋର ।୯।
ଶମ୍ବର ସେ ଧନୁ ମାରେ ଶର । ସଜନତ ବେଦନା ଅନିବାର ।
ସଜମରେ ଉପଶ୍ୱର ହେବାର । ସରୁଁ ସରଳନ ପଦ୍ମପତର ।୧୦।

---

୪—ବର୍ଣ୍ଣାବଳୀ – ଅକ୍ଷରଗୁଡ଼ିକ । ସରଞ୍ଜନ—ରଞ୍ଜେଇ ଦିଏ, ମନୋହର । ସମ—ସବୁ ସମାନ ଆକାର । ସମଶିର—ଉପର ସମସ୍ତଙ୍କର ସମାନ । ଘନ—ଲଗି ଲଗି । ଶଶଧର—ଚନ୍ଦ୍ରକୁ । ସଦାନନ୍ଦ—କୃଷ୍ଣଙ୍କ ପାର କ ?—ଶେଷ ହେଲା କ ? ଶେଷ ହେଲା ନାହିଁ ।

୫—ଚଠିର ପଦ୍ମରେ "ଶ୍ରୀ ଶ୍ରୀ ଶ୍ରୀ ସର୍ବରକ୍ଷଣ ଶରଣଂ" ଲେଖାଥିଲା, ସଞ୍ଚ—ସୂଚକ । ସାଗର—ସମୁଦ୍ର ।

୬—ଶମ୍ଭୁ · ସୁରବାର—ଶିବ ବ୍ରହ୍ମା ପ୍ରଭୃତି ଦେବତା ସମୂହ—ମାନେ । ପସ୍ୱର—ପାଦକୁ । ସନାତନ—ସବୁବେଳେ ଥାଆନ୍ତି । ଅବ୍ୟକ୍ତ—ଅପ୍ରକାଶିତ । ତତ୍ତ୍ୱସାର—ପରମ ତତ୍ତ୍ୱ (୨୫ଣ ତତ୍ତ୍ୱ ମଧ୍ୟରେ ପୁରୁଷ ଶ୍ରେଷ୍ଠ ଅଟେ) ।

୭—ସର୍ବମନାକର୍ଷଣ—ଯେ ସମସ୍ତ ମନ ଆକର୍ଷଣ କ ହରଣ କରନ୍ତି । ଶକ୍ତିଧର—ଶକ୍ତିଯୁକ୍ତ । ରସବାର—ପ୍ରଧାନ ରସିକ । ସରୋଜକୁ—ପଦ୍ମକୁ ।

୮—ଶରବଣ– ଶ୍ରବଣ, ଶୁଣିଛୁ, ଋଷିଗିର—ମୁନିଙ୍କ ବଚନ ।

୯—ସକରୁଣ ହାସଦୃଷ୍ଟି—ଦୟାଯୁକ୍ତ ହସ ଚାହାଣୀ ।

୧୦—ଶମ୍ବର—କନ୍ଦର୍ପ । ସଜନତ—ଜନ୍ମିଅଛି । ବେଦନା—ପୀଡ଼ା । ଅନିବାର ଯାହା ବନ୍ଦ କ ବାରଣ କଣ ହେବ ନାହିଁ । ସଜମରେ—ସଖୀମାନଙ୍କଦ୍ୱାରା । ଉପଶ୍ୱର—ଶୀତଳଉପାୟ । ସରୁ—ପୋଖରୀରୁ ।

ଶମନର ପୁରକୁ ଜୀବ ମୋର । ସଜ ହୋଇଛି ଯିବାକୁ ବିଚାର ।
ସଖୀ ମଣ୍ଡଳ-ଛଟାକୁ ଦେବାର । ସଞ୍ଚୁଅଛି ସେ ବାରି ବାରବାର ।୧୧।
ସଂଘନନ ନବଘନ ନିକର । ସରାଇବ ତାପ ଅଙ୍ଗ ଦେଶର ।
ସନ୍ତୋଷଦାୟୀ ନେତ୍ର ଚାତକର । ସହଜେ ତ ଘନରସ ଭଣ୍ଡାର ।୧୨।
ଶଶହୀନ ଚନ୍ଦ୍ରମୁଖ ରୁଚିର । ସଦାପ୍ରକ ହୃଦସ୍ଥ କୁମୁଦର ।
ସଂସର୍ଗୀ ମୁଁ ହୋଇବି କି ତହିଁର । ସରିଯିବ ଜୀବ ବାଧା ବିଚାର ।୧୩।
ସନ୍ତାପିତ ଚିତ୍ତ ଚକ୍ରବାକୀର । ଶଙ୍କାହାରକ ଅରୁଣ ଅଧର ।
ସନ୍ନିକଟ ହେବାର ବୁଦ୍ଧି କର । ସରୋଜିନୀ ବିରସଦର ହର । ୧୪ ।
ଶତକୋଟି ସମାନେ ମାରଶର । ଶ ଶ ଶର କରୁଅଛି ପ୍ରହାର ।
ସରେ, ସଙ୍କା ହେଲି ଦାସୀ ଏଥର । ସଞ୍ଚରିବଟି ନିନ୍ଦା ବେଣୁଧର ।୧୫।
ଶତଦଳ ଦଳଇ ହିମକର । ସବିତାରୁଁ ନିନ୍ଦା ନିକ ଆନର ।
ସବୁ ଜଣାଇଲି ଥରେ ମାତର । ଶମ୍ଭୁ ବିଭୂତି ପରାଏ ଆଦର । ୧୬ ।

୧୨ । ସଂହନନ ଅନୁପ୍ରାସ ଅନୁରୋଧରେ ହକୁ ଘ ରୂପେ ପଢ଼ିବାକୁ ହେବ ।

---

୧୧—ଶମନର ପୁରକୁ—ଯମପୁରକୁ । ସଞ୍ଚୁଅଛି—ରଖୁଅଛି । ବାରବାର—ଜଳସବୁ, ଲୁହ । ବାରି—ବନ୍ଦ କରି । ବା ବାରବାର—ଥରକୁଥର ବାରି—ଜଳ ସଞ୍ଚୁଅଛି—ରଖୁଅଛି ।

୧୨—ସଂଘନନ—ସଂହନନ—ଦେହ । ନବଘନ ନିକର—ନୂତନ ମେଘମାଳା ପରି । ସରାଇବ—ଶାନ୍ତ କରିବ । ସନ୍ତୋଷଦାୟୀ—ତୃପ୍ତି ଦିଏ । ନେତ୍ର ଚାତକର—ଚକ୍ଷୁରୂପକ ଚାତକପକ୍ଷୀର । ଘନରସ—ମେଘର ଜଳ ଭଣ୍ଡାର ଏବଂ ନିବିଡ଼-ଶୃଙ୍ଗାର ରସର ଭଣ୍ଡାର ।

୧୩—ଶଶହୀନଚନ୍ଦ୍ର-କଳଙ୍କଶୂନ୍ୟ ଚନ୍ଦ୍ର ଅଟେ । ସଦାପ୍ରକ—ବିକାଶ କରିଦିଏ । ହୃଦସ୍ଥ କୁମୁଦର—ମନରୂପକ କଇଁଫୁଲକୁ । ସଂସର୍ଗୀ—ଯୁକ୍ତ ହୋଇବି, ଜୀବବାଧ—ପ୍ରାଣର ପୀଡ଼ା । ବିଚାର—ଭାବ ।

୧୪—ଚକ୍ରବାକୀ—ଚକୁଆ ଚଢ଼େଇ, ପରି ମୋର ଚିତ୍ତ ଦୁଃଖିତ ଅଛି । ଆପଣଙ୍କର ଅରୁଣ ପରି ରକ୍ତ ଓଷ୍ଠ ମୋର, ଭୟ ହରଣ କରିବ । ( ରାତିରେ ଚକ୍ରବାକର ବିଚ୍ଛେଦ ହୁଏ । ତେଣୁ ସୂର୍ଯ୍ୟ ଉଇଁଲେ ତାହାର ଆନନ୍ଦ ହୁଏ ) । ସନ୍ନିକଟ—ମିଳନ ହେବାର ମନକର । ସରୋଜିନୀ—ପଦ୍ମିନୀପରି, ମୋର ବିରସ-ଦର—ଦୁଃଖ ଓ ଭୟ, ହରଣ କର ।

୧୫—ମାରଶର—କନ୍ଦର୍ପ ଶର । ଶତକୋଟି ସମାନେ—ବଜ୍ରପରି । ଶ ଶ ଶର—ଶଏ ଶଏ ବାଣ । ସରେ—ସରୁଅଛି । ସଞ୍ଚରିବ—ବ୍ୟାପିଯିବ । ହେ ବେଣୁଧର—ହେ ବଂଶୀଧାରୀ କୃଷ୍ଣ ।

ସଗୁଣ କ ମୁଁ ଅନୁଗତ ଧୀର । ଶଶୀ ଜଣି ରସିଲ ପର କର ।
ଷଟ୍‌ପଦରେ କ ସୁମନା ଦୁସ୍ତର । ସଙ୍ଗ କରଇ ପୁଣ କୁଟଜର ।
ସଙ୍କେତ ଯେ ଗଡ଼ସାଗ୍ରାର୍ଥ ମୋର । ସବୁପାରେ ଚର୍ଚ୍ଚିକ ବଳେ କର ॥
ସଖୀ ସେବ୍ୟା ପଦ୍ମାବଙ୍କ ବସ୍ତୁର । ସଙ୍ଗ ସେବା ବ୍ୟାଜେ ହେବ ପ୍ରସ୍ତୁର ॥
ସଦାଶିବ ସେବା ପୁଣ୍ୟ ପ୍ରସ୍ତୁର । ସନ୍ନିଧିକ ଲେଖ ଦେଲ ଭୂମ୍ବର ।
ସଂଭ୍ରମରେ ଦେଲ ଭଷା ଉତ୍ତର । ସଦା ଦୋଷୀ ଦାସୀ ଦୋଷ ନ ଧର ॥
ଶଙ୍ଖାର ଯେ ଏତେ ପଢ଼ି ଅଧୀର । ସନ୍ନିପାଣ୍ଡ ମାରସ୍ନେହ ପ୍ରକାର ।
ସଖା ମୁଖ ଗ୍ଭହିଁ କଲେ ଉତ୍ତର । ସତ ଲେଖା ଏ ତାହା ଶ୍ରୀହସ୍ତର ! ।୨୦।
ସଖା ଶ୍ରୀଦାମ ଶୁଣି ବୋଲେ ଗିର । ସବୁ ଭାଗ୍ୟକୁ ପ୍ରାପତ ଭୂମ୍ବର ।
ସନ୍ତାପ ହେ ଗ୍ଭମାର ବଳୀୟାର । ସଂହରଣେ ତୁମ୍ଭେ ରସସାଗର ।୨୧।

---

୧୬—ହିମକର—ଚନ୍ଦ୍ର । ଶତଦଳ—ପଦ୍ମକୁ । ସବତାରୁ ଆନର—ସୂର୍ଯ୍ୟଙ୍କ ଛଡ଼ା ଅନ୍ୟ କାହାର ନନ୍ଦା ହୁଏ ନକ ? ଶମ୍ଭୁ—ମହାଦେବ, ବଲ୍ଲଭ—ପାର୍ବତୀକୁ, ଆଦର କଲପର ଆଦର କର ।

୧୭—ହେ ଧୀର । ମୁଁ ସଗୁଣ—ଗୁଣବତୀ, କ ? ଗୁଣବତୀ ନ ହେଲେ ସୁଦ୍ଧା ଆପଣଙ୍କର ଅନୁଗତ—ଅନୁସରଣ କରଅଛୁ । ତେଣୁ ଶଶୀ—ଚନ୍ଦ୍ର, ଜଣି—ରାତ୍ରିକୁ, ରସିଲ ପର କର । ଷଟ୍‌ପଦରେ—ଭ୍ରମରକୁ, ସୁମନା—ଫୁଲ, ଦୁସ୍ତର—ଦୁର୍ଲ୍ଲଭ ଅଛୁ କ ? କନ୍ତୁ ସେ କୁଟଜର—କୋରୁଆଁ ଫୁଲର ବା ଗିରମଲ୍ଲୀର ସଙ୍ଗ କରେ । (ଅପ୍ରସ୍ତୁତ ପ୍ରଶଂସା)

୧୮—ସଙ୍କେତ—ଠିକଣା ସ୍ଥାନ । ଗଡ଼ସାଗ୍ରା ତୀର୍ଥ । ସଖୀ ସେବ୍ୟା ଓ ପଦ୍ମା ପ୍ରଭୃତଙ୍କର ବସ୍ତୁର ହୋଇଅଛୁ । ସେବ'ବ୍ୟାଜେ—ପୂଜା ଛଳରେ ସଙ୍ଗ—ମିଳନ ପ୍ରସ୍ତୁର ହେବ ।

୧୯—ସଦାଶିବ······ପ୍ରସ୍ତୁର—ସବୁବେଳେ ମୋର ସେବା ଧର୍ମ ଓ ମଙ୍ଗଳକୁ ବଧାନ କର । କମ୍ବା—ସଦାଶିବଙ୍କର ସେବାଦ୍ୱାରା ପୁଣ୍ୟ ପ୍ରସ୍ତୁର ହୋଇଛୁ ଯେଉଁ କୃଷ୍ଣଙ୍କର କମ୍ବା ସବୁବେଳେ ମଙ୍ଗଳରେ ଆସକ୍ତ ଥିବାରୁ ପୁଣ୍ୟ ପ୍ରସ୍ତୁର ହୋଇଛୁ ଯାହାଙ୍କର ତାଙ୍କ ନକଟକୁ····· । ସଂଭ୍ରମରେ—ସମ୍ଭ୍ରମରେ—ଉଦ୍‌ବେଗରେ ।

୨୦—ଶଙ୍ଖାର—କୃଷ୍ଣ । ଅଧୀର—ଅଥୟ । ସନ୍ନିପାଣ୍ଡ—ସନ୍ନିପାତ ମନ୍ତ୍ର । ମାର ସ୍ନେହ ପ୍ରକାର—ପାଣି କ ଆଗ୍ରହ କଲା ପରି ।

୨୧—ଗ୍ଭମାର—ସ୍ୱୀର, ଚନ୍ଦ୍ରାବଳୀର । ବଳୀଆର—ଖୁବ୍ ବେଶୀ । ସଂହରଣେ—ସନ୍ତାପ ନାଶ କରବାକୁ । ରସ ସାଗର—ଶଙ୍ଗାରରସର ସମୁଦ୍ର ଏବଂ ଜଳର ସମୁଦ୍ର ।

ସଜନୀରେ କୁହାଇଛୁ ଏ ଗିର । ଶଶପରି ହୋଇବଟି ବିଗ୍ଭର ।
ଶ୍ରବଣକୁ ମୁଦଦ ଏ ଉତ୍ତର । ସରସରେ ଗୋବିନ୍ଦ ଜରଜର ।୨୨।
ଶରଧାରେ ଏ ଛନ୍ଦ ଦେନ ଧୀର । ସଞ୍ଚ ରଚନା ଏ ଅଭିମନ୍ୟୁର ।
ଷଣ୍ଢ-ଦଣ୍ଡଦ ମୋ ଆଶା ମନ୍ଦିର । ସଙ୍କଟକୁ ଶକଟଭଞ୍ଜ ହର ।୨୩।

---

## ସପ୍ତଦଶ ଛାନ୍ଦ

## କୃଷ୍ଣ ଉତ୍କଣ୍ଠା ବନ ଭ୍ରମଣ-ବଂଶୀପ୍ରାପ୍ତି

ନିୟମ କ ଚ ଟ ତ ପ

ରାଗ—କଲ୍ୟାଣ ପଡ଼ିତାଳ

କ— କଚଟତପ ନିୟମ ଏ ଛନ୍ଦ । କର ବିଗ୍ଭର ବୁଦ୍ଧିରେ କୋବିଦ ।
କ୍ରମେ କ୍ରମେ ପୁଷ୍ପଋତୁ ହଟିଲା । କାଳ ପରି ଏ ଗ୍ରୀଷ୍ମ ଘୋଟିଲା ।
କରନ୍ତି (ନ) ଶଙ୍କା ସକଳ ଲୋକ । କଲି ରସ ତୃଷା ଯେଣୁ ଅଧିକ ।୧।
କରିଛି ରତାନ୍ତ ନାୟିକା ଖେଡ଼ । କଳେବର ସ୍ୱେଦ-ରଞ୍ଜିନ ଅତ ।
କଲି ବ୍ୟଜନ ରଞ୍ଜନ ମନକୁ । କନ୍ତୁ ମଣେ ଚିତ୍ତ ମିତ୍ର-କରକୁ ।
କଞ୍ଚୁକ ବାସେ (ସ) ସ୍ନେହ ନୁହଇ । କଳେବର ଖର କରେ ଜଳଇ / କମନୀୟ ପୟୋଧରୁ ଖଣ୍ଡଇ ।୨।

---

୨୨—ସଜନୀରେ—ସଖୀ ହାତରେ । ଗିର—କଥା । ଶଶପରି—ଠେକୁଆ ପରି । (ଠେକୁଆ ଯେପରି ଅତି ଆଗ୍ରହରେ ଅମୃତ ଇଚ୍ଛା କରି ମରିଯାଇ, ଚନ୍ଦ୍ରଠାରେ ଯାଇଁ କଳଙ୍କ ହୋଇ ରହିଲା, ମୋର ସେହିପରି ହେବ । ମାର୍କଣ୍ଡେୟ ପୁରାଣରେ ଲମ୍ବକର୍ଣ୍ଣ ଶଶକର କଥା ଦେଖ ।) ଶ୍ରବଣକୁ—କାନକୁ । ମୁଦଦ—ଆନନ୍ଦଦାୟକ ।

୨୩—ସଞ୍ଚ—ସୁନ୍ଦର । ଷଣ୍ଢଦଣ୍ଡଦ—ଷଣ୍ଢ, ଅରିଷ୍ଟାସୁରକୁ ମାରିଥିବା କୃଷ୍ଣ । ଆଶାମନ୍ଦିର—ଆଶାର ସ୍ଥାନ । ସଙ୍କଟକୁ—ଦୁଃଖକୁ । ଶକଟଭଞ୍ଜ—ଶକଟାସୁରକୁ ନାଶ କରିଥିବା କୃଷ୍ଣ । ହର—ହରଣ କର ।

---

୧—କୋବିଦ—ହେ ପଣ୍ଡିତମାନେ ! ଏ ଛନ୍ଦ କ୍ରମରେ "କ, ଚ, ଟ, ତ, ପ" ଅକ୍ଷରରେ—ବର୍ଗର ୧ମ ଅକ୍ଷରରେ ଆରମ୍ଭ ହୋଇ ରଚିତ ହୋଇଅଛୁ । ପୁଷ୍ପଋତୁ—ବସନ୍ତ । କାଳ—ଯମ । ରସ—ଜଳ ।

୨—ରତାନ୍ତ ନାୟିକା ଖେଡ଼—ରତିଶେଷରେ ସ୍ତ୍ରୀର ଅବସ୍ଥା ପରି । କଳେବର—ଦେହ । ସ୍ୱେଦ—ଝାଳରେ, ଅତିରଞ୍ଜିତ ହେଲା । ବ୍ୟଜନ—

କେବଳ ଦ୍ୱିଜଚନ୍ଦ ରୁଣ୍ଡଗଣ୍ଡ । କାନ୍ତରକ୍ତ ହେଲା ଖଣ୍ଡ ଖଣ୍ଡ ।
କର୍ପୂର ଚନ୍ଦନକୁ ମନ ବଳେ । କମଳେ ରସି ରସେ ନ ରସିଲେ ।
କରାଏ (ଯେ) ଗୃହଦ୍ୱାରେ ବିହାର । କରେ ମଲ୍ଲି ମୁଖେ ବିକଶିବାର । ୩ ।
କମଳେ ସ୍ୱାଧୀନଭର୍ତ୍ତୃକା ଶିର । କୁମୁଦମୀ ଦ୍ରୋହୀ-ନାୟିକା ସର ।
କାନ୍ତାର୍ଥିନୀ ପର ବିଟପୀବାର । କାନ୍ତବନ୍ତକାଳ ସୁନାରଙ୍କର ।
କାନନ ହୃଦ(ଯୁ) ବିଯୋଗୀ ପର । କୃଶାନୁଜାତ ହୋଇବାରୁଁ କର । ୪ ।

---

ବିଞ୍ଚଣା, ମନକୁ ରଞ୍ଜାଇଲା, ଚନ୍ଦ୍ର—ମନ, ମିଷ୍ଟ କରକୁ—ସୂର୍ଯ୍ୟଙ୍କ କିରଣକୁ ଓ ପଥର ହାତକୁ, କଷ୍ଟ—ଅସହ୍ୟ ମଣିଲା । ବାସେ—ବସ୍ତ୍ରରେ, କଣ୍ଠିତ—ଅଲ୍ପସୂକ୍ଷ୍ମ, ସ୍ନେହ ହେଲା ନାହିଁ । କଳେବର—ଦେହ, ଖରକରେ—ପ୍ରଖର ସୂର୍ଯ୍ୟ କିରଣରେ ଏବଂ ନଟଷେତରେ, ଜଳଇ । କମନୀୟ...ଲୋକମାନଙ୍କ ବାଞ୍ଛନୀୟ ମେଘରୁ ରହିତ କରାଇଲା କମ୍ପା ପୟୋଧରୁ—ମେଘରୁ, କମନୀୟ—ସୌନ୍ଦର୍ଯ୍ୟ ଖଣ୍ଡନ—ନାଶ କଲା ଅନ୍ୟପକ୍ଷରେ ପୟୋଧରୁ—ସ୍ତନରୁ ସୌନ୍ଦର୍ଯ୍ୟ ଖଣ୍ଡନ କଲା ।

୩—ଗଣ୍ଡ—ବେଶି ପାଣିରେ, ଦ୍ୱିଜଚନ୍ଦ—ପକ୍ଷୀମାନେ ରୁଣ୍ଡ ହୋଇ ଅଛନ୍ତି । (ଅନ୍ୟ ପକ୍ଷରେ, ଗଣ୍ଡ—ଗାଲରେ, ଦ୍ୱିଜଚନ୍ଦ - ଦନ୍ତକ୍ଷତ ଚିହ୍ନସବୁ, ରୁଣ୍ଡ ହୋଇଥାଏ) । ସେ ସ୍ଥାନ କାନ୍ତରକ୍ତ—ଶୋଭାଶୂନ୍ୟ ଓ ଖଣ୍ଡ ଖଣ୍ଡ—ବିରଳ ହୋଇଅଛି । (ଅନ୍ୟପକ୍ଷରେ, କାନ୍ତର—ସ୍ୱାମୀର, ହିତ—ମଙ୍ଗଳ, ରତ ଇଚ୍ଛା ଖଣ୍ଡ ଖଣ୍ଡ ହେଲା ବା ସେ ଗାଲ କାନ୍ତରକ୍ତ—ବିବର୍ଣ୍ଣ, ଖଣ୍ଡ ଖଣ୍ଡ—କ୍ଷତ ବିକ୍ଷତ, ହୋଇଥାଏ) । କମଳେ—ଜଳରେ, ରସିଲେ । ଅନ୍ୟରସରେ ବା ରତିରସରେ ରସିଲେ ନାହିଁ । ଗୃହଦ୍ୱାରେ—ଜହ୍ନିବାଡରେ ବା ଚୂନ ଲିପା ଚନ୍ଦ୍ର-ପାଚୀରେ, ବିହାର କଲେ ମଲ୍ଲୀଲତା ମୁଖେ—ପ୍ରଥମରେ, ବିକଶିତ କରାଇଲା, ଅନ୍ୟପକ୍ଷରେ ବିହାର—ହାରଶୂନ୍ୟ ମୁଖରେ...ମଲ୍ ମଲ୍ ଏହି ଶବ୍ଦ ପ୍ରକାଶ କରୁଥାଏ ।

୪—ସ୍ୱାଧୀନ ଭର୍ତ୍ତୃକା...ଯେ ସ୍ତ୍ରୀ ସ୍ୱାମୀକୁ ନିଜର ଅଧୀନ କରିଥାଏ । ଗ୍ରୀଷ୍ମକାଳରେ ଦିନ ବଡ଼ ହେବାରୁ ସୂର୍ଯ୍ୟ ବେଶି ବେଳ ରହିଲେ; ତେଣୁ କମଳେ—ପଦ୍ମରେ, ସ୍ୱାଧୀନଭର୍ତ୍ତୃକାର ଶୋଭା ଦେଖାଗଲା ଏବଂ କୁମୁଦମୀ—କଇଁ, ଦ୍ରୋହୀ ନାୟିକା—ବିରୋଧୀ ସ୍ତ୍ରୀ, ସର—ପର ହେଲା । ଯେପରି ବିରୋଧୀ ସ୍ତ୍ରୀ ନିକଟରେ ପୁରୁଷ ଅଳ୍ପ କାଳ ରହେ, ସେହିପରି ରାତ୍ର ଛୋଟ ହେବାରୁ ଚନ୍ଦ୍ର ଅଳ୍ପକାଳ ରହିଲେ । ବିଟପୀବାର—ବୃକ୍ଷମାନେ, କାନ୍ତାର୍ଥିନୀ—ପୁରୁଷ ପ୍ରାର୍ଥନା-କାରିଣୀ ବିରହିଣୀ ସ୍ତ୍ରୀ ପରି. କ୍ଷୀଣ ହେଲେ କମ୍ପା ବିଟପୀ—କୁଳଟା ସ୍ତ୍ରୀମାନେ ନିଜ ନିଜ ପତି ଇଚ୍ଛା କଲେ । ସୁନାରଙ୍କର—ସୁନାରୀ ଗଛର ଏବଂ ଉତ୍ତମ ସ୍ତ୍ରୀମାନଙ୍କର, କାନ୍ତବନ୍ତ—ଶୋଭାବର୍ଦ୍ଧକ, କାଳ—ସମୟ ହେଲା । ଗ୍ରୀଷ୍ମ ସମୟରେ ସୁନାରୀ ଫୁଲ ଫୁଟେ ଏବଂ ସ୍ତ୍ରୀମାନେ ସ୍ନାନାଦିଦ୍ୱାରା ବେଶୀ ଶୋଭିତା ହୁଅନ୍ତି ।

କଙ୍କିଣୀ ପରି ଝିଙ୍କାରିଙ୍କ ରଟ । କୁରଙ୍ଗ ଧକେ ରସନା ପ୍ରକଟ ।
କରି ଆସୁଛି କାଳ ବିପରୀତ । କପୋତ ନାଦେ ହୁଂକୃତ ଉଦିତ ।
କୁଣ୍ଠିତ ପିକ(ର) ରୁତ ଉଦିତ । କଞ୍ଜ ଚୁମ୍ବନେ ମଧୁପ ପ୍ରମତ୍ତ । ୫ ।
ଚ—ଶବ୍ଦ ଏପରି ଦେଖି ଭାଳି ଧୀରେ । ଚଟାଉ ଗୋବିନ୍ଦ ପଡ଼ିଲା ଉତ୍ତରେ ।
ଚଞ୍ଚଳ ମାନସ ହୋଇଲା ସନ୍ତତ । ଚନ୍ଦ୍ରାବଳୀ ଭାବେ ଦେବାରୁଁ ଚିତ୍ତ ।
ଚେତନା ବୁଡ଼ି(ଣ) ଯାଏ ଲବକେ । ଚେତି ଭ୍ରମନ୍ତି ଭ୍ରମେ ବନଯାକେ ॥
ଚାରି ସଖୀଙ୍କ ସଙ୍ଗେ ଭ୍ରମୁ ଭଙ୍ଗ । ଚିତ୍ତଜ ଶରେ କମ୍ପୁଅଛି ଅଙ୍ଗ ।
ଚଳି ନ ପାରି ବଂଶୀବଟ ତଳେ । ଚତୁରବର ଶ୍ରମେ ବିଜେ କଲେ ।
ଚରିତ ଚିତ୍ତେ ହୋଇଲ(ଯେ) ବିଧାର । ଚମକିଲା ଚିତ୍ତ ଥରକୁଥର । ୭ ।
ଚନ୍ଦ୍ରବଦନ ବିଚାରନ୍ତି ମନେ । ଚଞ୍ଚଳା ବଶ ହୋଇବ କେସନେ ।
ଚିନ୍ତାରେ ତା ଲାଗି ଯାଉ ଜୀବନ । ଚଡ଼କ ମୋ ଶିରେ ହେଉ ପତନ ।
ଚତୁର ଚୟ ଶୁଣି(ଣ) ହସିବେ । 'ଚମ୍ପାଙ୍ଗୀ ବଶ ନ କଲେ' ଭାଷିବେ ॥

---

କୃଶାନୁ—ଅଗ୍ନି, ଜାତ ହୋଇବାରୁ କରି (ବିରହୀର ହୃଦୟରେ ବିରହ ତାପ ହୁଏ) କାନନ—ବନର, ହୃଦ—ମଧ୍ୟଭାଗ, ବିଯୋଗୀ—ବିରହୀ ଲୋକପରି ହେଲା ।

୫—ଝିଙ୍କାରିମାନଙ୍କ ରଟ—ଧ୍ୱନି, କଙ୍କିଣୀ—କ୍ଷୁଦ୍ର ଘଣ୍ଟିକା ପରି ଶୁଭିଲା । କୁରଙ୍ଗ—ହରିଣୀମାନେ, ରସନା—ଜିହ୍ୱା, ପ୍ରକାଶ କରି ଧକାଇଲେ । ଅଥବା ରସନା—ଅଣ୍ଟାସୂତା, ପ୍ରକଟ—ପ୍ରକଟ—ଝୁଲିବା ପରି ହେଲା । ଏକାଳ ବିପରୀତ ରତି କରି ଆସୁଛି । କାରଣ କପୋତ—ପାରା, କାପ୍ତାମାନଙ୍କ ଧ୍ୱନିରେ ହୁଂକୃତ ଶବ୍ଦ ଜାତ ହେଲା । ଉଦିତ—ବସନ୍ତରେ ହୋଇଥିବା, ପିକରୁତ—କୋଇଲି ଡାକ, କୁଣ୍ଠିତ ହେଲା—ବନ୍ଦ ହେଲା । ବିପରୀତ ରତିରେ ସ୍ତ୍ରୀମାନଙ୍କର କୋକିଳ ପରି ଆଳାପ ବନ୍ଦ ହୁଏ ଓ କପୋତ ପରି ଶବ୍ଦ ହୁଏ । ମଧୁପ—ଭ୍ରମର, କଞ୍ଜ—ପଦ୍ମ, ଚୁମ୍ବନରେ ପ୍ରମତ୍ତ ହେଲା—ମାତିଲା, ରତିରେ ପୁରୁଷ ପଦ୍ମ ପରି ମୁଖ ଚୁମ୍ବନରେ ମାତିଥାଏ ।

୬—ଚତ୍ର—ଆଶ୍ଚର୍ଯ୍ୟ । ଧୀରେ—ବୁଦ୍ଧିରେ । ଲବକେ—କ୍ଷଣକେ । ଚେତ—ଚେତାପାଇ । ଭ୍ରମେ—ଭୁଲିଯାଇ, ଭ୍ରାନ୍ତ ହୋଇ ।

୭ । ଚିତ୍ତଜଶରେ—କନ୍ଦର୍ପ କାଣ୍ଡରେ । ଭଙ୍ଗ ପରାଜୟ ବା ଭଙ୍ଗିରେ । ପାଠାନ୍ତରେ—ରଙ୍ଗରେ । ହେବାରୁ ଅଙ୍ଗ କମ୍ପୁଅଛି, ଚତୁରବର—ଚତୁରଶ୍ରେଷ୍ଠ ଶ୍ରୀକୃଷ୍ଣ ।

୮—ଚଞ୍ଚଳା—ବିଜୁଳି ପରି ସୁନ୍ଦରୀ ବା ଚଞ୍ଚଳାକ୍ଷୀ । ଚଡ଼କ—ବଜ୍ର । ଚତୁରଚୟ—ରସିକମାନେ । ଚମ୍ପାଙ୍ଗୀ—ଚମ୍ପକବର୍ଣ୍ଣୀ ।

ଚମ ଏ, ନାସ୍ତି ବଶ ନୋହେ ଯହିଁ । ଚରାଚର ଭବ ହରିବ କେହ୍ନ ।
ଚଉଦଲୋକ ଦୈତ୍ୟଭୋଗ ହେଉ । ଚକ୍ର ଧରି ମୁଁ ନ ମାରଇ ଅଜ ।
ଚତୁରମୁଖ ଜାଣିଲା (ଯେ) ଧ୍ୟାନେ । ଚକିତ ଗୋବିନ୍ଦ କାମଦହନେ ।୯।
ଚାମୀକରଗୋଷ୍ଠ କଶୋରୀ ଲାଗି । ଚଇତନ୍ୟ ଦମ୍ଭ ଯାଉଛି ଭାଙ୍ଗି ।
ଚେତାଇବ ମୁଁ ଚ ଶତ ପୂର୍ବର । ଚରଣେ ଖଟିବେ ଚତୁରୀବାର ।
ଚପଳେ(ଣ) ବିଧି ବରୁଣ ଏତେ । ଚଡ଼ାଇ ଚଢ଼ି ଅଇଲେ ତୁରିତେ ।୧୦।
ଟ—ଟେକଚରଣ ତଳେ ପଡ଼ି ବହି । ଟିକକେ ଉଠି କହେ ହଟି ରହି ।
ଟଙ୍କଧର ପାଦେ କଙ୍କର ଯାର । ଟାଳିବ କେ ଆଜ୍ଞା ସଂସାରେ ତାର ।
ଟଳ (ଅ)ଚ୍ଛି କାହିଁ ପାଇଁ ହରଷ । ଟେକି ଆନନ ସେ ବଦ୍ୟେ ଭାଷ ।୧୧।
ଟାହିରେ ପଶୁର କି ପ୍ରଜାପତି । ଟଙ୍କେ ବିଦାରୁଛି ମଦନ ସ୍ତୁତି ।
ଟାଣୁଛି କର୍ଣ୍ଣଯାଏ ଶରାସନ । ଟାଳି ଦେଉଛି ମୋ ଧୈର୍ଯ୍ୟ ଗୁମାନ ।
ଟାଣ କି ଅଛୁ(ଯେ)କହନ୍ତ ହରି । ଟୋପ ରାଧା, ମୋ ମନ ମତ୍ତକରୀ ।୧୨।
ଟାପରା ଯୋଗ୍ୟ କେ; କହିଲେ ବିହି । ଟାକି ରହିଛି ତୋ ଆଜ୍ଞାକୁ ମୁହିଁ ।
ଟେକାଇବ ତୁମ୍ଭେ ରସିକ ଛତି । ଟଙ୍କାରିବ କି ଗୁଣ ରତିପତି ।
ଟିକାଏ ଦ(ଇ)ନ୍ୟ ହୁଅ ବଟକୁ । ଟାଣ ମୋହନ ବଂଶୀ ପାଇବାକୁ ।୧୩।
ଟୋକା କେ ଗୋପେ ରହିବେ ତା ଶୁଣି । ଟାଉ ଟାଉ ହେବେ ସୁର-ରମଣୀ
ଟଳ ଟଳ ହେବ ମେରୁ ଭୂଧର । ଟିକି ହନୁ କଣା ହେବେ ତୁମ୍ବର ।
ଟହକହାସୀ କିଶୋରୀ(ଙ୍କ) ମନ । ଟବ ପରି ରସେ ବୁଡ଼ିବ ପୁଣ ।୧୪।

---

୯—ଚମ—ଆଶ୍ଚର୍ଯ୍ୟ । ଚରାଚର—ସ୍ଥାବର ଜଙ୍ଗମ ସମସ୍ତ ଜଗତର । ଭବ—ଦୁଃଖ, ତାପ । କେହ୍ନ—କିପରି । ଦୈତ୍ୟଭୋଗ—ଅସୁରମାନଙ୍କ ଭୋଗ ହେଉ । ଚତୁରମୁଖ—ବ୍ରହ୍ମା । କାମଦହନେ—କନ୍ଦର୍ପଦ୍ୱାରା ପୋଡ଼ି ହେବାରୁ ।

୧୦—ଚାମୀକର ଗୋଷ୍ଠ—ସୁନା ପରି ଗୋଷ୍ଠ । କିଶୋରୀ—ଚନ୍ଦ୍ରାବଳୀ । ଚଇତନ୍ୟ, ଦମ୍ଭ—ଚେତା ଓ ଧୈର୍ଯ୍ୟ । ଚତୁରୀବାର—ଯୁବତୀ ସବୁ । ଚପଳେ—ଶୀଘ୍ର । ବିଧି—ବ୍ରହ୍ମା । ଚଡ଼ାଇ—ପକ୍ଷୀ, ହଂସ ।

୧୧—ଟେକ ଚରଣ—ସମସ୍ତଙ୍କର ପୂଜାଯୋଗ୍ୟ ପାଦ । ଟିକକେ—ଅଳ୍ପ ବେଳ ପରେ । ହଟି—ସମ୍ମାନରେ ଘୁଞ୍ଚିଯାଇ । ଟଙ୍କଧର—ଶିବ ।

୧୨—ଟାହିରେ—ପରିହାସରେ । ପ୍ରଜାପତି—ଆହେ ବ୍ରହ୍ମା । ଟଙ୍କେ—ପଥର ହାଣିବା ଅସ୍ତ୍ରରେ । ଟୋପ—ଖାଡ । ମତ୍ତକରୀ—ମରୁଆଲ ହାତୀ ।

୧୩—ଟାପରା—ପରିହାସ । ଯୋଗ୍ୟ—ପାଞ୍ଚ । ରତିପତି—କନ୍ଦର୍ପ । ଗୁଣ—ଧନୁର ଗୁଣ । ଟଙ୍କାରିବ କି—ଟାଣିବ କି ? ଟିକାଏ—ଅଳ୍ପ । ବଟକୁ—ବଂଶୀବଟକୁ । ଦନ୍ୟ ହୁଅ—ନ୍ୟୂନ ହୋଇ ମାଗ ।

ଟୋପିଏ ରୋଚନା ଯେନ କପାଳେ । ଟିକା ଦେଖି ମୋହ ହେବେ ଅଖିଳେ
ଟିକ ଟିକ ହେବ ଯୁବତୀଗୁଣ୍ଠି । ଟାଙ୍ଗଣା ସେ ସୁନାକୁ ତୁମ୍ଭ ପ୍ରୀତି ।
ଟମକ ବଜା(ଇ) ପ୍ରେମ ରଟିବେ । ଟପ ଟପ ଭାଷା କେତେ ସହିବେ ।୧୫।
ତ—ତା ଶୁଣି ଗୋବିନ୍ଦ ଆତୁର ହେଲେ । ତୁରିତେ ବଟକୁ ପ୍ରାର୍ଥନା କଲେ ।
ତତକ୍ଷଣେ ବଂଶୀ କରେ ପ୍ରବେଶ । ତା ଦେଖି ଗୋବିନ୍ଦ ବଡ଼ ହରଷ ।
ତହିଁର ତତ୍ତ୍ୱ (ଯେ) ବ୍ରହ୍ମା କହିଲେ । ତନ୍ତ୍ର ମନ୍ତ୍ର ଯନ୍ତ୍ର ଚେତାଇ ଦେଲେ ॥
ତ୍ରୈଲୋକ୍ୟ-ମୋହନ ଚରଣ ନମି । ତତକ୍ଷଣେ ବିଧି ସ୍ୱପୁରେ ଗମି ।
ତହୁଁ ଗୋବିନ୍ଦ ହରଷେ ବିରସେ । ତପନଜାତଟରେ କଦମ୍ବ ପାଶେ ।
ତ୍ରୈ(ତଇ)ଲୋକ୍ୟ ନାଥ ବିଜୟ କଲେ । ତରୁମାନଙ୍କୁ ବିଭ୍ରମେ ବୋଇଲେ ॥
ତୁମ୍ଭେ କି ଜାଣ ବୃଷଭାନୁସୁତା । ତିନି ଭୁବନେ ଯେ ବରବନିତା ।
ତାହାକୁ ମୋତେ ବେଗେ ଆଣିଦିଅ । ତରସ୍ତ କାମଦେବର ରୁହାଅ ।
ତା(ହା)ପଦ ହୃଦେ ପଦକ କରି । ତଶିବ କାମ-ପ୍ରେତ ଭସ୍ମ ବାରି ।୧୮।
ତପନୀୟଗୋରୀ ବରନ ଜାଣି । ତଳପତନ ପକ୍ୱପନସ ଆଣି ।
ତୀର୍ଥପାବନ ସ୍ୱହସ୍ତରେ ଲଦନ୍ତି । ତଦାକାର ଭାବ କ୍ଷଣେ ଭଜନ୍ତି ।
ତ(ତ)କ୍ଷଣେ ଚେତ ବୋଲନ୍ତି ଆହା । ତରୁଣୀ ତିଳକ ନୋହିଲ ସାହା ।୧୯।

---

୧୪—ସୁରରମଣୀ—ଦେବ ସ୍ତ୍ରୀ । ଭୂଧର ପର୍ବତ । ଟିକଦନୁ—ଟୋକାଦନରୁ ବା ପିଲାଦିନରୁ । ଟହକହାସୀ—ସୁନ୍ଦର ହାସୀ । କିଶୋରୀ—ଯୁବତୀଙ୍କ । ଟବ—ଟବ ଶବ୍ଦ କର ।

୧୫—ରୋଚନା—ଗୋରଚନା । କପାଳେ—ଭାଲରେ; କପାଳ ଅର୍ଥରେ ଓଡ଼ିଆରେ କପାଳ ବ୍ୟବହାର ହୁଏ । ଅଖିଳେ—ସମସ୍ତେ । ଟମକ ବଜାଇ—ପ୍ରକାଶ୍ୟ ଭାବରେ । ଟପଟପ ଭାଷା—ଗାଳି, ଭର୍ତ୍ସନା ।

୧୬—ତ୍ରୈଲୋକ୍ୟମୋହନ—ଶ୍ରୀକୃଷ୍ଣଙ୍କର । ଗମି—ଗଲେ । ହରଷେ—ବଂଶୀ ପାଇବାରୁ ଆନନ୍ଦରେ ବିରସେ—ବିରହ ଦୁଃଖରେ । ତପନ-ଜାତଟରେ—ଯମୁନା କୂଳରେ । ବିଭ୍ରମେ—ବିହ୍ୱଳ ଭାବରେ, ଭ୍ରମରେ ।

୧୮—ବୃଷଭାନୁସୁତା—ରାଧା । ବରବନିତା—ଉତ୍କୃଷ୍ଟା ସ୍ତ୍ରୀ । କାମଦେବର ତରସ୍ତରୁହାଅ—କନ୍ଦର୍ପଭସ୍ମ ରକ୍ଷିତ କର । କାମପ୍ରେତଭସ୍ମବାରି—କନ୍ଦର୍ପ ରୂପକ ପ୍ରେତର ଭସ୍ମରୂପକ ଜଳ; ବେକରେ ଯୋଲଟିପା ବାନ୍ଧି ପହଁରିଲା ପରି ।

୧୯—ତପନୀୟଗୋରୀ—ସୁନାଗୋରୀ, ଶ୍ରୀରାଧା । ବର୍ଣ୍ଣ—ରଙ୍ଗ । ତଳ-ପତନ—ତଳେ ପଡ଼ିଥିବା । ପକ୍ୱ—ପାଚିଲା । ତୀର୍ଥପାବନ—ତୀର୍ଥଙ୍କୁ ପବିତ୍ର କରେ ଯେ । ସ୍ୱହସ୍ତରେ—ନିଜ ହସ୍ତରେ । ତଦାକାର ଭାବ—ସେହି ରାଧାଙ୍କ ଆକାର ହେବା । ତରୁଣୀତିଳକ—ଯୁବତୀଶ୍ରେଷ୍ଠ ।

ଭୂଳା-ଅଙ୍ଗୀ ଅଙ୍ଗୀକାର ନ କଲା । ତୁଚ୍ଛ ଜୀବ କାହିଁପାଇଁ ରହିଲା ।
ତା ସଙ୍ଗ ସ୍ୱର୍ଗ ଅପବର୍ଗ ସୀମା । ତନପୁର ସାର ସୁଖ ପ୍ରତିମା ।
ତପସ୍ୟା(କ)ପୂର୍ବେ ନାହିଁ ମୋହୋର । ତା ଚରଣେ ହେବ କେହି କଙ୍କର ॥
ପ-ପରମ ପବିତ୍ର ନାମ ଉଚ୍ଚାର । ପାପୀ ପଚାଣ ଯା ଯା ବେଗ କର ।
ପାଇବୁ ରସିକ ମୁଖେ ପ୍ରଶଂସା । ପରଲୋକେ ନ ପାଇବୁ ଦୁର୍ଦ୍ଦଶା ।
ପ୍ରମଦାଶିର (ର) ମୁକୁଟମଣି । ପ୍ରାଣର ପ୍ରାଣ କ ସେ ସୁଲକ୍ଷଣୀ ।୨୧।
ପରମଦାରଣ ମଦନ କାଣ୍ଡେ । ପିଣ୍ଡ ଖଣ୍ଡ ଖଣ୍ଡ କଲା ଉଦ୍ଦଣ୍ଡେ ।
ପବି ପତନ ହେଉନାହିଁ ମୁଣ୍ଡେ । ପ୍ରିୟେ ତ୍ରାହି ତ୍ରାହି ଉଚ୍ଚାରି ତୁଣ୍ଡେ ।
ପତିତ ତ୍ରାଣ (ତାରଣ) ଏମନ୍ତ କହି । ପଡ଼ିଲେ କ୍ଷଣେ କ୍ଷଣେ ମୋହ ଯାଇ ॥
ପବନ ଲାଗି ପାଇଲେ ଚେତନା । ପୁଣି ବୋଲନ୍ତି ହା ହା ରେ ନୂତନା ।
ପରତେ ହୋଇ ନ ପାରିଲ ତୋତେ । ପ୍ରଭୁପଣ ବନ୍ଧୁ କରନ୍ତି କେତେ ।
ପାରଖି ନୋହିଲୁ ମୋ(ର)ସେବାକୁ । ପାପୀ ପାଇବ କାହିଁ କୃତାର୍ଥକୁ ।୨୩।
ପାଞ୍ଚୁଥାଇଁ ଧନ ଭେଟିବ ଯେବେ । ପରିଜନ ପଣ କରିବ ତେବେ ।
ପାଦେ ଯାବକ ଲେଖି ମନାଇବି । ପିକଭାଷୀକି ମୁଁ ଏହା ଭାଷିବି ।
ପରମ ଗୁଣଗ୍ରାହୀ ତୁ (ହି) ପରି । ପାଖେ ରଖ କରି ସେବକ ଧୀରି ।୨୪।
ପୁରୁଷୋତ୍ତମ ଭାବନା ଏପରି । ପାରିବ କେ କହି ଶରୀର ଧରି ।
ପରସନ୍ନେ ହୋଇ ସୁଜନଜନେ । ପୁରୁଷଶେଖର ଭାବ ଭାବନେ ।
ପତିତ (ମୁଁ ) ଅଭିମନ୍ୟୁ ବିରସ । ପଞ୍ଚ ବର୍ଣାଦ୍ୟରେ ଏ ଛାନ୍ଦ ଶେଷ ।୨୫।

---

୨୦—ଭୂଳାଙ୍ଗୀ—ଭୂଳା ପରି କୋମଳାଙ୍ଗୀ, ଶ୍ରୀରାଧା । ସଙ୍ଗ-ସଂସର୍ଗ । ସ୍ୱର୍ଗ ଓ ଅପବର୍ଗର ସୀମା—ମୁକ୍ତିର ଶେଷ ସୀମା । ସାର—ଉତ୍କୃଷ୍ଟ ଅଂଶ । ସୁଖ ପ୍ରତିମା—ଆନନ୍ଦ ପ୍ରତିମୂର୍ତ୍ତି ।

୨୧—ପରଲୋକରେ—ମରିବା ପରେ, ଅନ୍ୟ ଲୋକରେ । ପ୍ରମଦାଶିର-ମୁକୁଟମଣି—ସ୍ତ୍ରୀଙ୍କର ମଉଡ଼ମଣି ।

୨୨—ପରମଦାରଣ—ବେଶୀ ବିଦାରଣ କରି ବା କରିଥି । ମଦନ—କନ୍ଦର୍ପ । ପିଣ୍ଡ—ଦେହ । ଉଦ୍ଦଣ୍ଡେ—ଦାରୁଣ ଭାବରେ । ପବି—ବଜ୍ର । ପତିତତ୍ରାଣ—ପାପୀମାନଙ୍କର ଉଦ୍ଧାରକର୍ତ୍ତା ଶ୍ରୀକୃଷ୍ଣ ।

୨୩—ପରତେ—ପରିଚୟ, ଚିହ୍ନି । ପାରଖି—ପରଖ (ପରୀକ୍ଷା) କରି ପାରିଲୁ ନାହିଁ ।

୨୪—ପରିଜନ—ଚାକର । ଯାବକ—ଅଳତା । ଧୀରି—ପଣ୍ଡିତା ।

୨୫—ପୁରୁଷୋତ୍ତମ ଭାବନା—ପୁରୁଷଶ୍ରେଷ୍ଠ କୃଷ୍ଣଙ୍କର ଚିନ୍ତା । ପରସନ୍ନେ—ପ୍ରସନ୍ନ—ଆନନ୍ଦ, ହୋଇ । ପୁରୁଷଶେଖର—ପୁରୁଷ ଶ୍ରେଷ୍ଠ । କୃଷ୍ଣଙ୍କର ।

## ଅଷ୍ଟାଦଶ ଛାନ୍ଦ

## ଜଳକ୍ରୀଡ଼ା-ବସ୍ତ୍ରହରଣ

ନ ପୂର୍ବାନୁପ୍ରାସ । ରାଗ—କନଡ଼ା

ନବଘନ ଶ୍ୟାମ ପ୍ରେମ କଉତୁକ ଆନନ୍ଦେ ଶୁଣ ସାଧୁଜନେ ।
ନ ଦେଖିବ ଯମଭୟ ସ୍ୱପନେ ।
ନବୀନା ଗୋପକୁମାରୀ ସୁକୁମାରୀମାନେ ମିଳି ଧାଇଁ ବନେ । ସେ ନାଗରୀ ।
ନତ-ବ୍ରତକୁ ଆଚରଣ କଲେ ।
ନଦୀଜଳେ ସ୍ନାନ କରି ନର୍ମିଲେ ।
ନତ ହର ଉମା ପୂଜ ସେ କାର୍ତ୍ତିକ ମାଘ ମାଧବ ସାରିଲେ । ସେ ନାଗରୀ ।୧।
ନନ୍ଦନନ୍ଦନ ପତି ହେବା କାମନା ସବୁରି ଅଛଇ ବିଶେଷ ।
ନ ଜାଣଇ କେହି କାହା ମାନସ ।
ନିଷ୍ଠାବ୍ରତ ଶେଷଦିନେ ସର୍ବେ ହେଲେ କାଳିନ୍ଦୀ ତୀରେ ପ୍ରବେଶ । ସେ ନାଗରୀ ।
ନଦୀଘାଟରେ ପୂଜାଦ୍ରବ୍ୟ ରଖିଲେ ।
ନିଜ ବସନ ବିବସନ ହେଲେ ।
ନାନା କଉତୁକ ହାସ ରସରଙ୍ଗେ ଜଳରେ ଯାଇଁ ପଶିଲେ । ସେ ନୂତନା ।୨।
ନିରେଖି ଜଳକୁ କେ ବୋଲେ କାଳିମା କୃଷ୍ଣ ଅଙ୍ଗ ପରି ଦିଶଇ ।
ନଳିନରେ ହ୍ରଦ ଦେଖ ଶୋହଇ ।
ନେତ୍ର ଇନ୍ଦୀବର, କୋକନଦ ପଦ, ନଖ କହ୍ଲାର ଅଟଇ । ଗୋ ନୂତନା ।

---

ଭବଭବନେ—ଅବସ୍ଥା ଭବ । ପତିତ—ଭ୍ରଷ୍ଟ, ପାପୀ । ବିରସ—ଦୁଃଖିତ । ବର୍ଗାଦିରେ—କଚଟତପ ଅକ୍ଷରମାନଙ୍କରେ ।

---

ବୃନ୍ଦାବନର ଈଶାନ କୋଣର ଚତୁର୍ଥ ଦଳ । କାତ୍ୟାୟନୀ ପୂଜା—ଏହି ଦଳରେ ବସ୍ତ୍ର ହରଣ ।

୧—**ନବଘନ ଶ୍ୟାମ**—ନୂତନ ମେଘ ପରି କଳା ଶ୍ରୀକୃଷ୍ଣ । **ନବୀନା ଗୋପକୁମାରୀ**—ନୂଆ ଗୋପକନ୍ୟା । ନତବ୍ରତ—ଗୌରୀବ୍ରତ (ବ୍ରହ୍ମପୁରାଣ ଦେଖ) । **ହର ଉମା**—ଶିବ ପାର୍ବତୀ । ମାଧବ—ବୈଶାଖ ମାସ । ସେ ପାନ କଲେ ପୂର୍ବତ ଦୁଇଗଣ୍ଡ ତା ଉନ୍ନତ ନତବ୍ରତ କଲେ ଯା ଲୋଭରେ ଯୁବତୀ—ପ୍ରେମ-ତରଙ୍ଗିଣୀ—୨୪-୧୮ ଦେଖ ।

୨—**ନିଷ୍ଠା**—ନିୟମରେ । କାଳିନ୍ଦୀତୀରେ—ଯମୁନାକୂଳରେ । ବିବସନ—ଉଲଗ୍ନ ।

ନୀଳ-ଭ୍ରୂ ଭଙ୍ଗୀ-ଭଙ୍ଗ ଶୋଭା ଦଳେ ।
ନ ପୁଣି ଗୋ ହୋଇଥାଇ ଏହା ସେ ।
ନଯୁନ ଠାରଲା ପରସ୍ପେ ଶଫରୀ-ଛଟକ ମନକୁ ଆସେ । ଗୋ ନୂତନା ।୩।
ନିର୍ମଳ କୁଟିଳ ମିଶାମିଶି ହ୍ରଦ ଗମ୍ଭୀର ଅଟଇ ଅପାର ।
ନିଷ୍ଟେ ରସାମୃତ ରୂପ ବସ୍ତୁର ।
ନୋହିଲେ ପଦ୍ମିନୀ କୁମୁଦିନୀପ୍ରିୟ କାହିଁ ପାଇଁକ ହେବାର । ଗୋ ନୂତନା ।
ନୋହେ ଏମନ୍ତ କେ କହେ ତହିଁରେ ।
ନନ୍ଦନନ୍ଦନ ନାଗଦଳନରେ ।
ନାଗର ଚରଣ ସ୍ମରଣ ପାଇଣ ସେହି ଆଚରଣ କରେ । ଗୋ ନୂତନା ।୪।
ନ ପାଇବ ଅଙ୍ଗଦାହ ତାପ ଏଥି ମଜ୍ଜନ ହୁଅ କେ କହିଲା ।
ନେଇ ପଦ୍ମ କେ କାହା କୁଚେ ଦେଲା ।
ନର୍ମ ମର୍ମଭାବେ ତନ୍ମୟ ହେବାରୁ କୃଷ୍ଣଙ୍କର ପ୍ରତେ ହେଲା । ସେ ନୂତନା ।
ନ ହସିଲା ପରା ହୋଇ ହସିଲା ।
ନାସା ବସଣୀ ନୃତ୍ୟ ଆରମ୍ଭିଲା ।
ନିର୍ବେଦରୁ ପୁଲକ ଗାତ୍ରରେ ଦିଶିଲା ଚେତ ଲାଜ ପାଇଗଲା । ସେ ନୂତନା ୫ ।
ନାହିଁ ହେବ ବୁଦ୍ଧି ଜ୍ଞାନ ଏହିରୂପେ କ୍ରୀଡ଼ନ୍ତ ସବ ଗୋପବାଳୀ ।
ନିଷ୍ଠା ତାଙ୍କର ଜାଣି ବନମାଳୀ ।
ନଭସ୍ବତେ ଆଜ୍ଞା ଦେଇ ଲଟ ଆଣି କଦମ୍ବରେ କଲେ ଦୋଳା ସେ ନାଗର ।

---

୩—କାଳିମା—କଳାରଙ୍ଗ । ନଳନରେ—ପଦ୍ମରେ । ହ୍ରଦ-ମଧ୍ୟଭାଗ ଓ ହ୍ରଦସ୍ଥ । ଇନ୍ଦୀବର—ନୀଳକଇଁ, ନେତ୍ର । କୋକନଦ—ରକ୍ତ ପଦ୍ମ । ପଦ-ପାଦ । କହ୍ଲାର କଇଁ ନଖ ଅଟଇ । ନୀଳଭ୍ରୂଭଙ୍ଗୀଭଙ୍ଗ—ନୀଳବର୍ଣ୍ଣ ଭ୍ରୂଲତାର ଭଙ୍ଗୀ ପର ଲହରୀ । ଶଫରୀ ଛଟକ—ଦଣ୍ଡିଖିର ଓଲଟିବା ।

୪—ହ୍ରଦ—ମଧ୍ୟଭାଗ । କୁଟିଳ—ନନ୍ଦ । ଲହରୀ ଯୋଗୁ ଦୁଇପ୍ରକାର ମିଶାମିଶି ହୋଇଛି; ପୁଣି ଅପାର ଗମ୍ଭୀର—ଭାର ଗଭୀର, ହୋଇଅଛି । ନିଷ୍ଟେ ରସ ଓ ଅମୃତ ନାମ ଥିବାରୁ ରସାମୃତ ରୂପରେ—କୃଷ୍ଣରୂପରେ ମଧ୍ୟ, ବସ୍ତୁର କର । ରସ—ଜଳ । ଅମୃତ—ଜଳ । କୃଷ୍ଣଙ୍କର ହ୍ରଦସ୍ଥ ମଧ୍ୟ ନିର୍ମଳ ଓ କପଟ ମିଶିଥିବା ଯୋଗୁ ବଡ଼ ଗମ୍ଭୀର ହୋଇଥାଏ । ଏ ଜଳ ପଦ୍ମିନୀ—ପଦ୍ମଲତା, କୁମୁଦିନୀ—କଇଁଲତା, ଦୁହିଙ୍କର ପ୍ରୀତି ଜନ୍ମାଉଅଛି । କୃଷ୍ଣ ମଧ୍ୟ ପଦ୍ମିନୀ ପ୍ରଭୃତି ସବୁ ଜାତିର ସ୍ତ୍ରୀମାନଙ୍କର ପ୍ରିୟ ଅଟନ୍ତି । ନନ୍ଦନନ୍ଦନ—କୃଷ୍ଣ । ନାଗ—ସର୍ପ, କାଳି । ଦଳନରେ—ଦଳିବାବେଳେ । (ବୃନ୍ଦାବନର ବାସ୍ତୁ କୋଣର ଫଷ୍ଟଦଳରେ କାଳୀୟ ଦମନ) । ନାଗର ଚରଣ ସ୍ମରଣ ପାଇଣ—କାଳୀ ଅ କୃଷ୍ଣଙ୍କର ପାଦ ଲଗିଥିବାରୁ । ସେହି—କୃଷ୍ଣଙ୍କର । ଆଚରଣ—ବ୍ୟବହାର ।

ନାଗ ସାର କ୍ରୀଡ଼ା ଜନ୍ତୁଁ ବାହାର ।
ନ ଦେଖିଲେ କୂଳେ ଥିଲ ଅମ୍ବର ।
ନେଲ କେ ବୋଲ ଚଉଦିଗେ ଗୃହାନ୍ତେ ଦେଖିଲେ ଘନସୁନ୍ଦର । ସେ ନୂତନା ॥
ନଗ୍ନା ଜଳରେ ପଶିଲେ ସତ୍ୱରେ ଲଜ୍ଜାରେ ହୋଇ ଜରଜର ।
ନିଜ ଗଣ୍ଡେ ଶବୁକେ ଦେଇ କର ।
ନମ୍ରବଦ ହୋଇ କ୍ଷଣେ ବସ୍ତ୍ରଗନ୍ତ କହିଁଥିଲ ନୀଟ-ଦ୍ୱେର । ଗୋ ନୂତନା ।
ନ ଆସଇ ତ ଦିନେ ଏ ବନକୁ ।
ନ କଲ କ ହରବର ଆମ୍ଭଙ୍କୁ ।
ନାଶ ହେଲଠାରୁ ଲଜ ତ ବକଲ କେହ୍ନ ବୋଧିବା ତାହାକୁ । ଗୋ ନୂତନା ॥
ନ କର ବସ୍ତ୍ରର ହର ପ୍ରକାର ବର ଏଣ୍ଠି, କହେ କେ ତହିଁ ।
ନେବା ବସନ ନାନାମତେ କହି ।
ନ ଦେଲେ ଲଜରେ ମଲଁ କେ କହେ ଗଡ ଆଉ ଦିଶୁ ନାହିଁ । ଗୋ ନୂତନା ।
ନଡ ବଚନେ କ ଗୋ ପ୍ରବୋଧିବା ।
ନାନା ତର୍ଜନା ଭର୍ତ୍ସନା କରିବା ।
ନୋହିଲେ ଲାଞ୍ଛ ଦେବାବୋଲ ଭଣ୍ଡିବା ଦେବା ନ ଦେବା ଜାଣିବା । ଗୋ ନୂତନ
ନାନାମତେ ଭଲ ବାର୍ତ୍ତା କେ କହଇ ଆହେ ଘନଶ୍ୟାମ ସୁନ୍ଦର ।
ନବପଲ୍ଲବ ଚରଣେ ଲୁମ୍ଭର ।
ନୂତନାମାନେ ଶରଣ ହେଲୁଁ ବାସ ଅନୁଗ୍ରହେ ଦଉ କର । ହେ ନାଗର ।
ନତ କରୁଛୁଁ ଆମ୍ଭେ ପୁଣି ପୁଣି ।
ନାଶ ନ କର ଲଜ ବେଣୁପାଣି ।
ନିର୍ଦ୍ଦୟ ପରାୟେ କାହିଁକ ହେଉଛ ଆମ୍ଭର କଥା ନ ଶୁଣି । ହେ ନାଗର ।୯।

---

୫—ଅଙ୍ଗଦାହତାପ—ଦେହର ଜ୍ୱାଳା ଓ ତାପ ଏବଂ କନ୍ଦର୍ପବାଧା । ନର୍ମ୍ମମର୍ମ୍ମଭାବେ—ସୁରତ କ୍ରୀଡ଼ାର ପ୍ରକୃତ ଭାବରେ । ତନ୍ନସ୍ୱ—ସେହ କୃଷ୍ଣଭାବା-ବସ୍ଥ । କୃଷ୍ଣଙ୍କର—ଶ୍ରୀକୃଷ୍ଣଙ୍କର ହସ୍ତ । ପ୍ରତେ ହେଲ—ଜଣାଗଲ । ନିର୍ହେତୁ—ବେଶୀ କିଛୁ କାରଣ ନ ଥାଇ, ଅକାରଣେ ପ୍ରେମ ଟାଙ୍କୁରିଲ । ଚେତ—ଜାଣିପାର ।

୬—ନସ୍ଥା—ଐକାନ୍ତିକ ଭକ୍ତ । ନଭସ୍ୱତେ—ପବନକୁ । ନୀଟ—ଲୁଗା । କଦମ୍ବରେ—କଦମ୍ବ ଗଛରେ ।

୭—ଅମ୍ବର—ବସ୍ତ୍ର । କେହ୍ନ—କପଟ । ବୋଧିବା—ବୁଝାଇବା ।

୮—ହର—ଶିବ । ଗଡ—ଉପାୟ । ନଡ ବଚନେ—ବିନୟ କଥାରେ ।

୯—ନବପଲ୍ଲବ ଚରଣେ—ନୂଆ ପତ୍ର ପରି କଅଁଳ ପାଦରେ । ନୂତନାମାନେ—ନବୀନାମାନେ ।

ନବୀନା କେ ପୁଣି କହେ ଆହେ ବ୍ରଜରାଜକୁମାର ଏ କି ଶାନ୍ତ ।
ନ ଜାଣୁ କି ଆମ୍ଭେ ତୋ ବନ୍ଧୁ କାନ୍ତ ।
ନରନାରୀ ଗୋପେ ଶୁଣି କି ବୋଲିବେ ଛାଡ଼ ଛାଡ଼ ଏ କୁମନ୍ତ । ହେ ନାଗର ।
ନାଶ ଯିବ ଜାତିକୁଳ ମହତ୍ତ୍ୱ ।
ନାଟ-ବସନ ବେଗେ କର ଦତ୍ତ ।
ନ ଦେଲେ କହିବୁଁ ନନ୍ଦଯଶୋଦାଙ୍କୁ ତୋହୋର ଅଣଉଚିତ । ହେ ନାଗର ॥
ନବୀନା କେ ପୁଣି ଭଣିଲି ବିବେକଶେଖର ତୁମ୍ଭେ ପର ହରି ।
ନ୍ୟାୟ ଧର୍ମ କହୁଥାଅ ବିଚାରି ।
ନାରୀ ଲୀଟରେ କରିବା ଉଚିତ ଅଟଇ ନା ବେଣୁଧାରି ହେ । ନାଗର ।
ନୋହୁ ଏ କଥା ଗୋପରେ ଚହଟ ।
ନାଟ ବାସ ଦିଅ ଛାଡ଼ କପଟ ।
ନାହୁ ଶୁଣି ହିନେ ଏ କଥା କେହି ତ ଅବିହିତ ଜନେ ଲଟ । ହେ ନାଗର ।୧୧।
ନିତମ୍ବିନୀ ଏକ କହିଲା ପୁଣି ତ ନ ଦେବ ଯେବେ ବାସ ହରି ।
ନରପତି ଆଗେ କରି ଗୁହାରି ।
ନାନା ଦଣ୍ଡ ଦିଆଇବୁଁ ଶୁଣିଥାଅ ଏ କଥାକୁ ତଥ୍ୟ କରି ହେ ନାଗର ।
ନ ଗଣୁଛ କି ଗୋପଯୁବତୀଙ୍କି ।
ନନ୍ଦା ଅର୍ଜନ କରୁଛ କାହିଁକି ।
ନ ବାଞ୍ଛୁବ ପଛେ ଆମ୍ଭଙ୍କୁ ଆଉ ତ ଏ କଥା ହେବ ସହି କି । ହେ ନାଗର ।୧୨।
ନ ହସି ହସିଲା ରୀତେ କହନ୍ତି ଗୋପୀଙ୍କି ଶ୍ରୀହରି ବେଣୁଧର ।
'ନାହିଁ ସଂସାର ମଧ୍ୟେ ଉପକାର ।
ନେଉଥିଲା ବାତ ହିତ ମୁଁ କଲିକୁ ବୋଲୁଅଛ ବାଦ-ଶ୍ରୀର । ଗୋ ନବୀନା
ନବଯଉବନ-ମଦ-ବିହ୍ୱଳେ ।
ନ ରଖିଲ ବ୍ରତବଧି ସକଳେ ।
ନିର୍ଲଜ୍ଜପରି ଉଲଗ୍ନ ହୋଇ ଆସି ପଶିଅଛ ପୁଣି ଜଳେ । ଗୋ ନୂତନା । ।୧୩।

---

୧୦—ବ୍ରଜରାଜକୁମାର—ଗୋପର ରାଜା ନନ୍ଦଙ୍କର ପୁଅ କୃଷ୍ଣ । କୁମନ୍ତ—ମନ୍ଦବୁଦ୍ଧି । ନାଟ ବସନ—ସବୁ ଲୁଗା । (ନାଟ ନେତ୍ରରୁ), ଅଣ ଉଚିତ—ଅନୁଚିତ ।

୧୧—ବିବେକଶେଖର—ବିବେକୀ ଶ୍ରେଷ୍ଠ । ଚହଟ—ପ୍ରକାଶ । ଲଟ—ନବରଙ୍ଗ । ଅବିହିତ—ଅନୁଚିତ ।

୧୨—ନିତମ୍ବିନୀ—କୁମାରୀ । ତଥ୍ୟ—ସ୍ଥିର । ସହି-ସହ୍ୟ କରି ହେବ କି ?

ନର୍ମଳ ହ୍ରଦେ ଦଗମ୍ବର ଧାରଣ ହେତୁ ଅମ୍ବର ନ ସହ୍ଲ ।
ନୂଆ ହର ଗଉଷ ଯୋଗ ହେଲ୍ ।
ନଶ୍ଚେ ଜଣାଗଲ୍ ଏଥିପାଇଁ ନକ ମଦନ-ଘର ବୁଡ଼ଲ୍ । ଗୋ ନୂତନା ।
ନଜ ଆଚରଣ ମନେ ନ ଧର ।
ନୂପୁରରେ କର ଲେଉ ଗୃହାଶ୍ର ।
ନଅ ଯେ ଯାହାର ବାସ ଆସି ଚହ୍ନି ନ ଦେଲେ ଦୋଷ ଆମ୍ଭର । ଗୋ ନୂତନା॥
ନବୀନାମାନେ ଏ ବାଣୀ ଶୁଣି ଲଜ-ହରଷ-ରସରେ ମଜ୍ଜନ ।
ନ କରେ କ ଅନାସ୍ୱତ୍ତ ବଧାନ ।
ନ ଗଲେ ତ ପ୍ରତକାର ନାହିଁ ଆଉ, ଘଳ ବାଳୀ ଛନ୍ନମନ । ସେ ନୂତନା ।
ନଜ କରେ ମର୍ମ ସ୍ଥାନ ଆଚ୍ଛାଦ ।
ନଘା ଜଙ୍ଘୁ ବାହାର ନେଉ ମୃଦ ।
ନତ ବଦନେ ଅପଥ ପଥ କଲେ ମୁଖ ମୋଡ଼ କହେ ଲଦ । ସେ ନୂତନା ।୧୫।
ନବୀନସୁନ୍ଦର ଲଟବାସ ଘେନ କଦମ୍ବବୃକ୍ଷରୁ ଓହ୍ଲାଇ ।
ନୂତନାକୁ କହୁଛନ୍ତ ଗେଲ୍ଇ ।
ନବପଉବନ ଗରବରେ ଦେଲ୍ ମଦନ-ଘର ବୁଡ଼ାଇ । ଗୋ ନୂତନା ।
ନାହିଁ ଏ କଷ୍ଟୁ ତରବାକୁ ଗତ ।
ନମସ୍କାର ନୋହିଲେ ରତପତ ।
ନ କଲେ ଗତ ନାହିଁ, ଘଳ ନବୀନା ଏକ କରେ ଓଳଗନ୍ତ । ସେ ନବୀନା ।୧୬।

---

୧୩—ବାତ—ପବନ । ହତ—ଉପକାର । ମଦ ବହ୍ଲେ—ଗର୍ବରେ ଖେଳ ହୋଇ । ବ୍ରତ ବଧି—ବ୍ରତର ନସ୍ତ୍ମ ।

୧୪—ଦଗମ୍ବର—ଶିବ, ତାହାର ପଣ ସ୍ତନ । ଅମ୍ବର—ବସ୍ତ୍ର । ହରଗୌରୀଯୋଗ—ଶିବପାର୍ବତୀର ମିଳନ । ସ୍ତନ ଶିବ ପଣ ଓ ସ୍ତ୍ରୀମାନେ ଗୌରୀ ପଣ । ଅତଏବ ମଦନ—କନ୍ଦର୍ପର, ଘର ବୁଡ଼ଲ୍—ନଷ୍ଟ ହେଲ । ମଦନଘର—ଯୋନ । ବୁଡ଼ଲ୍—ଜଳରେ ବୁଡ଼ା ହେଲ ।

୧୫—ମଜ୍ଜନ—ବୁଡ଼ଲେ (ଉଲଗ୍ନ ଥିବାରୁ ଲଜରେ, ଶ୍ରୀକୃଷ୍ଣଙ୍କୁ ଦେଖିବାରୁ ହର୍ଷରେ, ଆସକ୍ତ ଥିବାରୁ ରସରେ) । ଅନାସ୍ୱତ୍ତ—ଅଣାସ୍ୱତ୍ତ ହେଲେ ଲୋକ କଣ ବଧାନ ନ କରେ । ଛନ୍ନମନ—ବ୍ୟାକୁଳ । ମର୍ମସ୍ଥାନ—ଗୁପ୍ତ ଅଙ୍ଗ । ମୃଦ—ବୁଜ । ନତବଦନେ—ମୁହଁ ନୁଆଇଁ । ଅପଥ—ଅବାଟ । ପଥ—ବାଟ ।

୧୬—ନବୀନ ସୁନ୍ଦର—ନବରୂପର ଶ୍ରୀକୃଷ୍ଣ । ରତପତ—କନ୍ଦର୍ପ । ଓଳଗନ୍ତ—ନମସ୍କାର କରନ୍ତ ।

ନାଗର ହସି ଭସିଲେ ଗୋ ନବୀନା ଧର୍ମଶାସ୍ତ୍ର କି ଶୁଣା ନାହିଁ ।
ନମସ୍କାର ହସ୍ତକେ ଅଛୁ କାହିଁ ।
ନେଇ ବେଦକର ଶିରେ ଦିଅ ବେଗେ ସ୍ତୁତି ଦୈନ୍ୟ ଭାଷା କହ । ଗୋ ନୂତନା ।
ନାଗ୍ରି ଅନାୟତ୍ତେ ହସି କହନ୍ତି ।
ନ ଜାଣୁ କେ ଦେବତା ଦେବା ଗତି ।
ନିଖିଳ ଦେବଦେବଙ୍କୁ ଜାଣୁ କହି କଲେ ବହୁତ ପ୍ରଣତି । ସେ ନୂତନା ।୧୭।
ନୟନ ମୁଦିବା ଦେଖି ହସି ହରି ବୋଇଲେ ଶଙ୍କି ନିଅ ବାସ ।
ନଗପତନ ମଣି ନାଗ୍ରିବଂଶ ।
ନ ଫାଟିଲ ମହୀ, ପଶିବା କାହିଁରେ, ଭାବନା କର ବିଶେଷ । ସେ ନବୀନା ।
ନଟନାଗର ହାଟିଆଶେଖର ।
ନାଟ ସରିବ ଏତେକେ ଚ୍ଛମ୍ବର ।
ନାଟ ଦିଅ କାହିଁ, ଧରାଧରି ହୋଇ ପିନ୍ଧିଲେ ଯେଝା ଅମ୍ବର । ସେ ନବୀନା । ୧୮
ନୟନେ ମିଶାଇ ଲଜ ସ୍ନେହ ଭଙ୍ଗୀ ରଙ୍ଗିମା ଓଷ୍ଠେ ମନ୍ଦ ହାସ ।
ନନ୍ଦସୁତ ମତ୍ତ କଲେ ଉଲ୍ଲାସ ।
ନିର୍ମଳ ପ୍ରେମ ମନ ଜାଣି ତାଙ୍କର ହୋଇଲେ ଗୋବିନ୍ଦ ତୋଷ । ସେ ନାଗର ।
ନୂତନାଙ୍କୁ କହନ୍ତି ମନ୍ଦେ ହସି ।
ନତ ବ୍ରତେ ଅଛ ଯାହା ମନାସି ।
ନିଷ୍ଠା କରିବି ସେ କଥା ଏଥିପାଇଁ ସାକ୍ଷୀ ଏ ମୋହନବଂଶୀ । ଗୋ ନୂତନା ।୧୯
ନବଘନ ଧ୍ୱନି ଶୁଣିଲୁ ବ୍ରତକାରୀ ପରସ୍ପରେ ଗୋପିକା ହୋଇଲେ ।
ନିଜ କରେ କୁସୁମ ମାଳା କଲେ ।
ନେଇ କୃଷ୍ଣଗଳେ ଲମ୍ବାଇ ଆନନ୍ଦେ ହୁଳହୁଳି ଧ୍ୱନି କଲେ ସେ ନୂତନା ।
ନବ ଅନୁରାଗ ଧନ ଅର୍ଜନ ।
ନେଇ କଲେ ପରସ୍ପରେ ସଞ୍ଚନ ।
ନବରଙ୍ଗୁ ବିଦା ହୋଇଗଲେ ଗୋପୀ କୃଷ୍ଣପାଦେ ରଖି ମନ । ସେ ନାଗର ।୨୦

---

୧୭—ଗତି—ମୁକ୍ତି ଦେବତା । କେ—କିଏ, ନ ଜାଣୁ । ନିଖିଳ ଦେବଦେବ—ସର୍ବଦେବପୂଜ୍ୟଙ୍କ ।

ନଗ ପତନ—ପର୍ବତ ପଡ଼ିବା । ନାଗ୍ରିବଂଶ—କୁମାରୀ ସବୁ । ମହୀ—ଭୂଇଁ । ନାଟ—ଖେଳ ଓ ବସ୍ତ୍ର । ଅମ୍ବର—ବସ୍ତ୍ର ।

୧୯—ଲଜ ସ୍ନେହଭଙ୍ଗୀ ନୟନରେ ମିଶାଇ ରଙ୍ଗିମା—ଲାଲ, ଓଷ୍ଠରେ ମନ୍ଦହାସ କରି ନନ୍ଦସୁତ ମତ୍ତ ଉଲ୍ଲାସ—ଆନନ୍ଦିତ, କଲେ । ନିଷ୍ଠା—ନିଶ୍ଚୟ ।

୨୦—ନବଘନ ଧ୍ୱନି—ନୂଆ ମେଘ ଗର୍ଜନ । ନବ······ଅର୍ଜନ—ନୂଆ ଅନୁରାଗରୂପକ ଧନ ରୋଜଗାର କରି ନିଜ ନିଜ ମଧ୍ୟରେ ସଞ୍ଚୟ କରି ରଖିଲେ ।

ନବଘନଶ୍ୟାମ ତ୍ରିଭଙ୍ଗୀମଠାଣି ମୁରଲୀମୁଖ ମନୋହର ।
ନଣି ହୃଦେ ଧ୍ୟାନ ହେଉ ମୋହର ।
ନରକରକ୍ଷକ ନାମ ସାର୍ଥହେଉ ବୋଲେ ସାମନ୍ତସିଂହାର । ହେ ନାଗର ।
ନ ପୂର୍ବାନୁପ୍ରାସରେ ଶେଷ ଛାନ୍ଦ ।
ନାହିଁ କଷ୍ଟ ଅର୍ଥ ଘେନ କୋବଦ ।
ନଖିଳ-ରସାନନ୍ଦ-ରସ ଅସ୍ୱାଦ କଲେ ପାଇବଟି ସ୍ୱାଦ। ହେ ନାଗର।୨୧।

— — —

## ଊନବିଂଶ ଛାନ୍ଦ

### ଦ୍ୱ ଭଙ୍ଗ ଅନୁପ୍ରାସ

ଦିଶ- ଛଗ ମୁକ୍ତାବଳୀ

ଜଗବାନ୍ଧବ ଲୀଳା ସାଧବ ଜନେ ଶୁଣ ଦେଇ ମନ ।
ଯହୁଁ ସୁମନା ଗଲେ ବିମନା ହେଲେ ଶ୍ରୀନନ୍ଦ-ନନ୍ଦନ । ୧ ।
ଚନ୍ଦ୍ରା ମୂରତ ଚନ୍ତୁ କରତ ପକାଉଛୁ କାମ ଘାତ ।
ଲଭିବା ଆଶେ ବୁଦ୍ଧି ନ ଆସେ ଚନ୍ତାଭର ମତ ଅତ । ୨ ।
ଏହି କାଳରେ ସେହି ସ୍ଥଳରେ ସବ୍ୟା ସଖୀ ପରବେଶ ।
ଦେଖି ଗୋବନ୍ଦ ସେ ଅରବନ୍ଦବଦନାର ହସ ହସ । ୩ ।
ଚନ୍ଦ୍ରା ସଜନୀ ହେବ ରଜନୀକର ମୁଖୀ ବଚୃରଲେ ।
କୃଶଉଦରୀ କାହା ସୁନ୍ଦରୀ ଏକା ବୁଲୁ ପଚୃରଲେ । ୪ ।

---

୨୧—ତ୍ରିଭଙ୍ଗିମଠାଣି—ବେକ, ଅଣ୍ଟା ଓ ପାଦକୁ ବଙ୍କା କର ଠିଆ ହେବାର ଶୋଭା । ନରକରକ୍ଷକ—ଅରକ୍ଷର ରକ୍ଷାକାରୀ । 'ନ' ପୂର୍ବାନୁପ୍ରାସରେ—'ନ' ଅକ୍ଷର ଆଗରେ ଅଛୁ । ନଖିଳ ରସାନନ୍ଦରସ—ସମସ୍ତ ରସ ଓ ଆନନ୍ଦ ସ୍ୱରୂପ । ଶ୍ରୀକୃଷ୍ଣ—ପ୍ରେମ ସ୍ୱାଦ ପାଇବ ।

— — —

୧—ଜଗବାନ୍ଧବ—ଜଗତର ବନ୍ଧୁ ଶ୍ରୀକୃଷ୍ଣ । ସୁମନା—ସ୍ତ୍ରୀ, ଗୋପକନ୍ୟା । ବିମନ—ଦୁଃଖିତ ।

୨—ଚନ୍ଦ୍ରାମୂରତ—ଚନ୍ଦ୍ରାବଳୀ ରୂପ । ଚନ୍ତାଭର—ଚନ୍ତାପୂର୍ଣ୍ଣ ।

୩—ଅରବନ୍ଦ ବଦନାର—ପଦ୍ମମୁଖୀ ସବ୍ୟାର ।

୪—ଚନ୍ଦ୍ରାସଜନୀ—ଚନ୍ଦ୍ରାବଳୀର ସଖୀ । ରଜନୀକରମୁଖୀ—ଚନ୍ଦ୍ରମୁଖୀ ସବ୍ୟାର । କୃଶଉଦରୀ—କ୍ଷୀଣକଟୀ ।

ସଖୀ ହସିଲା ମନ୍ଦେ ଭାଷିଲା ଶୁଣ ହେ ନାଗରବର ।
ରସବିଗ୍ରହ ହୋଇ ନିଗ୍ରହ ଅନୁଗତ ଜନେ କର । ୫ ।
ତୁମ୍ଭ ଆଶାରେ ମଦନଶରେ ଚନ୍ଦ୍ରାବଳୀ ଆସି ସରେ ।
ତବ ଉତ୍ତର ମୋହମନ୍ତ୍ର ଜାଣିଲୁଁ ଆମ୍ଭ ବିସ୍ତରେ । ୬ ।
ଆଶା ଦେଖାଇ ନ ଦେଲେ ଖାଇବାକୁ ଅପରାଧ ସିନା ।
ନ ଥିଲୁ ମଣି ରସିକମଣି ଯୁବତୀ-ପରାଣ-ଘେନା । ୭ ।
ତୁମ୍ଭ କାତର ପ୍ରେମ ଉତ୍ତର ଶୁଣି ଆମ୍ଭେ ବଶ ହେଲୁଁ ।
ଗୁଣବନ୍ତୀକ ତବ ପ୍ରୀତିକ କେତେମତେ ମଣାଇଲୁଁ । ୮ ।
ବୁଢ଼ୀ ଆକଟ ମହାସଙ୍କଟ ବଟି ବ୍ୟାଧି-ଶାନ୍ତ-ଛଳେ ।
ପଦ୍ମା ବୁଦ୍ଧିରେ ରସନିଧିରେ ଆଣିଅଛୁଁ ବଳେ ବଳେ । ୯ ।
ପୂଜି ଗଉରୀ ଚମ୍ପାଗଉରୀ ବେଗେ ଯିବେ ନିଜ ପୁର ।
ସକଳ ମିତେ ତୁମ୍ଭ ନିମିତ୍ତେ କରିଛୁଁ ଏତେ ବିସ୍ତର । ୧୦ ।
ଉମା ତୀର୍ଥରେ ଅଛନ୍ତି ଖରେ ଜଣାଇଲ ଶ୍ରୀ ଗ୍ରାମୁରେ ।
ଆଉ ଭରସା ନାହିଁଟି ରସାମୋହିକ ଆଣିବୁଁ ବାରେ । ୧୧ ।
ଶୁଣି ମୋହନ କଣ୍ଠୁ ବହନ ହାର ଉପହାର ଦେଲେ ।
ମୋ ଜୀବଦାନ ଦେଲୁ ନିଦାନ ଆତୁରଛନ୍ନେ ବୋଇଲେ । ୧୨ ।
ଉଚାଟ ଜପ୍ୟେ କହିଲ ବିଜୟେ ସଖୀ ସଙ୍ଗେ ସଙ୍ଗେ ହରି ।
ଉମାବାସରେ ମିଳି ଆଶରେ ବସିଲେ ମୁରଲୀଧାରୀ । ୧୩ ।

---

୫—ରସବିଗ୍ରହ—ରସମୟ ମୂର୍ତ୍ତି । ନିଗ୍ରହ—ଦଣ୍ଡ, ଉପେକ୍ଷା ।

୬—ସରେ—ସରୁଅଛୁ । ତବ ଉତ୍ତର—ତୁମ୍ଭ ଚିଠାଉ । ମୋହନମନ୍ତ୍ର—ମୋହ କରିବାର ମନ୍ତ୍ର ।

୮—କାତର ପ୍ରେମଉତ୍ତର—କାତରତା ଓ ସ୍ନେହପୂର୍ଣ୍ଣ ଚିଠାଉ ।

୯—ବୁଢ଼ୀ—ଶାଶୁ । ଆକଟ—ଜଗିବା । ମହାସଙ୍କଟ—ବଡ଼ ବିପଦ୍ । ବଟି—ଠକି । ବ୍ୟାଧିଶାନ୍ତଛଳେ—ରୋଗ ଭଲ ହେବା କପଟରେ । ପଦ୍ମାବୁଦ୍ଧିରେ—ପଦ୍ମାନାମ୍ନୀ ସଖୀର ବିସ୍ତରରେ । ରସନିଧିରେ-ରସବତୀ ଚନ୍ଦ୍ରାବଳୀଙ୍କୁ ।

୧୦—ଗଉରୀ—ପାର୍ବତୀଙ୍କୁ । ଚମ୍ପାଗଉରୀ—ଚମ୍ପାପରି ଶ୍ୱେତପୀତବର୍ଣ୍ଣା ଚନ୍ଦ୍ରାବଳୀ ।

୧୧—ଆଉ ବାରେ—ଆଉ ଥରେ । ରସାମୋହନୀ—ପୃଥିବୀ ମୋହନକାରିଣୀ ଚନ୍ଦ୍ରାବଳୀଙ୍କୁ ।

୧୨—ନିଦାନ—ନିଶ୍ଚୟ । ଆତୁରଛନ୍ନେ—ଉତ୍କଣ୍ଠାରେ ବିହ୍ୱଳ ହୋଇ ।

୧୩—ଉଚାଟ—କଷ୍ଟ । ଉମା ବାସରେ—ଦେବୀଙ୍କର ମନ୍ଦିରରେ । ଆଶରେ—ଆଶାକରି । ୧୪—ଅତି ମୋଦରେ—ଅଧିକ ଆନନ୍ଦରେ ।

ଏଣୁ କାଳରେ ସଖି ମେଳରେ ବିଜେ କଲେ ଚନ୍ଦ୍ରାବଳୀ ।
ଅତି ମୋଦରେ ଜୟନାଦରେ ସଖୀ ଦେଲେ ହୁଳହୁଳୀ । ୧୪ ।
ଦେଖି ପୁରତେ କାମ ଆରତେ କୃଷ୍ଣତନୁ କମ୍ପମାନ ।
ଅଧୋବଦନେ କମ୍ପି ମଦନେ ଚନ୍ଦ୍ରାବଳୀ ଛନ୍ନ ଛନ୍ନ । ୧୫ ।
ଭଦ୍ରା ବଚନ କଲ ରଚନ କି ଯୋଗେ ଅଇଲୁଁ ଆଜ ।
ନୋହୁ ଦର୍ଶନ ଉମା ପ୍ରସନ୍ନ ଭେଟିଲୁଁ ରସିକରାଜ । ୧୬ ।
ରମଣୀବର ନଜ ଦେବର ବ୍ରଜରାଜ ସୁତ ସିନା ।
ଛାଡ଼ ଅନ୍ତର ଚିତ୍ତ ସତର ବୟସୀ ପୂରୁ କାମନା । ୧୭ ।
କରୁଣାକର ଏକାଳେ କର ଧରିକରନ୍ତି ବିନତି ।
ଆରେ ରମଣୀ-ମୁକୁଟମଣି ଯେନ ଏ ଧ୍ୟାନ ଭଗତି । ୧୮ ।
ଗଜେନ୍ଦ୍ରଗତି ତୋ ବିନା ଗତି ଆନେ ନାହିଁ ମନେ କର ।
ଦେଖା ଦାନରେ ଭାବ ଧନରେ ହୋଇଛୁ କିଣା କଙ୍କର । ୧୯ ।
ସଖୀ ଚତୁରବର ଆତୁର ଜାଣିଣ ଅନ୍ତର ହେଲେ ।
ସେହୁ ଦମ୍ପତି ସୁଖସମ୍ପତି ବୃଷ୍ଟି ହେଲ ବର୍ଣ୍ଣିଲେ । ୨୦ ।
ସଙ୍କେତକୁଞ୍ଜେ ଆନନ୍ଦପୁଞ୍ଜେ ବିଜେ କୋଳେ ଯେନ ହରି ।
ରାମା ଡରଇ ତନୁ ଥରଇ ନବ ଅନୁଭବୁଁ କରି । ୨୧ ।
କରକ ବୁକେ କର ଚିବୁକେ ଦେଇ ଗୃଷ୍ଟି ଆରମ୍ଭିଲେ ।
ଘନଶ୍ୟାମ ତ ମୋର ଯାମନ୍ତ ଧ୍ୟାନ ଅଭିମନ୍ୟୁ ବୋଲେ । ୨୨ ।
ପ୍ରସଙ୍ଗାର୍ଥରେ ରସ ଏଥରେ ନୋହିଲ ଅତି ରଞ୍ଜନ ।
ଧର୍ମଜ୍ଞ ଧୀରେ ଯେନ ହେ ଧୀରେ ଦ୍ୱିଭଙ୍ଗୀ ଯମକ ସ୍ଥାନ । ୨୩ ।

---

୧୫ । ଆରତେ—ପୀଡ଼ାରେ, ଆର୍ତ୍ତିରେ । ୧୭—ଅନ୍ତର ଶବ୍ଦ—ମନର ଭେଦ ବୁଦ୍ଧି ।

୧୯ । ଦେଖାଦାନରେ—ଦେଖାହେବା ଦାନରୁ । ଭାବଧନରେ—ଭାବଭଙ୍ଗୀରୂପକ ଧନଦ୍ୱାରା ।

୨୦—ଚତୁରବର—ଚତୁର ଶ୍ରେଷ୍ଠ ଶ୍ରୀକୃଷ୍ଣଙ୍କର । ଆତୁର—ଉତ୍କଣ୍ଠା । ଅନ୍ତର ହେଲେ—ଗୁଳିଗଲେ ।

୨୧—ଆନନ୍ଦପୁଞ୍ଜେ—ଆନନ୍ଦସମୂହରେ । ୨୨—କରକ—ଗୋଟିଏ ହାତ ।

୨୩—ପ୍ରସଙ୍ଗାର୍ଥରେ—ମିଳନ ପ୍ରସଙ୍ଗ ବର୍ଣ୍ଣନରେ । ରଞ୍ଜନ—ମନୋହର । ଧର୍ମଜ୍ଞଧୀରେ—ତତ୍ତ୍ୱଜ୍ଞପଣ୍ଡିତମାନେ । ଧୀରେ—ବୁଦ୍ଧିରେ ।

## ବିଂଶତି ଛାନ୍ଦ

## କୃଷ୍ଣଙ୍କ ଚନ୍ଦ୍ରାବଳୀଙ୍କୁ ସ୍ତୁତି

ନପୁଂମ ଯମକ । ବାଣୀ-କଳଶା

ଧୀରେ ଧୀରେ ଧୀରେ ଦେନ ଏଥି ଦେଇ ଶ୍ରୁତି ।
ଧର ଧର ଧରଣୀଶୋଭିକ କହୁଛନ୍ତି ଯେ । ୧ ।
ଶତ ଶତ ଶତକୋଟି ଘାତ ଜାତ ଶର ।
ବାର ବାର ବାରଣଗମନା ମାରେ ମାର । ୨ ।
ଥର ଥର ଥରଇ ଥରକୁ ଥର ଅଙ୍ଗ ।
କର କରକରଦନା ମୋର ଦର ଭଙ୍ଗ । ୩ ।
ସୁର ସୁର ସୁରସଦା ଥିଲେ ସେ ନାହାନ୍ତି ।
ଭାବ ଭାବ ଭାବବତୀ ବନା କେ ମୋ ଗତି । ୪ ।
ଜୀବଞ୍ଜୀବ ଜୀବ ଦୁଃଖୀ ବିଚନ୍ଦ୍ରେ ଯେମନ୍ତ ।
ଜୀବ ଯିବ ଜୀବନଜନେତ୍ରାରେ ତେମନ୍ତ । ୫ ।

---

୧—ଧୀରେ—ଆହେ ପଣ୍ଡିତମାନେ । ଧୀରେ—ବୁଦ୍ଧିରେ । ଧୀରେ—ସ୍ଥିରଭାବେ । ଶ୍ରୁତି—କାନ । ଧରଧର—ଗୋବର୍ଦ୍ଧନ ପର୍ବତଧାରୀ କୃଷ୍ଣ । ଧରଣୀ-ଶୋଭି—ଭୂମଣ୍ଡନା ଚନ୍ଦ୍ରାବଳୀକୁ ।

୨—ବାରଣଗମନା—ହେ ଗଜଗମନା । ମାର—କନ୍ଦର୍ପ । ଶତଶତ—ଶଏ ଶଏ । ଶତକୋଟି ଘାତଜାତ ଶର—ବଜ୍ରପ୍ରହାର ପରି ପ୍ରହାର ଜାତ କରୁଥିବା କାଣ୍ଡମାନଙ୍କୁ । ବାରବାର—ବାରଂବାର ମାରୁଅଛି ।

୩—ଅଙ୍ଗ ଥରକୁ ଥର—ବାରମ୍ବାର, ଥରଥର ହୋଇ ଥରଇ । ହେ କରକରଦନା—ଡାଳିମ୍ବବୀଜ ପରି ଦାନ୍ତ ଯାହାର ସେ । ମୋର ଦରଭଙ୍ଗ—ଭୟନାଶ, କର ।

୪—ହେ ସୁରସଦା—ରତଦାୟିନୀ; ସୁର ସୁର—ମହାଦେବ, ଥିଲେ କନ୍ଦର୍ପ ସେ ନାହାନ୍ତି । ସେ ଥିଲେ କନ୍ଦର୍ପକୁ ପୋଡ଼ିଥାନ୍ତେ, କିନ୍ତୁ ଭାବବତୀ—ଅନୁରାଗିଣୀ ରମ୍ଭ ଭାବ-ପ୍ରୀତି, ବିନା ମୋର କିଏ ଗତି—ଆଶ୍ରୟ, ଅତ୍ର ଭାବ—ଭାବନାକର, କମ୍ଭା ଭାବ ଭାବ—ଭାବନା କର କର (ସମ୍ଭ୍ରମରେ) ।

୫—ଯେମନ୍ତ ବିଚନ୍ଦ୍ରେ—ଚନ୍ଦ୍ର ନ ଥିଲେ, ଜୀବଂଜୀବ—ଚକୋରର, ଜୀବ—ପ୍ରାଣ, ଦୁଃଖୀ ହୁଏ ତେମନ୍ତ ହେ ଜୀବନଜନେତ୍ରା—ପଦ୍ମନେତ୍ରା, ମୋର ପ୍ରାଣ ଯିବ । ଜୀବ—ଜଳ ।

ସର ସରସର ଆଶାସ୍ଥୀ ମୁଁ ମୀନବତ ।
ଘନ ଘନ ଘନରସଦାୟିନୀର ରତ । ୬ ।
ମନ ମନମନ ଧ୍ୱନି ଶ୍ରବଣେ ଇଚ୍ଛଇ ।
ଆନ ଆନ ଆନନେ ବନ୍ଧିଚ୍ଛୁ କାହିଁପାଇଁ । ୭ ।
କନ କନ କନକାଙ୍ଗୀ ମୃଗୀ ପରି ମୁହ ।
ଦର ଦର ଦରକଣ୍ଠି ଗୁଣକୁ ନ ବହ । ୮ ।
ଜରଜର ଜର ଅନ୍ତ ସ୍ୱେଦ ପରି ତନୁ ।
ଝର ଝର ଝରଇ ତ ଲୋତକ ନୟନୁଁ । ୯ ।
ତର ତର ତରଳାକ୍ଷୀ ହାସ ଦେଖିବାରେ ।
ବଧୂ ବନ୍ଧୁ ବଧୂଳୀଅଧରୀ କପା ମୋରେ । ୧୦ ।
ସାର ସାର ସାର ସାକ୍ଷିକୁଚ ଜାନୁ ଫଳ ।
ବନ୍ଧ ବନ୍ଧ ବନ୍ଧତେ ଦେଇଛୁ ଖେଳ ବୋଲ । ୧୧ ।

---

୬—ରୁ ସରସର ସର—ଜଳପୂର୍ଣ୍ଣ ପୁଷ୍କରଣୀ ପରି ରସର ପୁଷ୍କରଣୀ ଅଟୁ, ମୁଁ ମୀନବତ—ମାଛପରି, ଆଶାସ୍ଥୀ—ଆଶା କରିଅଛି । ଘନରସଦାୟିନୀର—ନିବିଡ଼ ରତିଦାୟିନୀ, ତୁମର ରତ—ସମ୍ଭୋଗ, ଘନ ଘନ—ସାନ୍ଦ୍ର ମେଘ, ହୋଇଅଛୁ କିମ୍ବା ଘନ ଘନ ସର୍ବଦା ରତରେ ଆଶାସ୍ଥୀ ।

୭—ମୋର ମନ ତୁମ୍ଭର ମନ ମନ ଧ୍ୱନି—ସୁରତ କାଳୀନ ଗଦଗଦ ଶବ୍ଦ, ଶ୍ରବଣେ—ଶୁଣିବାକୁ, ଇଚ୍ଛା କରିଅଛି । ଆନନେ—ମୁହଁରେ, ଆନଆନ—ଅନ୍ୟ ଅନ୍ୟ, କଥା କାହିଁପାଇଁ ବନ୍ଧିଅଛୁ ।

୮—ହେ କନକାଙ୍ଗୀ—ସୁନାଗୋରି, ମୃଗୀ ପରି କନ କନ—ଛନ ଛନ, ହୁଅ ନାହିଁ । ହେ ଦରକଣ୍ଠୀ—ଶଙ୍ଖରୂପ କଣ୍ଠ ଯାହାର, ଦର—ଅଳ୍ପ ଦର ଗୁଣକୁ—ଭୟକୁ, ବହ ନାହିଁ କିମ୍ବା ଦର ଦର ଗୁଣକୁ—ଅଳ୍ପ ଶଙ୍ଖ ଗୁଣକୁ ବହ ନାହିଁ । ଶଙ୍ଖ ଯେପରି ବାହାର ସଫା ଓ ଅନ୍ତରରେ କୁଟିଳ ସେପରି ଅନ୍ତରରେ ରଖ ନାହିଁ ।

୯—ମୋର ତନୁ—ଦେହ; ଜରଅନ୍ତ ସ୍ୱେଦ—ଜ୍ୱର ଶେଷ ଝାଳ, ପରି ଜର୍ଜର ହୋଇଅଛି ।

୧୦—ତରଳାକ୍ଷୀ—ଚଞ୍ଚଳନୟନା । ତୁମ୍ଭର ହସ ଦେଖିବାକୁ ମୁଁ ତର ତର—ଉତ୍ସୁକ ଅଛି । ବଧୂଳୀ—ଫୁଲପରି ଓଠ ଯାହାର, ହେ ବନ୍ଧୁ ମୋରେ—ମୋତେ, କପା ବଧୂ—ବଧ କରୁଅଛୁ ।

୧୧—ହେ ସାରସାକ୍ଷି—ପଦ୍ମନୟନା, ତୁମ୍ଭର କୁଚ—ସ୍ତନ, ସାର ସାର—ଉତ୍କୃଷ୍ଟ ପଣାସାର, ଏ ଜାନୁ—ଜଙ୍ଘ, ପଣାପାଳକୁ ବନ୍ଧ ବନ୍ଧତେ—ଉଚିତ ରୂପରେ, ଖେଳବୋଲ୍ ବନ୍ଧିଅଛୁ—କରିଅଛୁ ।

ଦାନ ଦାନ ଦାନଦକ୍ଷ ହୋଇ ସୁଖୀ ହୁଅ ।
ମାନ ମାନ ମାନଧପଣାକୁ ଫିଙ୍ଗି ଦିଅ । ୧୨ ।
ତାର ତାର ତାରପତିମୁଖ ଟେକ ମିତ ।
ଗର ଗର ଗରକଣ୍ଠପର କଲୁନ ତ । ୧୩ ।
ଆନ ଆନ ଆନନକୁ ନ ରସେ ମୋ ମନ ।
ହରି ହରି ହରିମନ ନେଉଛୁ ତୋ ମାନ । ୧୪ ।
ଶୁଚି ଶୁଚି ସୁଚୀରକୁ ଟେକ ଦାନ କର ।
ଚନ୍ଦ୍ରା ଚିତା ଚନ୍ଦ୍ରାମଣି ରସ ଢାଳି ହର । ୧୫ ।
ଯାର ଯାର ଜାରପ୍ରୀତି ତାର କି ଏ ରୀତି ।
ଅନା ଅନା ଅନାସ୍ଥତେ କମ୍ପୁଛି ମୋ ଗ୍ରୁତି ।୧୬।
ଭାଷ ଭାଷ ଭାଷଇଁ ନ ଭାସଇଁ ସୁମନା ।
ସରୁ ସରୁ-ସରୂପା-କୃପାରେ ମୋ ବେଦନା । ୧୭ ।

---

୧୨—ହେ ଦାନଦକ୍ଷ—ଦାନଶୀଳା, ତୁମ୍ଭେ ପଣା ଦାନ ପକାଇଲ ପରି ଦାନହୋଇ—ଦୟାହୋଇ, ସୁଖୀ ହୁଅ । ମୋ ବଚନ ମାନ; ମାନ ମାନଧ ପଣାକୁ—ମାନରୂପକ ପଣାକୁ (ଅଭିମାନ, ଫିଙ୍ଗିଦିଅ) । ଅଥବା ମାନ ମାନ—ମୋ କଥା ଘେନ ଘେନ ।

୧୩—ହେ ମିତ, ତାର—ଉଜ୍ଜ୍ୱଳ, ତାରପତିମୁଖ—ଚନ୍ଦ୍ରମୁହଁକୁ, ଟେକ ମୋତେ ତାର—ଉଦ୍ଧାର କର କିମ୍ବା ତାର ତାର—ଉଦ୍ଧାର କର କର । ଗରକଣ୍ଠ ପର—ଶିବଙ୍କ ଶତ୍ରୁ କାମ, ମୋତେ ଗରଗର କଲଣି, ଅସ୍ତବ୍ୟସ୍ତ ବା ଖଣ୍ଡ ଖଣ୍ଡ ।

୧୪—ଆନ—ଶୁଣ ଅଛୁ । ମୋ ମନ ଆନ ଆନନକୁ—ଅନ୍ୟ ମୁହଁକୁ, ରସୁ ନାହିଁ । ହେ ହରି ! (ନାସ୍ତିକେ) ତୋ ମାନ—ଅଭିମାନ, ହରି—ଶ୍ରୀକୃଷ୍ଣ ମୋର ମନକୁ ହରି ନେଉଅଛୁ କିମ୍ବା ହେ ହରି ନାସ୍ତିକେ ତୋହର ହରି—ଶୋଭା ।

୧୫—ସୁଚୀରକୁ—ହୀନ ବସନକୁ ବା ବଳମ୍ବକୁ ଗୁଡ଼ ଶୁଚି ଶୁଚି—ବିଶୁଦ୍ଧ ଶୃଙ୍ଗାର ରସକୁ, ଦିଅ ବା ହେ ଶୁଚି—ଶୁଦ୍ଧେ । ହେ ଚନ୍ଦ୍ରାମଣି—ବାଞ୍ଛିତଦାୟିନୀ, ରସ—ପ୍ରୀତିରୂପକ ଜଳ, ଢାଳି ମୋର ଚନ୍ଦ୍ରାରୂପକ ଚିତା—ଅଗ୍ନିକୁ ହରଣ କର ।

୧୬—ଜାରପ୍ରୀତି—ପରପୁରୁଷ ସହିତ ପ୍ରୀତି । ଅନାଅନା—ଚାହଁ ଚାହଁ ।

୧୭—ହେ ସୁମନା—ମନସ୍ୱିନି, ଭାଷ ଭାଷ—କଥା କୁହ, ଭାଷଇ—କହୁଅଛୁ, ଯେପରି ଆଉ ମୁଁ ଭାସି ନ ଯାଏ କିମ୍ବା ମୁଁ କହ କହ କହୁଅଛୁ, ହେ ସୁମନା, ତୁମ୍ଭେ ଭାଷୁ—କହୁ ନାହଁ । ହେ ସରୁସରୂପା—କୃଶାଙ୍ଗି, ତୋ କୃପାରେ—ଦୟାଦ୍ୱାରା, ମୋ ବେଦନା ସରୁ—ଯାଉ ।

ଊରୁ ଊରୁ ଊରୁବଶୀ ନସ୍ତ ପରିବନ୍ଧେ ।
ହୁଁ ହୁଁ ହୁଁ ହୁଁ ହୁଁ ହୁଁ ଗାନେ କରି ଅବରୋଧେ ।୧୮।
ରସ ରସ ରସନା ବଜାଇ ମୋତେ କିଣ ।
ବଳା ବଳା ବଳାରାତି ହେବ ଏହିକ୍ଷଣ । ୧୯ ।
ଧନ ଧନ ଧନ ପତି ସିଦ୍ଧି କେଉଁ ବର ।
ନାକ ନାକ ନାକଲ ଭଙ୍ଗୀରେ ହେବ ଚୂର । ୨୦ ।
ନାଗ ନାଗ ନାଗବନ୍ଧ ହେଲେ ଭଜିଯିବ ।
ମାନ ମାନ ମାନବର ଦେଖି କି ରହିବ । ୨୧ ।
ହାରେ ହାରେ ହାରେ ବନ୍ଧୁ ଛନ୍ଦଟି ପ୍ରୀତିରେ ।
ଭିନ୍ନ ଭିନ୍ନ ଭିନ୍ନକଳାକେଶି କରି କି ରେ । ୨୨ ।
ଧରାଧରା ଧରାପରା କହୁଁ ଏ ବିଧିରେ ।
ଗୁଣି ଗୁଣି ଗୁଣୀମଣି ଶୁଣି ଗୁହିଁ ଧୀରେ ।୨୩।

---

୧୮—ହେ ଊରୁ ଊରୁବଶୀ—ବଡ଼ ଊର୍ବଶୀ ! ପରିବନ୍ଧେ—ସୁରତ ବନ୍ଧରେ, ଊରୁ—ଜଙ୍ଘକୁ ନସ୍ତଅ । କିମ୍ବା ହେ ଉର୍ବଶୀ ! ଊରୁ—ବଡ ଊରୁକୁ··· ବା ଊରୁରେ ବସି··· । ଅବରୋଧେ—ବାହୁପାଶରେ ବନ୍ଧନ କରିଅ ।

୧୯—ରସ ରସ—ମୋଠାରେ ରତିକୁ ଆଦର କର । ରସନା—ଅଣ୍ଟାସୂତାକୁ, ବଜାଇ ବିପରୀତ ରତିରେ ମୋତେ କିଣ । ବଳାକୁ ରତିରେ ବଳା—ବଜାଅ । ବଳାରାତି—ଇନ୍ଦ୍ର ।

୨୦—ହେ ଧନ ! ଧନପତି ସିଦ୍ଧି—କୁବେର ଐଶ୍ୱର୍ଯ୍ୟ ବା ଧନପ୍ରାପ୍ତି କେଉଁ ବଡ଼ ? ନାକଲ ଭଙ୍ଗୀରେ—ସୁରତରେ ନାହିଁ କରିବା ଭଙ୍ଗିରେ, ନାକ ନାକ—ସ୍ୱର୍ଗସୁଖ, ଚୂର୍ଣ୍ଣ ହେବ କିମ୍ବା ନାକର—ନାସିକାର, "ନା" କଲ ଭଙ୍ଗିରେ ସ୍ୱର୍ଗ—ନାକ, ଚୂର୍ଣ୍ଣ ହେବ ।

୨୧—ନାଗ—ରତିରେ ଲଗ, ନାଗବନ୍ଧ—ରତିବନ୍ଧ, ବିଶେଷ ହେଲେ ନାଗ—ସର୍ପମଧ୍ୟ, ଭଜିଯିବ—ହାରିଯିବ । ମାନ—ଘେନ । ଦେଖି—ମାନବର ମାନ—ମନୁଷ୍ୟର ଗର୍ବ, ରହିବ କି ?

୨୨—ହାରେ ବନ୍ଧୁ ! (ଆହାରେ ବନ୍ଧୁ) ସୁଖୋକ୍ତି, ହାରେ—ମାଳାକୁ, ହାରେ—ମାଳାରେ, ଛନ୍ଦ କରି ହେ ଭିନ୍ନକଳାକେଶି—ଦଳିତାଞ୍ଜନ କେଶି ! ଭିନ୍ନ ଭିନ୍ନ କରି କି—ପୃଥକ୍ ପୃଥକ୍ ହେବା ଉଚିତ କି ?

୨୩—ଧରାଧରା—ବରାହ ଅବତାରେ ପୃଥ୍ୱୀଧାରୀ କୃଷ୍ଣ, ଧରା—ଅଧୀନ, ପରି ଏପରି କହିବାରୁ ଗୁଣମଣି—ଚନ୍ଦ୍ରାବଳୀ, ଶୁଣି ଗୁଣି ଗୁଣି—ଭାବି ଭାବି, ଧୀରେ, ଅଳ୍ପ, ଗୃହିଁଲେ କିମ୍ବା ଧୀରେ—ବୁଦ୍ଧିରେ, ଗୁଣି ପୁଣି····· ।

ହର ହର ହରପଦ-ଦ୍ୱନ୍ଦ୍ୱ ହୃଦେ ଚିନ୍ତ ।
ଧନ ଧନ ଧାନ ଅଭିମନ୍ୟୁ ନେଇ ନିତ । ୨୪ ।

---

## ଏକବିଂଶ ଛାନ୍ଦ

## ଚନ୍ଦ୍ରାବଳୀ ସମ୍ଭୋଗ

ମପୂର୍ବାନୁପ୍ରାସ । ବାଣୀ—ମୁନିବର

**ମା**ଧବ ସମ୍ଭୋଗ ରସ । ମହତ ମାନସ ହଂସ ।
ମଜ୍ଜନେ ହୋଇବ ତୋଷ । ମ ଅନୁପ୍ରାସ ଯେ । ୧ ।
ମୁରଲୀଧର ବଚନେ । ମଦାଳସୀ ତୋଷମନେ ।
ମନ୍ଦହାସ ପରକାଶେ । ମଦନାବେଶେ ଯେ । ୨ ।
ମୋହନବରଯେ ତା ଜାଣି । ମରି ବନ୍ଧୁ ଛନ୍ନେ ଭଣି ।
ମଣ୍ଡିଲେ ଗଣ୍ଡେ ଚୁମ୍ବନ । ମତ ପ୍ରସନ୍ନ ଯେ । ୩ ।
ମଦକଳା ନିଜ ବନ୍ଧୁ । ମଥା ପୋତ ଊର୍ଦ୍ଧ୍ୱ କନ୍ଧୁ ।
ମଧୁପର କରେ ନୀବ । ମୋକ୍ଷଣ ଭାବ ଯେ । ୪ ।

---

୨୪—ଧାନ—ଗରବ । ଅଭିମନ୍ୟୁ ହର—ଇନ୍ଦ୍ରାଦି ଦେବତାମାନଙ୍କ, ହର—ରୁଦ୍ର, ହର ପଦଦ୍ୱନ୍ଦ୍ୱ—ଶ୍ରୀକୃଷ୍ଣଙ୍କ ପାଦ ଯୁଗଳକୁ, ଚିନ୍ତା କରି ନିତ ଧନ ଧନ ନେଇ—କାଳ କଟାଇ କିମ୍ବା ହର—କୃଷ୍ଣ, ହର ନାୟିକା ଏ ଦୁହିଙ୍କର ହରପଦ—ପାଦପଦ୍ମ, ଅଥବା ହର ହର—ସମାପ୍ତି ସୂଚକ ଆନନ୍ଦ ଶବ୍ଦ, ଆନନ୍ଦରେ ଲୋକେ ହର ହର ଶିବ ଶିବ କହିଥାନ୍ତି ।

---

୧—ମାଧବଙ୍କର ସମ୍ଭୋଗ ବର୍ଣ୍ଣନରୂପକ ରସ—ଜଳରେ ମହତ୍ ଲୋକ-ମାନଙ୍କର ମାନସ ହଂସ—ମନରୂପକ ମତ୍ସ୍ୟ, ମଜ୍ଜିଲେ ସନ୍ତୁଷ୍ଟ ହେବ । ମକାର ଅନୁପ୍ରାସରେ ଏ ଛାନ୍ଦ ରଚିତ ।

୨—ମଦନାବେଶେ—କନ୍ଦର୍ପରେ ଘାରି ହୋଇ । ପରକାଶେ—ପ୍ରକାଶ କଲା ।

୩—ମୋହନ ବରଯେ—ମୋହନ ଶ୍ରେଷ୍ଠ, ଶ୍ରୀକୃଷ୍ଣ । ମରି—ଆନନ୍ଦସୂଚକ ଅବ୍ୟୟ । ଛନ୍ନେ—ଉଦ୍‌ବେଗରେ । ଭଣି—କହି ।

୪—ମଦକଳା—ମଦୋତ୍କଟା ଶ୍ରୀ ଚନ୍ଦ୍ରାବଳୀ । ମଧୁପର—ମଧୁ-ଦୈତ୍ୟର, ପର—ଶତ୍ରୁ, ଶ୍ରୀକୃଷ୍ଣ । କରେ—ହସ୍ତରେ । ନୀବ—ଖୋସଣୀ । ମୋକ୍ଷଣ—ଫିଟାଇବା । ଭାବ—ବଗ୍ଭରଲେ ।

ମନ୍ଦାକ୍ଷେ ବାରଇ ବାଳୀ । ମୃଣାଳ ସୂତ୍ରେ ସମ୍ଭାଳି ।
 ମଦୋତ୍କଟ ଦନ୍ତୀ ନୋହେ । ମିଥ୍ୟା ଆଗ୍ରହେ ଯେ । ୫ ।
ମୁକ୍ତ କରି ଚିର ହରି । ମର୍ଦ୍ଦନ ଉରଜ କରି ।
 ମତ୍ତେ ବନ୍ଧ ଆରମ୍ଭିଲେ । ମନୋଜ ବଳେ ଯେ । ୬ ।
ମଞ୍ଜୁଳା ଅଛି ଅଥୟେ । ମୁଦେ ନୟନ ବ୍ରୀଡ଼ାୟେ ।
 ମନାସେ ବହ୍ନି କି କଲା । ମହତ୍ତ୍ୱ ଗଲା ଯେ । ୭ ।
ମନୋରମା ତ୍ରପା ହେଜି । ମୃଗାଙ୍କକୁ ଖୋଜି ଖୋଜି ।
 ମାର ମିତ୍ରବାଦେ ଭୂକ୍ଷେ । ମନ ସରସେ ଯେ । ୮ ।
ମଞ୍ଜୁଳା-ଶ୍ରବଣ-ବିଳେ । ମିଶାଇ ରସନା ଗୁଳେ ।
 ମତ୍ତଭେଳେ ମଦାଳସୀ । ମଦନେ ରସି ଯେ । ୯ ।
ମନ୍ଦାକ୍ଷ ଛୁଟିଲା ମନୁ । ମୋହ ପରାୟେ ସୁତନୁ ।
 ମାର ମୂର୍ଚ୍ଛା ଶାନ୍ତ ମତ । ମୋହନ କୃତ ଯେ । ୧୦ ।

---

୫—ମନ୍ଦାକ୍ଷେ—ଲାଜରେ । ବାଳୀ—ବାଳା, ଚନ୍ଦ୍ରାବଳୀ । ମୃଣାଳ-ସୂତ୍ରେ—ପଦ୍ମନାଡ଼ ମଧ୍ୟ ସୂତାରେ । ମଦୋତ୍କଟଦନ୍ତୀ—ମତ୍ତହସ୍ତୀ, ସମ୍ଭାଳି ନୋହେ । ମିଥ୍ୟା ଆଗ୍ରହେ—ମିଛ ଆଗ୍ରହଦ୍ୱାରା । ଆଗ୍ରହ—ଚେଷ୍ଟା । ମିଥ୍ୟା—ନିଷ୍ଫଳ ।

୬—ମୁକ୍ତ କରି—ଫିଟାଇ । ଚୀର—ବସ୍ତ୍ର । ଉରଜ—ସ୍ତନ । ମତ୍ତେ—ଉନ୍ମତ୍ତ ହୋଇ । ବନ୍ଧ—ରତି ବିଶେଷ । ମନୋଜବଳେ—କନ୍ଦର୍ପ ପ୍ରଭାବରେ ।

୭—ମଞ୍ଜୁଳା—ସ୍ତ୍ରୀ ଚନ୍ଦ୍ରାବଳୀ । ମୁଦେ—ବୁଜିଲା । ବ୍ରୀଡ଼ାୟେ—ଲାଜରେ । ମନାସେ—ବିଗୁର କଲା ।

୮ । ମନୋରମା—ସୁନ୍ଦରୀ ଚନ୍ଦ୍ରାବଳୀ । ତ୍ରପା—ଲଜ୍ଜାକୁ । ହେଜି—ଜାଣିପାରି । ମୃଗାଙ୍କ—ଶରୀରସ୍ଥ ଚନ୍ଦ୍ର । ମାରମିତ୍ରବାଦେ—କନ୍ଦର୍ପର ମିତ୍ର ବୋଲି ବିବାଦରେ । ଭୂକ୍ଷେ—ନଖଦ୍ୱାରା କ୍ଷତ କଲା । ତିଥି ବିଶେଷରେ ପୁରୁଷର ବିଭିନ୍ନ ଅଙ୍ଗରେ ଚନ୍ଦ୍ର ଥାଏ ଏବଂ ସେହିପରି ସ୍ତ୍ରୀର ବିଭିନ୍ନ ଅଙ୍ଗରେ ଚନ୍ଦ୍ରକଳା ଥାଏ । ରତିଜ୍ଞ ପୁରୁଷ ଓ ସ୍ତ୍ରୀ, ସ୍ତ୍ରୀ ଓ ପୁରୁଷର ସେହି ସେହି ଅଙ୍ଗମାନଙ୍କରେ ନଖାଦି କ୍ଷତ କରି କଳା ଓ ଚନ୍ଦ୍ର ଚାଳନ କରନ୍ତି ।

୯ – ମଞ୍ଜୁଳା-ଶ୍ରବଣ-ବିଳେ—ଚନ୍ଦ୍ରାବଳୀର କର୍ଣ୍ଣରନ୍ଧ୍ରରେ । ରସନା—ଜିହ୍ୱା । ମଦନେ ରସି—କନ୍ଦର୍ପ ପୀଡ଼ାରେ ଆସକ୍ତ ହେଲେ ।

୧୦—ସୁତନୁ—ସୁନ୍ଦରୀଚନ୍ଦ୍ରାବଳୀ । ମାରମୂର୍ଚ୍ଛା ଶାନ୍ତମତ—କନ୍ଦର୍ପଜନିତ ମୋହ ଛାଡ଼ିବା ରୀତି । ମୋହନକୃତ—ଶ୍ରୀକୃଷ୍ଣ କଲେ ।

ମିଳାଇ ଜଙ୍ଘା ଚଟୂକେ । ମର୍ଦ୍ଦି ନିତମ୍ବ କରକେ ।
　ମୁଖବାୟୁ ଶ୍ରୁତିବଳେ । ମଧୁରେ ଦେଲେ ସେ ୍‌ । ୧୧ ।
ମୁଷ୍ଟିକ ଜଙ୍ଘେ ଫେରାଣ । ମୂର୍ଦ୍ଧାଘ୍ରାଣ ଚୁମ୍ବ ଗୁଣ ।
　ମୃଗାଙ୍କକୁ ଅସ୍ତେ କଲେ । ମୃଗାଙ୍କ ଛଳେ ସେ । ୧୨ ।
ମାତ ନାନାବନ୍ଧମତେ । ମଜ୍ଜିଲେ ଆନନ୍ଦ ମତ୍ତେ ।
　ମନ୍ମଥ ଶବଦ ଜାତ । ମନ୍ଦ ହୁଁ କୃତ ସେ । ୧୩ ।
ମିଶି ସୀତ୍କାର ବକାର । ମିଥ୍ୟା ନାନା ଅନବାର ।
　ମର୍ଷଣେ କେଳିତପତ । ମୁଦ ଦମ୍ପତି ସେ । ୧୪ ।
ମନ୍ଦାକ୍ଷ ବସନ ସଙ୍ଗେ । ମିଳିଲା ରମାଶ୍ରୀଅଙ୍ଗେ ।
　ମଥା କର ବାଳୀ ନତ । ମଉନବ୍ରତ ସେ । ୧୫ ।
ମୋହନା ରତାନ୍ତ-ଭାତ । ମଣିଲାଇଁ ଗ୍ରୀଷ୍ମଗତ ।
　ମିହ କର ଜ୍ୱଳା ଅନ୍ତ । ମରୁତେ ମତ ସେ । ୧୬ ।

---

୧୧—ଚଟୂକେ—ସ୍ତନ ଅଗ୍ରରେ । ନିତମ୍ବ—ପିଚ୍ଛକୁ । କରକେ—ଏକ ହସ୍ତରେ । ମୁଖବାୟୁ—ଫୁଙ୍କା । ଶ୍ରୁତିବଳେ—କର୍ଣ୍ଣ ରନ୍ଧ୍ରରେ ।

୧୨—ମୁଷ୍ଟିକ—ମୁଠାକୁ । ଫେରାଣ—ପକାଇବ । ମୂର୍ଦ୍ଧାଘ୍ରାଣ—ମୁଣ୍ଡକୁ ଶୁଙ୍ଘିବା । ମୃଗାଙ୍କକୁ—ଶରୀରସ୍ଥ ଚନ୍ଦ୍ରକୁ । ମୃଗାଙ୍କ ଛଳେ—ଚନ୍ଦ୍ର ଛଳନାରେ । ବିରହରେ ଚନ୍ଦ୍ର ବାଧା ଦେଉଥିଲା, ବର୍ତ୍ତମାନ ଚନ୍ଦ୍ରାବଳୀଙ୍କ ସୁରତ ମୋହ ନିବାରଣ କରିବାକୁ ସ୍ୱଳିତ ଶରୀରସ୍ଥ ଚନ୍ଦ୍ରକୁ ଅସ୍ତ କରିବାଦ୍ୱାରା ବାଧକଚନ୍ଦ୍ରକୁ ଅଧୀନ କଲେ କି ?

୧୩—ନାନାବନ୍ଧମତେ—ବହୁ ପ୍ରକାର ବନ୍ଧନମରେ । ମତ୍ତେ—ଉନ୍ମତ୍ତ-ଭାବେ । ମନ୍ଦ 'ହୁଁ' କୃତ ମନ୍ମଥ ଶବ୍ଦ—କନ୍ଦର୍ପ କ୍ରୀଡ଼ା ଧ୍ୱନି ଜାତ ହେଲା । ତାହା କନ୍ଦର୍ପର ସ୍ୱୀକାର ସୂଚକ ହୁଁ କଲପରି ହେଲା ।

୧୪—ସୀତ୍କାର ବକାର—'ଈଷି ପ୍ରଭୃତି ବକାର । ଅନବାର—ଅନବାରିତ ବହୁତ ଅର୍ଥାତ୍ "ନା ନା"—"ନାହିଁ ନାହିଁ" ଶବ୍ଦ ମିଥ୍ୟା ହେଲା । ମର୍ଷଣେ—ପରାଜୟରେ । କେଳିତପତି – କନ୍ଦର୍ପ । ମୁଦ—ଆନନ୍ଦିତ ହେଲେ ।

୧୫—ମନ୍ଦାକ୍ଷ—ଲଜ୍ଜା । ବସନସଙ୍ଗେ—ବସ୍ତ୍ର ସହିତରେ । ରମା—ସ୍ତ୍ରୀ, ଚନ୍ଦ୍ରାବଳୀର । ଚନ୍ଦ୍ରାବଳୀ ଲଜରେ ଲୁଗା ପିନ୍ଧିଲେ । ସହୋକ୍ତି ଅଲଙ୍କାର । ନତକର—ଲୁଆଇଁ । ମଉନବ୍ରତ—ତୁନି ହେଲେ ।

୧୬—ମୋହନା—ମୋହକାରଣୀ ଚନ୍ଦ୍ରାବଳୀର । ରତାନ୍ତଭାତ—ରତି ଶେଷରେ ଶୋଭା । ଗ୍ରୀଷ୍ମଗତ—ଗ୍ରୀଷ୍ମକାଳର ଅବସ୍ଥା ପରି । ମିହକର ଜ୍ୱାଳା—ସୂର୍ଯ୍ୟକିରଣ ଦୀପ୍ତି । ଗ୍ରୀଷ୍ମରେ ଓ ମିତ୍ର ଶ୍ରୀକୃଷ୍ଣଙ୍କ ହସ୍ତର ନଖକ୍ଷତ ପୀଡ଼ା ରତାନ୍ତରେ । ମରୁତେ—ବାୟୁରେ । ମତ—ମନ, ଦୁଇଥିରେ ସମାନ ।

'ମଲ୍ଲ' ମୁଖେ ବିକଶିତ । ମହାସ୍ୱେଦରେ ରଞ୍ଜିତ ।
ମୋକ୍ଷ ହେଲେ ପତ୍ରାବଳୀ । ମିଥୁନ ସଙ୍ଖ ଯେ । ୧୭ ।
ମହତ୍ତ୍ୱ ଗଣ୍ଡ ଖଣ୍ଡନ । ମଣ୍ଡିବା ଗୃହମଧ୍ୟ ମନ ।
ମର୍ଯ୍ୟାଦା ଏପରି ଦେଖି । ମାଧବ ଦୁଃଖୀ ଯେ । ୧୮ ।
ମରି ବନ୍ଧୁ କହ୍ନ କରି । ମୁଖ ଚୁମ୍ବି କୋଳେ ଧରି ।
ମଧୁକାଳ କଲେ ବେଶେ । ମହା ଉଲ୍ଲାସେ ଯେ । ୧୯ ।
ମରମ ପରମ ପ୍ରୀତି । ମୂଳ କରି ସେ ଦମ୍ପତି ।
ମଲ୍ଲମାତେ ଭୟ କଲେ । ମେଳାଣି ହେଲେ ଯେ । ୨୦ ।
ମଲ୍ଲ ନଗରେ ମିଳିଲେ । ମିଥ୍ୟାରେ ସଖା ବୋଇଲେ ।
ମାତା ତୁମ୍ଭ ବଧୂ ଆଜ । ମହା ନିରୁଜ ଯେ । ୨୧ ।
ମହାମାୟା ଦୟା ହେଲା । ମଦକଳା ବ୍ୟାଧି ଗଲା ।
ମଲ୍ଲମାତା ଶୁଣି ତୋଷ । ମନେ ବିଶେଷ ଯେ । ୨୨ ।

---

୧୭ ରତାନ୍ତରେ "ମଲ୍ଲ" । ଏହି ଶବ୍ଦ ମୁଖରେ ବିକଶିତ—ପ୍ରକାଶିତ ହେଲା । ଗ୍ରୀଷ୍ମର ଆଦ୍ୟରେ ମଲ୍ଲୀଫୁଲ ମୁଖେ—ପ୍ରଥମେ, ପ୍ରସ୍ଫୁଟିତ ହୁଏ । ମହାସ୍ୱେଦରେ—ଅଧିକ ଝାଳରେ । ରଞ୍ଜିତ—ବ୍ୟାପ୍ତ । ଦୁଇଥିରେ ସମାନ । ଗ୍ରୀଷ୍ମରେ ପତ୍ରାବଳୀ—ପତ୍ର ସବୁ, ନାନା ସ୍ଥାନରେ ଚନ୍ଦନଛିଟା, ମକରିକା ପ୍ରଭୃତି । ମୋକ୍ଷ ହେଲେ—ଝଡ଼ି ପଡ଼ିଲେ । ମିଥୁନ—ସ୍ତ୍ରୀ ପୁରୁଷ ଯୋଗ । ସଙ୍ଖ—ଶଙ୍କ—ଶଙ୍କା, ଅଥବା ମିଥୁନ ମାସ ଶଙ୍କ ହୁଏ । ରତାନ୍ତରେ ପତ୍ରାବଳୀ—ସ୍ତନାଦିରେ ଚିତ୍ର ରଚନା । ମୋକ୍ଷ ହେଲେ—ଲିଭିଗଲେ । ମିଥୁନ—ସ୍ତ୍ରୀ ପୁରୁଷ ମିଳନର, ସଙ୍ଖ—ଶଙ୍କ ହେଲା ।

୧୮—ଗ୍ରୀଷ୍ମରେ ଗଣ୍ଡଖଣ୍ଡନ—ଗଭୀର ଜଳର ହ୍ରାସ; ମହତ୍ତ୍ୱ—ଆଧିକ୍ୟ ବା ଗଣ୍ଡର ମହତ୍ତ୍ୱ ଖଣ୍ଡନ—ଜଳର ଗଭୀରତା ହାନି । ଗୃହମଧ୍ୟ ମନ ମଣ୍ଡିବା—ମନ ତୋଷ କରେ । ରତାନ୍ତରେ ଗଣ୍ଡଖଣ୍ଡନ—ଗାଲରେ ଦନ୍ତକ୍ଷତର ମହତ୍ତ୍ୱ—ଆଧିକ୍ୟ ହେଲା ବା ଗଣ୍ଡର ମହତ୍ତ୍ୱ—ଶୋଭା ଖଣ୍ଡନ କି ନଷ୍ଟ ହେଲା । ଗୃହମଧ୍ୟକୁ—ଜଳ ଘରକୁ, ମଣ୍ଡିବା—ଜଳଦ୍ୱାରା ଶୋଭିତ କରିବାକୁ । ଅର୍ଥାତ୍ ସେଠାରେ ବିଶ୍ରାମ କରିବାକୁ ମନ ହେଲା । ମାଧବ—ଶ୍ରୀକୃଷ୍ଣ, ଏପରି ମର୍ଯ୍ୟାଦା—ଅବସ୍ଥା ଦେଖି ଦୁଃଖିତ ହେଲେ ।

୧୯—ମଧୁକାଳ—ବସନ୍ତ ଅର୍ଥାତ୍ ଶୋଭିତ । ବେଶେ—ବେଶ କରିବା ଦ୍ୱାରା । ମହାଉଲ୍ଲାସେ—ଅତି ହର୍ଷରେ ।

୨୦—ମରମ ପରମପ୍ରୀତି—ଅନ୍ତଃକରଣର ଗାଢ଼ ଅନୁରାଗକୁ । ମୂଳ—ସ୍ଥିର, ନିଶ୍ଚୟ । ମଲ୍ଲମାତେ – ଗୋବର୍ଦ୍ଧନମଲ୍ଲର ମାତାଙ୍କୁ ( ନାମ—ଭାରୁଣ୍ଡା ) ।

୨୧—ବଧୂ—ବୋହୂ । ମହାନିରୁଜ—ଉତ୍ତମ ଭାବରେ ରୋଗଶୂନ୍ୟ ।

ମୁଁ ନିଷେଧ ନ କରିବି । ମୂଳ କର ପୂଜୁ ଦେବୀ ।
ମଲ୍ଲମାତା ଆଜ୍ଞା ଦେଲେ । ମିତଣୀଜାଳେ ଯେ । ୨୩ ।
ମନଘେନା କର ଚନ୍ଦ୍ରି । ମଦନା ସଜମା କହି ।
ମିଥ୍ୟା ଅପବାଦ ପାଇଁ । ମୁହିଁ ଡରଇଁ ଗୋ । ୨୪ ।
ମହାଶୋଭୀ ତୁମ୍ଭ ବଧୂ । ମାଧୂର୍ଯ୍ୟେ ସୁରସସିନ୍ଧୁ ।
ମଧୁସୂଦନ ଚଞ୍ଚଳ । ମହାପ୍ରବଳ ଗୋ । ୨୫ ।
ମଲ୍ଲ ସାନ ଭାଇ ଯେଣୁ । ମାନମୀ ଦେବର ତେଣୁ ।
ମିଳିବେ କାଳେ ସେ ବନେ । ମାୟାଶ୍ରି ମନେ ଯେ । ୨୬ ।
ମଲ୍ଲମାତା ବାକ୍ୟଦତ୍ତ । ମୋ ବଧୂ ଦେବର ସତ ।
ମୋ ଖାତି ଇଙ୍ଗିତେ ନାହିଁ । ମୁକୁନ୍ଦ ଚନ୍ଦ୍ରି ଗୋ । ୨୭ ।
ମନେ ମନେ ଆନ ଖାତ । ମାନ ଜଗିଥିବ ନିତ ।
ମଣିଲେ କିଛି ତା ଦ୍ରୋହ । ମୋ ଆଗେ କହ ଗୋ । ୨୮ ।
ମହତ୍ତ୍ୱ ସାରିବ ତାର । ମଧ୍ୟମ କଲେ ଆଗ୍ଭର ।
ମିତେ ଏତେକ ଶୁଣିଲେ । ମୂଢ ହୋଇଲେ ଯେ । ୨୯ ।
ମିଳନ ସେ ହେନୁ ନିତ । ମହୋତ୍ସବରେ କରାନ୍ତ ।
ମହାମାୟା ପୂଜାଛଳେ । ମନ ପ୍ରବଳେ ଯେ । ୩୦ ।
ମୁରଳଡଭିଭଙ୍ଗୀୟା । ମୁରଲୀମୁଖ ରଙ୍ଗୀୟା ।
ମଧୁମଙ୍ଗଳସଙ୍ଗୀୟା । ମାନଭଙ୍ଗୀୟା ଯେ । ୩୧ ।

---

୨୨—ମହାମାୟା—ଗୌରୀ, ଅମ୍ବିକା । ମଦକଳା—ମଦୋତ୍କଣ୍ଠା ଚନ୍ଦ୍ରାବଳୀ । ବ୍ୟାଧି—ରୋଗ ।

୨୩—ମୂଳକର—ଏକାନ୍ତ ଭାବରେ, ନିଷ୍ଠାରେ । ମିତଣୀ ଜାଳେ—ସଖୀସମୂହଙ୍କୁ ।

୨୪—ମଦନା—ଜଣେ ସଖୀ ।

୨୫—ମହାଶୋଭା—ସୁନ୍ଦରୀ । ମାଧୂର୍ଯ୍ୟେ—ମନୋହରତାରେ । ସୁରସସିନ୍ଧୁ—ରସସାଗର ସ୍ୱରୂପା । ମଧୁସୂଦନ—ଶ୍ରୀକୃଷ୍ଣ । ମହାପ୍ରବଳ—ବଡ଼ ବଳୁଆ ।

୨୬—ମଲ୍ଲ—ଗୋବର୍ଦ୍ଧନ ମଲ୍ଲ । ମାନମୀ—ମାନବତୀ ଚନ୍ଦ୍ରାବଳୀର । ମାୟାରେ ମୋ ମନରେ ଭୟ । ପାଠାନ୍ତରେ, ମୋର ମନରେ ଖା—ଭୟ ହେଉଅଛି ।

୨୭—ଇଙ୍ଗିତେ—ପରିହାସ କରିବାରେ । ମୁକୁନ୍ଦ—ଶ୍ରୀକୃଷ୍ଣ ।

୨୮—ଆନ ଖାତ—ଅନ୍ୟ ମନ୍ଦ ଆଚରଣ । ଦ୍ରୋହ—ଅନିଷ୍ଟ ।

୨୯—ମଧ୍ୟମ—ଗୁହ୍ୟକଥା । ଆଗ୍ଭର—ଆଚରଣ ।

୩୦—ମହୋତ୍ସବରେ—ଅତି ଉତ୍ସବରେ ।

ମନମଥ-ମୋହନାସ୍ପ । ମହାସୁଖ-ସଦନାସ୍ପ ।
ମରକତ-ପିତ୍ତୁଳୀସ୍ପ । ମିଳ-ମେଳୀସ୍ପ ସ୍ପେ । ୩୨ ।
ମୟୂରଚୂଳୀସ୍ପ ଭବ । ମନେ ଅଭିମନ୍ୟୁ କବ ।
ମହାନନ୍ଦ ସଦା ହନ । ମହାନ୍ତେ ଘେନ ସ୍ପେ । ୩୩ ।

---

## ଦ୍ୱାବିଂଶ ଛାନ୍ଦ

## ପ୍ରାନ୍ତାନୁପ୍ରାସ

ରାଗ— ଆନନ୍ଦ । ଗୃରୁଲବଙ୍ଗଲତା ବାଣୀ ।

**ଧୀ**ରେ ଶୁଣ କୃଷ୍ଣରସ ବାଣୀକ । ସ୍ୱାଦୁ ସମନାରେ ସୁଧା ଆଣୀକ ।
ସୁମରି, ରାଧାଗୁଣଶ୍ରେଣୀକ । କୃଷ୍ଣ ନ ପାରନ୍ତି ରଖି ଆଣୀକ । ୧ ।
ଲଭିଲେ ବରଜ ନବବାଳୀଙ୍କି । ସୁଖେ ଭୋଗ କଲେ ଚନ୍ଦ୍ରାବଳୀଙ୍କି ।
ତେବେହେଁ, ନିତ ବନମାଳୀଙ୍କି । କାମ ଦେଲ ଚିନ୍ତା ଜପାମାଳକ । ୨ ।
ଦେଖିବାରୁ କୃଷ୍ଣ ଦୁଖରଣିକ । ଚିନ୍ତା ପ୍ରାପ୍ତ ହେଲ ପୂର୍ଣ୍ଣମାସୀଙ୍କି ।
କହନ୍ତି, ହସି ଗିରିଧାରୀଙ୍କି । କହୋ ନାଗରେନ୍ଦ୍ର ଏ ଗୃହ୍ଣା କ । ୩ ।
କୋଟି-କାମ ଶୋଭା ଊଣା ଯହିଁକ । ସେ ତନୁ ମଳିନ ହଣେ କାହିଁକ ?
ନନ୍ଦଇ, ମୁଖ କଳାନିଧିକ । କପାଁ ଭଜନ୍ତି ବିରସବଧିକ । ୪ ।
ହୋଇ ଅଛଇ ଅତନୁବ୍ୟାଧି କ । ଦେଲ ମନ କଉଁ ରସନିଧିକ ।
ନ କହ, ମୋତେ କାହିଁ ପାଇଁକ । ଦେବା ଔଷଧ ମଦନ ବାଇକ । ୫ ।

---

୩୧—ମୁରଜିତ—ଶ୍ରୀକୃଷ୍ଣ । ମାନଭଙ୍ଗୀଆ—ମାନଭଞ୍ଜନକାରୀ ।

୩୨—ମନମଥମୋହନାସ୍ପ— ମଦନମୋହନ । ମହାସୁଖସଦନାଆ— ପରମସୁଖ ସ୍ଥାନ । ମରକତପିତୁଳୀସ୍ପ—ନୀଳମଣିର ପିତୁଳା ପରି ସୁନ୍ଦର ।

୩୩—ମହାନ୍ତେ—ମହାପୁରୁଷମାନେ ।

---

୧—କୃଷ୍ଣରସବାଣୀକ—ଶ୍ରୀକୃଷ୍ଣରସପୂର୍ଣ୍ଣ ବଚନକୁ । ସୁଧା—ଅମୃତ । ଆଣି—ଟେକ ବା ତୁଳନା ପାଇଁ ଅଣାଯାଏ କି ? ଆଣୀକ—ଧୈର୍ଯ୍ୟକୁ । ୨—କାମ—କନ୍ଦର୍ପ ।

୪—କୋଟିକାମଶୋଭା—ଅସଂଖ୍ୟ କନ୍ଦର୍ପ ସୌନ୍ଦର୍ଯ୍ୟ । ତନୁ—ଦେହ । କଳାନିଧିକ—ଚନ୍ଦ୍ରକୁ । ବିରସବଧିକ—ଦୁଃଖିତ ପ୍ରକାରକୁ ।

୫—ଅତନୁବ୍ୟାଧି—କନ୍ଦର୍ପପୀଡ଼ା । ରସନିଧିକ—ରସବନ୍ତଙ୍କ । ମଦନ-ବାଇକ—କନ୍ଦର୍ପରୂପ ବାୟୁ ପୀଡ଼ା ।

ଦେଖି ତବ ମୁଖ ତୁଚ୍ଛ ନାରୀ କ । ରମା ଲୋଭେ ଛାଡ଼ିଦେବେ ହରିଙ୍କି ।
ଧରିବ, ଆଉ କେବା ଧୃତିକ । ଧନ୍ୟ ଯେ ମୋହିଲ ତୁମ୍ଭ ମଣ୍ଡକ । ୬ ।
ଇଚ୍ଛା ଏ ସ୍ଥିର ବ୍ରଜରମଣୀକ । ଦେଖି ମୁଖ ଧରିଛୁ କେ ଆଣିକ ।
ନାହିଁ ସେ, ତୁମ୍ଭ ନାମ ଶୁଣି କ । କା ଦମ୍ଭ ବଳଛୁ ପବି-ଅଣିକ । ୭ ।
ଧନ୍ୟ କହିବା ନା ସେ ଛଇଲୀକ । ହେଲ ମୋହନ ମାହିବା ଭଳକ ।
ବୋଲ ହୋ, ତତ୍ତ୍ୱ ଦେଲ କାହିଁକ । ଜାଣିଲେ କହିବା ବୁଦ୍ଧି ତହିଁକ । ୮ ।
ଦେବ ଶିକ୍ଷା ମନ୍ତ୍ର ତନ୍ତ୍ର ବଧିକ । ଆକରଷିବ ଦେବବାମାଧୀକ ।
ଅଙ୍ଗନା, ବାମ-ପାଦ-ଧୂଳିକ । ମନ୍ତ୍ରି ମଣ୍ତ୍ରିବ ନିଜ ମଉଳିକ । ୯ ।
ନିବୀଜ ରତ ପ୍ରୀରତ ଧୃତିକେ । କୁସୁମବାଣାୟ ନମୋ ଏତକେ ।
ଏ ଧୂଳି, ମନ୍ତ୍ରରାଜ୍ୟଭେଳକ । ମୋହି ନୋହିବ ଅବଳା ବଳ କ । ୧୦ ।
କାମବୀଜ ନାରୀ ନାମ ଯେତକ । ବଶ୍ୟଜୟାୟ ମିଶାଇ ତେତକ ।
ମିଳାଇ, କାମ ଅଷ୍ଟାକ୍ଷରୀକ । ବଂଶୀ ବାଇଲେ ରହିବେ ନାରୀ କ । ୧୧ ।
କାମ-ଜଗନ୍ମୋହ- ମନ୍ତ୍ର-ଯନ୍ତ୍ରକ । ଅସାଧ ତିନିଲୋକ ଯୁବତୀକ ।
ବଳବ, ଦ୍ରବ ପବି ପାଣିକ । ମୋହିବାର ତୁଚ୍ଛ ଇନ୍ଦ୍ରାୟଣୀକ । ୧୨ ।
ଶୁଣି କୃଷ୍ଣ ହସି ଗୃହିଁ ଆଳୀଙ୍କି । ବୋଇଲେ କ ଭାଗ୍ୟ ମୋର ଆଜ କ
କହିଲ , ଯାହା ଦିବ୍ୟ ବାଣୀକ । କଣିଲ କଣିଲ ବେଣୁପାଣିକ । ୧୩ ।

---

୬—ରମା—ଲକ୍ଷ୍ମୀ । ଧୃତି—ଧୈର୍ଯ୍ୟ ।

୭—ଆଣିକ—ଟେକିଲୁ । ପବି ଅଣିକ—ବଜ୍ରର ଟାଣକୁ ।

୮—ଭଳକ—ପରି ।

୯—ଦେବବାମାଧିକ—ଦେବସ୍ତ୍ରୀମାନଙ୍କ ( ଧୀ ) ମନକୁ, ଶ୍ରେଷ୍ଠ ଦେବସ୍ତ୍ରୀ ବା ଦେବବାମାଢକ—ଦେବକନ୍ୟାମାନଙ୍କୁ । ଅଙ୍ଗନା—ସ୍ତ୍ରୀ ।

୧୦—ରତି, ପ୍ରୀତି, ଧୃତି କ ନିବୀଜ—କ୍ଲୀଁ, ପ୍ଲୀଁ, ଧ୍ଲୀଁ ବା କ୍ଲୀଁ, ଶ୍ଲୀଁ, ହ୍ଲୀଁ । କୁସୁମବାଣାୟ ନମଃ ଏତକ ମନ୍ତ୍ର । ଭେଳକି—ବହୁଲ କରିବା ବିଷୟ, ପରାକ୍ରମରେ । ଅବଳାବଳ କ—ସ୍ତ୍ରୀର ବଳ କଣ ?

୧୧—ଯେତକ ନାରୀ ନାମ—ସ୍ତ୍ରୀର ନାମ ଯେତେ ଅକ୍ଷର ତେତକ, କାମବୀଜ (କ୍ଲୀଁ) ପୁଣି 'ବଶ୍ୟଜୟାୟ' ଏହି ପଦ ଏବଂ କାମର ଅଷ୍ଟାକ୍ଷରୀ ମନ୍ତ୍ର ( କୁସୁମ ବାଣାୟ ନମଃ ) ମିଶାଇ ବଂଶୀରେ ବାଇଲେ—ବଜାଇଲେ, ନାରୀ ରହିବେ କ ? ଅବଶ୍ୟ ବଶ ହେବେ ।

୧୨—ତିନିଲୋକ ଯୁବତୀମାନେ ଏହି କାମ—ଜଗନ୍ମୋହ ମନ୍ତ୍ର—କନ୍ଦର୍ପ ଜଗତ ମୋହିବାର ଏହି ମନ୍ତ୍ର, ଯନ୍ତ୍ରକ—ପ୍ରୟୋଗକୁ, ଅସାଧ ହେବେ କ ? ପବି—ବଜ୍ର, ଦ୍ରବ—ତରଳ, ପାଣି କ କଳବ ? ଇନ୍ଦ୍ରାୟଣୀକ—ଶଚୀଙ୍କୁ ।

୧୩—ଆଳୀଙ୍କି—ଆଇ ପୂର୍ଣ୍ଣମାସୀଙ୍କୁ ।

ବୋଧି ବିଦାକର ଭଗବତୀଙ୍କି । କିଶୋରୀ ଭାବରେ ଥୋଇ ମସ୍ତକ ।
ବିଜୟେ, ହଳପ୍ରିୟ କଣ୍ଟକ । ପରଖିବାକୁ ମୁରଳୀସ୍ୱନ୍ତକ । ୧୪ ।
ନଟବର ବେଶ ମୋହେ କ୍ଷିତକ । କେକୀ-ଚନ୍ଦ୍ରକ ଚୂଡ଼ା ସଙ୍ଗତକ ।
ମାନିଛି, ତାହା ପରି ତହିଁକ । କବି ତୁଳନା କେ ଦେବ କାହିଁକ । ୧୫ ।
ଗୁଞ୍ଜାଗ୍ରପାଟି ଅଳକାବଳକ । ମକରକୁଣ୍ଡଳ ଗଣ୍ଡସ୍ଥଳୀକ ।
ଶୋହଇ, ଘନଶ୍ୟାମ କାନ୍ତିକ । ଦେଖି ସୁର ଆଖି ଲଭେ ଗନ୍ତକ । ୧୬ ।
ନାସେ ରୁଚିରୁ ଗଜମୋତି ଛବିକ । କଉଁ ଅନ୍ଧ ଲକ୍ଷ୍ୟ ଦେବ କବିକ ।
କଦମ୍ବ, ପଦ୍ମ ମୋତି ମାଳକ । ଶୋଭା ହେଲେ ପାଇ ହୃଦସ୍ଥଳୀକ । ୧୭ ।
ପୀତବାସ ପିନ୍ଧା ପଣପାଟୀ କ । ଉଦ୍ଧର ଧଇଛି କ୍ଷୀଣକଟିକ ।
ସୁବେଶ, ସାର-ଶୋଭା-କୁଟୀ କ । କିହ୍ନ ଆସିବ କ କୋଟିପାଟିକ । ୧୮ ।
ଦେଖି ସେକାଳ ତ୍ରିଭଙ୍ଗୀଠାଣିକ । ମୋହ ନୋହିବେ ହରରମଣୀ କ ।
ଅଧରେ, ହାସୋପମା ଏତିକେ । ଅନୁରାଗ ସୁଧା କରେ ବାନ୍ତି କ । ୧୯ ।

---

୧୪—କିଶୋରୀଭାବରେ—ଶ୍ରୀରାଧା ପ୍ରେମରେ । ହଳପ୍ରିୟ କଣ୍ଟକ ବିଜୟେ—କଦମ୍ବ ନିକଟକୁ ଗଲେ ।

୧୫—କ୍ଷିତକ—ପୃଥିବୀକୁ । କେକୀ-ଚନ୍ଦ୍ରକ, ମୟୂରପୁଚ୍ଛ । ଚୂଡ଼ାସଙ୍ଗତକ ଜୂଡ଼ା ସାଙ୍ଗକୁ (କଣ କହିବା) । ତାହା ତହିଁରେ ପରି ମାନିଛି, କବି କାହିଁରେ କାହାକୁ ତୁଳନା ଦେବ ।

୧୬—ଗୁଞ୍ଜାଗ୍ରପାଟି—ଗୁଞ୍ଜାର ପୋକର ଖୋଲପାର ମାଳା ବା ସେହିପରି ଅଳଙ୍କାର ବିଶେଷ । ମକରକୁଣ୍ଡଳ—ମଗର ଆକାର କୁଣ୍ଡଳ । ଗଣ୍ଡସ୍ଥଳୀକ—ଗାଲକୁ । ଘନଶ୍ୟାମକାନ୍ତିକ—ମେଘପରି ଶ୍ୟାମଳବର୍ଣ୍ଣ ଶ୍ରୀକୃଷ୍ଣ ଶୋଭାକୁ । ସୁର ଆଖି—ଦେବତାମାନଙ୍କର ଚକ୍ଷୁ ।

୧୭—ନାସେ—ନାସିକାରେ । ରୁଚିରୁ—ସୁନ୍ଦର । ଛବିକ—ଶୋଭାକୁ । ଅନ୍ଧ—ଅବିବେକ । କବିକ—ଶୁକ୍ର ତାରାକୁ । କଦମ୍ବପଦ୍ମ ମୋତିମାଳକ—କଦମ୍ବ, ପଦ୍ମ ଓ ମୋତି, ଶ୍ରୀକୃଷ୍ଣଙ୍କ ହୃଦସ୍ଥଳୀକ—ଛାତିକୁ, ପାଇ କ ଶୋଭା ହେଲେ ।

୧୮—ପୀତବାସ ପିନ୍ଧା ପଣପାଟୀ—ହଳଦିଆପାଟ ପିନ୍ଧିବା ଭଙ୍ଗୀ । କ୍ଷୀଣ-କଟିକ—ସରୁ ଅଣ୍ଟାକୁ । ଉଦ୍ଧର—ଟେକ ଧରିଅଛି । ସୁବେଶ—ସୁନ୍ଦର ବେଶ । ସାରଶୋଭାକୁଟୀ—ଉତ୍କୃଷ୍ଟ ଶୋଭାର ସ୍ଥାନ । କୋଟିପାଟିକ—ଅସଂଖ୍ୟ ମୁଖକୁ ।

୧୯—ହରରମଣୀ—ପାର୍ବତୀ । ଠାଣି—ଛିଇ, ଶୋଭା । ଅଧରେ—ଓଷ୍ଠରେ । ହାସୋପମା—ହାସର ତୁଳନା । ଅନୁରାଗ—ପ୍ରୀତି । ସୁଧା—ଅମୃତକୁ । ଅନୁରାଗ ରକ୍ତବର୍ଣ୍ଣ ବର୍ଣ୍ଣିତ ହେଉଥିବାରୁ ଅଧର ସହିତ ଓ ସୁଧା ଧଳା ବର୍ଣ୍ଣିତ ହୋଇଥିବାରୁ ହାସ ସହିତ ତୁଳନା କରାଯାଇଅଛି ।

ଯୋଗି ଅଧରେ ମୋହନ ବଂଶୀକ । ମୋହ ମାଦକ ଗଲେ ବରଷି କ ।
ବାଦନ, ଗୁରୁ ସ୍ୱର ଗୋଟିକ । ମାର ଶରବୃଷ୍ଟି ଗଲା ଯୋଡି କ । ୨୦ ।
ସିଂହରଡ଼ ପ୍ରତେ ହଗଦନ୍ତୀକ । ନାଗେ ଭୟେ ଗର୍ଜେ ଖଗପତି କ ।
ରାଷସେ, କଲେ ମହାଯାତ୍ରିକ । ଗଲକଲେ ଏ ସୁଦର୍ଶନ ଗତି କ । ୨୧ ।
ଶତକୋଟି ଭୟ ହେଲା ଗିରକ । ମଙ୍ଗଳ ଶୁଭିଲା ସୁରପୁରୀକ ।
ପ୍ରକାଶେ, ଅଲୌକିକ ଶକ୍ତିକ । ଶହି ପାରିବ କେ ବଂଶୀ ଉକ୍ତିକ । ୨୨ ।
ଯମୁନାପାଣି ଚେକେ ଉଜାଣିକ । ପଥରେ ଦ୍ରବିଲେ ବନ୍ଧ ପାଣିକ ।
ସ୍ଥକିତ, କଲା ଜୀବପନ୍ତିକ । ଶୁଷ୍କତରୁ ଯୋଗ୍ୟ ଜୀବଗତିକ । ୨୩ ।
ଶିଥିଳତା କଲା ଗାଢ଼ ନୀବୀକ । ଭଙ୍ଗେ ପତିବ୍ରତା ଦମ୍ଭପବିକ ।
ସ୍ଥକିତ, କରାଇଲେ ରବିକ । ଦିବଚରେ ଗତି କଲେ ଭୂବିକ । ୨୪ ।
ଆଗ ଗ୍ରାସିଲା ଯୁବାରମଣୀଙ୍କି । ବିବେକ ସେ ଫିଙ୍ଗାଇଲା ପାଣିକ ।
ସମ୍ଭାଳି, ନ ପାରିଲେ ବୁଦ୍ଧିକ । ମଣିଲେ ଆସେ କାମଜଳଧିକ । ୨୫ ।

---

୨୦—ମୋହମାଦକ—ମୋହିତ କରିବା ଓ ମାତାଲ କରିବା । କାରଣ କୃଷ୍ଣଚନ୍ଦ୍ର ନିଜେ ମୋହନ ଓ ମାଦନ—ଉଜ୍ଜ୍ୱଳ ନୀଳମଣି । ବାଦନ—ବଜାଇଲେ ।

୨୧— ହଗଦନ୍ତୀକ—ଐରାବତ ପ୍ରଭୃତି ଦଶହଗର ହାତୀମାନଙ୍କୁ । ପ୍ରତେ—ପ୍ରତୀତ ହୁଏ । ନାଗେ—ସର୍ପମାନଙ୍କୁ ଭୟ କରାଇବା ପାଇଁ । ଖଗପତି—ଗରୁଡ଼, ଗର୍ଜୁଛି କି ? କିମ୍ବା ନାଗମାନେ ଖଗପତି—ଗରୁଡ଼ ଉପରେ ଗର୍ଜୁଅଛନ୍ତି କି ? ସୁଦର୍ଶନଗତି—ବିଷ୍ଣୁଚକ୍ର ପ୍ରୟୋଗ ।

୨୨—ଗିରକ—ପର୍ବତମାନଙ୍କୁ । ଶତକୋଟି ଭୟ—ବଜ୍ରଭୟ । ସୁରପୁରୀକ—ସ୍ୱର୍ଗକୁ । ପ୍ରକାଶେ—ପ୍ରକାଶ କଲା । ଅଲୌକିକ ଶକ୍ତିକ—ଅସାଧାରଣ ମହିମାକୁ । ଉକ୍ତିକୁ—କଥାକୁ, ସ୍ୱରକୁ ।

୨୩—ଉଜାଣିକ—ଉପରକୁ (ଉଦଯାନମ୍) ଚେକେ—ହଠାଏ । ପଥରେ—ପଥର ସବୁ । ଦ୍ରବିଲେ—ତରଳିଲେ । ସ୍ଥକିତ—ଥକା । ଜୀବପନ୍ତିକ—ସବୁ ପ୍ରାଣୀଙ୍କୁ । ଶୁଷ୍କତରୁ—ଶୁଖିଲା ଗଛ । ଜୀବଗତିକ ଯୋଗ୍ୟ—ଜୀବନ ପାଇଲେ—ମୁକୁଳିଲେ ।

୨୪—ଶିଥିଳତା—ହୁଗୁଳା । ଗାଢ଼ ନୀବୀକ—ଟାଣ ଖୋସଣିକୁ । ଦମ୍ଭ ପବିକ—ଧୈର୍ଯ୍ୟରୂପ ବଜ୍ରକୁ । ରବିକ—ସୂର୍ଯ୍ୟଙ୍କୁ । ଦିବଚର—ସ୍ୱର୍ଗରେ ଦେବତାମାନେ । ଭୂବିକ—ପୃଥିବୀକୁ । ଗତିକଲେ—ଆସିଲେ ।

୨୫—ଯୁବା ରମଣୀଙ୍କି—ଯୁବତୀମାନଙ୍କୁ । ବିବେକ—ବିଚାର ଶକ୍ତି, ବିବେଚନା । କାମଜଳଧି—କନ୍ଦର୍ପ ସମୁଦ୍ରକୁ ।

ଯା ଧ୍ୱନି ମୋହେ ବ୍ରହ୍ମାଣ୍ଡାବଳୀକି । ତହୁଁ ନାଗରୀ ପାଶରେ ବଳୀ କି ।
ଗୋଟିକ, ସ୍ୱର ଦହେ ଧୃତିକି । ସପତ ସ୍ୱରରେ ହେବ ବର୍ତ୍ତୀକି ? ୨୭ ।
ଚନ୍ଦ୍ର ସେ ମୋହନ ବଂଶୀଧାରୀକି । ରାଧାମୋହନ ବ୍ରଜବହାରୀଙ୍କି ।
ବୋଲଇ, ଅଭିମନ୍ୟୁ-ପାତକୀ । ତୋ ଭାବେ ଥିବ ସଦା ମୋ ଚିତ୍ତ କି ।୨୮।

———

## ତ୍ରୟୋବିଂଶ ଛାନ୍ଦ

## ଶ୍ରୀ ରାଧା ନିପୁଂସ ଭ୍ରମ

ଆଦ୍ୟ ପ୍ରାନ୍ତମଧ୍ୟାନୁପ୍ରାସ । ରାଗ—ଭୂପାଳ

ଧୀରେ ଧୀରେ ଶୁଣ ରସ କିଶୋରୀ ବିରସ କରି ପଟରେ ସଞ୍ଚିତ ଚିତ୍ତ ।
ହର ହର ମୋ ବେଦନା ବୋଲେ ସୁବଦନା ହେଉ ଚିହ୍ନ ପୁଂସ କାନ୍ତ କାନ୍ତ
ଦର୍ପ ଦର୍ପକ କରଇ କାର୍ମୁକ ଧରଇ କରିବାପାଇଁ ଅବଧ ବଧ ।
ବର-ବରନା କାରଣ କାମନିବାରଣ ନୁହନ୍ତି ଆନ ବିବୁଧ ବୁଧ । ୨ ।
ମନ ମନଜ ଦହିଲା କହନ୍ତି ମହିଳା ସହି ଏଥର ମୋ ଜୀବ ଯିବ ।
ଚିତ୍ତ ଚିନ୍ତଇ ନିକର ଜଇବାତୃକର ଆଶାସ୍ୟୀ ଯେମନ୍ତ ଜୀବଞ୍ଜୀବ । ୩ ।

---

୨୭—ବ୍ରହ୍ମାଣ୍ଡାବଳୀକି—ବ୍ରହ୍ମାଣ୍ଡସମୂହକୁ । ସପତ ସ୍ୱରରେ—ସାତସ୍ୱର-ସମୂହରେ । ବର୍ତ୍ତୀ—ସମ୍ଭାଳ, ବର୍ତ୍ତି ।

———

୧—ଧୀରେ (ଆହେ ପଣ୍ଡିତମାନେ) ଧୀରେ—ସ୍ଥିରଭାବରେ; ରସ-ଶୁଣ । ସୁବଦନା—ସୁମୁଖୀ, କିଶୋରୀ—ରାଧା, ପଟରେ ଚିତ୍ତ ସଞ୍ଚିତ କରି—ଚିତ୍ରପଟରେ ମନଦେଇ, ବିରସ—ଦୁଃଖିତା; ହୋଇ ବୋଲେ । ହେ ହର—ଶିବ, ମୋ ବେଦନା – ଦୁଃଖ, ହର—ହରଣ କର । କାନ୍ତ ଚିହ୍ନ ପୁଂସ—ସୁନ୍ଦର ଚିହ୍ନପଟ ଲକ୍ଷିତ ପୁରୁଷ, ମୋର କାନ୍ତ—ପତି, ହେଉ—

୨—ଦର୍ପ—ଗର୍ବ । ଦର୍ପକ—କନ୍ଦର୍ପ । କାର୍ମୁକ—ଧନୁ । ଅବଧବଧ—ଅବଧ୍ୟ ସ୍ତ୍ରୀ ବିନାଶ । ଆନ ବିବୁଧବୁଧ—ଅନ୍ୟ ଦେବତା ଓ ପଣ୍ଡିତମାନେ । ବରବରନା—ସୁନ୍ଦରୀ ସ୍ତ୍ରୀର । କାମ ନିବାରଣ କାରଣ—କନ୍ଦର୍ପବାଧା ଦୂର କରିବାର ହେତୁ ନୁହନ୍ତି ।

୩—ମନଜ—କନ୍ଦର୍ପ । ଅନୁପ୍ରାସହେତୁ "ମନୋଜ" ସ୍ଥାନେ ମନଜ ପଠିତ । ମହିଳା—ସ୍ତ୍ରୀ ଶ୍ରୀରାଧା । ନିକର—ନିଶ୍ଚୟ । ଜଇବାତୃକର—ଚନ୍ଦ୍ରର । ଆଶାସ୍ୟୀ—ଆଶାକାରୀ । ଜୀବଞ୍ଜୀବ—ଚକୋର ।

ସାର ସାରସଲପନ ଶନ୍ତ ଉଦ୍ଦୀପନ ବଢ଼ାଇଲା ମୋର ଘନ ଘନ ।
ତାର ତା-ରସେ ମଜାଇ ପ୍ରେମ ଉପୁଜାଇ ନୋହିଲେ ହେବ ଗିଆନ ଆନ ॥
ଗ୍ରାଷ ଗ୍ରାଷନ୍ତେ ଏସନ ସ୍ଫୁରେ ବଂଶୀସ୍ୱନ ଶ୍ରବଣେ ରାଧା କାତରତର ।
ମାର ମାରଣା ଗରଜ ଆସେ କ ତରଜ ଏଥି ଶନ୍ତା ହେଲା ମରମର । ୫ ।
ଧୀର ଧୀର ପଳାଇଲା ଲୋଭ ବଳାଇଲା କୃଷ୍ଣ ମୁରଲୀ ସଙ୍ଗୀତ ଗୀତ ।
କରକର-ଶ୍ରୀ-ରଦନା କରେ ନିବେଦନା ଏ କ ଶୁଭେ ଅପ୍ରମିତ ମିତ । ୬ ।
ନୀବ-ନିବଡ଼-ବନ୍ଧନ ଫିଟିଲା, ବର୍ଦ୍ଧନ ହୋଇଲା ମୋର ହୃଦର ଦର ।
ସହି ସହିତ ନୋହିବ ନିଶ୍ଚୟ ଦହିବ ମାର କର ଫୁଲଶର ଶର । ୭ ।
ଅଙ୍ଗ ଅଙ୍ଗନାର ଥରେ ନୟନପଥରେ ଦେଖି ନ ସ୍ଫୁରେ ସଙ୍ଗୀର ଗିର ।
ଭଲେ ଭଲେ କର ମାର କେ ଏ ସୁକୁମାରୀ ଗତ ବେଳକୁ ଶଙ୍କର କର ।୮।
ଆଳୀଆଳଏ ବୋଇଲେ ଏରୂପେ ହୋଇଲେ ହେବ ସିନା ଅପଖ୍ୟାତ ଖ୍ୟାତ ।
ନୀର ନିରତେ ବହିଲା ନେହୁଁ ନ ରହିଲା ଦୁଖେ ନ ମଜ୍ଜା ସୁମତ ମତ ।୯।
ତନୁ ତନୁ ହୋଇଲାନ କେତେ ସହିଲାନ ହୃଦରେ ଜଳଇ ଚିନ୍ତା ଚିତା ।
ବାଶ ବାଶଜମୁହିଁ କ କହେ କେ ସହିକ କେ ହୋଇବ ଏହାର ତାରନ୍ତା ॥

---

୪—ସାର—ଉତ୍କୃଷ୍ଟ । ସାରସଲପନଚନ୍ଦ୍ର—ପଦ୍ମମୁଖ ଶ୍ରୀକୃଷ୍ଣଙ୍କର ଛବି । ଉଦ୍ଦୀପନ—କନ୍ଦର୍ପ ଉଦ୍ରେକକୁ । ଘନଘନ—ଅବିରତ, ପୁଣି ପୁଣି ତା—ରସେ ସେହି ଶ୍ରୀକୃଷ୍ଣଙ୍କର ରତରେ । ତାର—ଉଦ୍ଧାର କର । ପ୍ରେମ—ପ୍ରୀତ । ଉପୁଜାଇ ଜନ୍ମାଇ । ଗିଆନ ଆନ ହେବ—ଜ୍ଞାନ ବୁଡ଼ିବ ।

୫—ଶ୍ରବଣେ—ଶୁଣିମାତ୍ରେ । କାତରତର—ଅତି କାତର । ମାରମାରଣା—କନ୍ଦର୍ପ ତକାଏତ । ତରଜ—ତଦ ନାଶ । ମରମର—ହୃଦୟର ।

୬—ଧୀର ଧୀର—ବୁଦ୍ଧିର ସ୍ଥିରତା । କରକର—ଶ୍ରୀ ରଦନା—ଡାଳିମ୍ବ ବୀଜପରି ଶୋଭିତ ଦନ୍ତ ଯାହାଙ୍କର ଏପରି ଯେ ଶ୍ରୀରାଧା । ନିବେଦନା କରେ—ଜଣାଇଲା । ଅପ୍ରମିତ—ଅକଳିତ ।

୭—ନୀବ-ନିବଡ଼-ବନ୍ଧନ—ବସ୍ତ୍ର ଗଣ୍ଠିର ଗାଢ଼ ବନ୍ଧା । ହୃଦର ଦର—ମନର ଭୟ । ଫୁଲଶର—କନ୍ଦର୍ପ ।

୮—ସଙ୍ଗୀର ଗିର—ସଖୀର ବଚନ । କେ ଭଲେ—କିଏ ବସ୍ତ୍ରରେ । ଗତ—ରକ୍ଷା । ଶଙ୍କର ହେ ଶିବ ।

୯—ଆଲୀଆଳଏ—ସଖୀସମୂହ । ଅପଖ୍ୟାତ—ଅକୀର୍ତ୍ତି । ଖ୍ୟାତ—ପ୍ରକାଶ । ନୀର—ଜଳ ଅର୍ଥାତ୍ ଲୁହ । ନିରତେ—ସର୍ବଦା । ସୁମତ—ହେ ବୁଦ୍ଧି । ମତ—ମନକୁ । ନ ମଜ୍ଜା—ବୁଡ଼ା ନା ।

୧୦—ତନୁ—ଦେହ । ତନୁ—କ୍ଷୀଣ । ଚିନ୍ତାଚିତା—ଚିନ୍ତାରୂପକ ଅଗ୍ନି । ବାଶ—ଗ୍ରହ୍ମ । ବାଶଜମୁହିଁ କ—ପଦ୍ମମୁଖୀ ଶ୍ରୀରାଧାଙ୍କ ନ ପଗ୍ୱର । ତାରନ୍ତା—ତ୍ରାଣକର୍ତ୍ତା ।

ଭାବ ଭାବନୀ ନିରତ ବଢ଼ିଲା ଆରତ କେ କରିବ ଗଜଗତି ଗତି ।
ଲୋକେ ଲୋକେଶ ବିପକ୍ଷ ହେଲେ କେ ବା ପକ୍ଷ ହେବ ଶୁଣିନାହିଁ ଶ୍ରୁତି ଶ୍ରୁତି ॥
ଧନ ଧନକୁ ଦୀନ ତ ହେଲା ଜୀବନ ତ ନିରତେ ଜାତ ବ୍ୟାକୁଳ କୁଳ ।
ଜୀବ ଯିବ ଏହିକ୍ଷଣି ବୋଲେ ସୁଲକ୍ଷଣୀ ନିରତେ ଜାତ ବିକଳ-କଳ ।୧୨।
ଭାବ ଭାବନୀ କରମେ ଏ ଦଶା ଭରମେ ରଖିଥିଲା ପୁଣି ବିଧି ବିଧି ।
ପ୍ରିୟ ପ୍ରିୟ ନ ପାଇଲେ କି ହେବ ବୋଇଲେ ପାରିବ କେହି ବିରହୀ ରହି ॥
ପାଞ୍ଚ,ପାଞ୍ଚଜଣ ଯିବା କାନନେ ଖୋଜିବା କେ କାହିଁ ବଜାଏ ବସି ବଂଶୀ ।
କିତ କିତବ କି ଦ୍ୱେଷୀ ନାରୀର ବିଦେଶୀ ଆଗତ କାହିଁରୁ ରୁଷି ଋଷି ।୧୪।
ଶୂର ସୁର ବା ଅସୁର-ଧେନାକ ଅସୁର କି ଅବା ନାଗ କିନ୍ନର ନର ।
ସେ କେ,ସେ କେମନ୍ତ ଲୋକ,କଲେ ତ ଆଲୋକ,ଜାଣିମା ସିନା ଅସାରସାର ॥
ସଖୀ ସଙ୍ଗତେ ଏସନ ବିଗ୍ଭରି ପ୍ରସନ୍ନମୁଖୀ କି କହନ୍ତି ଜୀବ ଯିବ ।
ଧର ଧରମଭରସା ନିକଟେ ସୁରସାଳୟା କରିବେ ବା ଶିବ ଶିବ ।୧୬।

---

୧୧—ଭାବ—ଭାବନା କରି । ଭାବନୀ—ସ୍ତ୍ରୀ, ଶ୍ରୀରାଧା । ନିରତ—ସର୍ବଦା । ଆରତ—ଦୁଃଖ । ଗଜଗତିଗତି—ଗଜଗାମିନୀ ଶ୍ରୀରାଧାଙ୍କର ଉଦ୍ଧାର । ଲୋକେ—ଜଗତରେ । ଲୋକେଶ—ବିଧାତା, ରାଜା । ବିପକ୍ଷ—ପ୍ରତିକୂଳ । ପକ୍ଷ—ସହାୟ । ଶ୍ରୁତି ଶ୍ରୁତି—ବେଦ ବା ଶାସ୍ତ୍ରରେ ଓ କାନରେ ।

୧୨—ଧନଧନକୁ—ଧନକୁ ଧନ । ଦୀନ—ଦୁଃଖିତ । ଜୀବନ—ପ୍ରାଣ । ନିରତେ—ସର୍ବଦା । ବ୍ୟାକୁଳକୁଳ—ଅକୁଳତା ସମୂହ । ଜୀବ—ପ୍ରାଣ । ସୁଲକ୍ଷଣୀ—ଲକ୍ଷଣବତୀ, ଶ୍ରୀରାଧା । ବିକଳ—କଳ-ବିକଳ ଧ୍ୱନି ।

୧୩—ଭାବ—ଭବିଷ୍ୟତକ୍ରି । ଭାବନୀ କରମେ—ସ୍ତ୍ରୀ, ଶ୍ରୀରାଧାଙ୍କର କପାଳରେ । ଭରମେ—ଭ୍ରମରେ । ବିଧି—ବିଧାତା । ବିଧି—ବିଧାନ କରି । ପ୍ରିୟ ପ୍ରିୟ—ପତିପ୍ରୀତି । ବିରହୀ—ବିଯୋଗିନୀ ।

୧୪—ପାଞ୍ଚ—ବିଗ୍ଭର କରି । କିତ—କଅଣ । କିତବ—କପଟ । ନାରୀର ଦ୍ୱେଷୀ—ସ୍ତ୍ରୀର ବିରୋଧୀ । କାହିଁରୁ ରୁଷି—କେଉଁ ହେତୁରୁ କ୍ରୁଦ୍ଧ ହୋଇ । ଋଷି—ମୁନି । ବିଦେଶୀ—ବିଦେଶୀସ୍ଥ । ଆଗତ—ଆସିଅଛନ୍ତି ।

୧୫—ଶୂର—ବୀର । ସୁର—ଦେବତା । ଅସୁର—ଧେନାକ—ପ୍ରାଣର ଗ୍ରହଣକାରୀ ଅର୍ଥାତ୍ ପ୍ରାଣନାଶକ । ଅସୁର—ରାକ୍ଷସ । ନାଗ କିନ୍ନର ନର—ସର୍ପ, କିଂପୁରୁଷ, ମନୁଷ୍ୟ । ଆଲୋକ—ଦର୍ଶନ । ଅସାରସାର—ମନ୍ଦ ଓ ଭଲ ।

୧୬—ସଖୀ ସଙ୍ଗତେ—ସଖୀମାନଙ୍କ ସାଙ୍ଗରେ । ପ୍ରସନ୍ନମୁଖୀ କି—ସହର୍ଷମୁଖୀ; ଶ୍ରୀରାଧାଙ୍କ । ଧରମଭରସା ଧର—ଧର୍ମକୁ ଆଶ୍ରୟ କର । ନିକଟେ—ଅଳ୍ପକାଳରେ । ସୁରସାଳୟା—ହେ ରସବତୀ ! ଶିବ—ମହାଦେବ । ଶିବ—ମଙ୍ଗଳ ।

ଆଜ ଆଜନ୍ମସୁଖି-ରେ ଅଇଲେ ଦେଖି ରେ ଯୋଗ୍ୟ ହେଲେ କାଲ୍ପ ବର ବର
ଭୁଳା ଭୁଳାଅଙ୍ଗୀ ରଙ୍ଗ ହେଲାନ କୁରଙ୍ଗନୟନା କାନ୍ଦ ନବାର ବାର ।୧୭।
ମହ ମହତ୍ତ୍ୱ ଲଙ୍ଘିବା ଉପାୟେ ଲାଗିବା ମାନ ଆମ୍ଭ ସରସ୍ୱତୀ ସତ ।
ବଚ ବଞ୍ଚନା ଆଳୀର ଶ୍ରବଣେ ବାଳୀର ଧୀ ସରେ ସ୍ମରେ ଖପତ-ପତ ।୧୮।
କର କରମରେ ମାଣ ନରେନ୍ଦ୍ରକୁମାରୀ ବୋଲେ ରେ କାମ ପାମର ମର ।
ପର ପରବଶ ଜନେ କରୁ, କ ଅର୍ଜନେ ଗର୍ଜି ପ୍ରହାରୁ ଅସର ଶର ।୧୯।
କହିଲେ ଗୁଣି ଗୁଣୀମଣି ଧୀରେ ଅଧୀରେ ସହି ସରିଲା ଗୁମାନ ମାନ ।
ଧିକ ଧିକ ମୁଁ ବରତି ତନ ପୁଂସେ ରତ ହେବାର କଲି ନିଦାନ ଦାନ ॥
କାମୀ କାମିନୀ ଗଣିତ ହୋଇଲା ପୁଣି ତ ପୋଡ଼ୁ ହେବାର ରମଣୀମଣି ।
ସତୁ ସରୂପ କହୁଛି କଳଙ୍କ ରହୁଛି ବେଗେ ପକାଅ ସିଦ୍ଧାଣି ହାଣି । ୨୧ ।

---

୧୭—ଆଜନ୍ମସୁଖୀରେ—କୃଷ୍ଣଚନ୍ଦ୍ରଙ୍କ, ବା ରେ ରେ ଆଜନ୍ମସୁଖି—ରାଧା । ଯୋଗ୍ୟ ଅନୁରୂପ ବର—ପତିକୁ । ବର—ବରଣ କର । ଭୁଳାଭୁଳା ଅଙ୍ଗୀ—ହେ ଭୁଲାଭୁଲିଦେହା । କୁରଙ୍ଗନୟନା—ମୃଗର ପରି ଆଖି ଯାହାର । ନବାର—ନିବାରଣ କର । ବାର—ଜଳ ଅର୍ଥାତ୍ ଲୁହ । ରଙ୍ଗ ହେଲଣି—ଆଖି ଲାଲ ହେଲଣି (ଏଠାରେ ଆଖି ଆଣିବାକୁ ହେବ) ।

୧୮—ମହ—ତେଜ ଅର୍ଥାତ୍ ଟେକ । ମହତ୍ତ୍ୱ—ଗୌରବ । ମାନ—ପାଳନ କର । ସରସ୍ୱତୀ—ବଚନ । ସତି—ହେ ପତିବ୍ରତେ । ବଚବଞ୍ଚନା—ଠକିବା କଥା । ଆଳୀର—ସଖୀର । ଶ୍ରବଣେ—ଶୁଣିବାଦ୍ୱାରା । ବାଳୀର—ବାଳା, ଶ୍ରୀରାଧାଙ୍କର । ଧୀ—ବୁଦ୍ଧି । ସରେ—ଶେଷ ହେଲା । ସ୍ମରେ—ସ୍ମରଣ କଲା । ଖପତ-ପତ—ପକ୍ଷୀମାନଙ୍କର ପତି ଗରୁଡ଼, ତାର ପତି ବିଷ୍ଣୁଙ୍କୁ ।

୧୯—ନରେନ୍ଦ୍ରକୁମାରୀ—ବୃଷଭାନୁ ରାଜକନ୍ୟା । ପାମର କାମ—ରେ ନୀଚ କନ୍ଦର୍ପ । ପର—ଶତ୍ରୁ । ପରବଶଜନେ ପରାଧୀନ ଲୋକକୁ । କ ଅର୍ଜନେ—କଅଣ ପାଇବାକୁ । ଅସର—ଅସରନ୍ତା ।

୨୦—ଗୁଣି—ବିଚାରି । ଗୁଣୀମଣି- ଗୁଣବତୀ ଶ୍ରେଷ୍ଠା, ଶ୍ରୀରାଧା । ଧୀରେ—ଆସ୍ତେ । ଅଧୀରେ—ଆକୁଳ ହୋଇ । ଗୁମାନମାନ—ଅଭିମାନ ସବୁ । ଧିକ ଧିକ—ଧିକ୍କାର ହେଉ ହେଉ । ବରତି—ପତିବ୍ରତା । ବା ବରତ (ପାଠରେ) ବ୍ରତ ଥାଉଁ ଥାଉଁ । ତନ ପୁଂସେ—ତନଜଣ ପୁରୁଷକୁ । ନିଦାନ ଦାନ କଲି—ନିଶ୍ଚୟ ଦେଲି ।

ଏକସ୍ୟ ଶ୍ରୁତମେବ ଲୁମ୍ପତି ମତିଂ କୃଷ୍ଣେତି ନାମାକ୍ଷରମ୍
ସାନ୍ଦ୍ରୋନ୍ମାଦପରମ୍ପରାମୁପନୟତ୍ୟନ୍ୟସ୍ୟ ବଂଶୀକଳଃ ॥
ଏଷପି ସ୍ନିଗ୍ଧଘନଦ୍ୟୁତିର୍ମନସି ମେ ଲଗ୍ନଃ ପଟେ ବୀକ୍ଷଣାତ୍
କଷ୍ଟଂ ଧିକ୍ ପୁରୁଷତ୍ରୟେ ରତିରଭୂନ୍ମନ୍ୟେ ମୃତିଂ ଶ୍ରେୟସୀମ୍ ॥ ବି. ମା.

ଆନ ଆନନ ଲୁହେଁବ କି କରି ସହିବି କେହ୍ନି ଲୋକ ଅପବାଦ ବାଦ ।
ବିହି ବିହିଛି କପାଳେ ହସିବେ ଗୋପାଳେ ଅରଜିଲି ଏ ଆପଦ ପଦ ।୨୨।
ପର ପରତେ ହେବାର ସେ କି ଲୁଚିବାର କାଳି ଯିବ ତ ଏ ପୁରୀ ପୂରି
ଆସ ଆସନ୍ତ ହେଲି, ଲବେ ନୋହେ ହେଳା, ଯିବି ତା ନାମ ସୁମରି ମରି ॥
ଧ୍ରୁବ ଧ୍ରୁବ ଲୋକ ବଳି ମୋ ନିନ୍ଦାଆବଳି ଗଲେ କି ତାହା ତେଜିବ ଜୀବ ।
ମୂର୍ଚ୍ଛି ମୁଁ ଛି କଲେ ତାକୁ ମନ ମମତାକୁ ଛଡ଼ାଇ କି କାମଦେବ ଦେବ ।୨୪।
ଭାବ ଭାବର ମୂରତି ବିନା କି ବରତି ହେବ କଷ୍ଟ ଅକୂପାର ପାର ।
କର, କର ମୁଁ ଧରୁଛି, ଉପାୟ ସରୁଛି ରାଧା ନା, କୃପା ବିସ୍ତାର, ତାର ॥
ସଙ୍ଗୀ ସଙ୍ଗୀତପଣ୍ଡିତା ଜଗତମଣ୍ଡିତା ବାଣୀ ଶ୍ରବଣେ ଦୁଃଖରେ ଖରେ ।
ବାଚ ବାଚକ ହୋଇଲେ ସ୍ୱରୂପ ବୋଇଲେ ଚଉ ନ ମନ୍ତା ଆତୁରେ ତୁ ରେ ॥
ନାଗ ନାଗର ସେ ଏକ ତୃଷ୍ଣାୟୁ ନାୟକ ଭ୍ରମ ତେଜ ସେ ନନ୍ଦନନ୍ଦନ ।
ବର ବରଜରମଣୀଙ୍କର ହୃଦମଣି ସେ କାମୀ ତପ୍ତଜୀବନ ବନ ।୨୬।

---

୨୧—କାମିକାମିନୀ—କାମୁକୀ ସ୍ତ୍ରୀ । ଗଣିତ—ଗଣି । ରମଣୀମଣୀ—ସ୍ତ୍ରୀଶ୍ରେଷ୍ଠା । ସରୂପ ସରୁ—ମୂର୍ତ୍ତି ନଷ୍ଟ ହେଉ ଅର୍ଥାତ୍ ମୁଁ ମରେ । କଳଙ୍କ—ଅପବାଦ । ସିହାଣି—ହେ ଚତୁର !

୨୨—କେହ୍ନି—କିପରି । ଲୋକଅପବାଦ ବାଦ—ଲୋକନିନ୍ଦା ପ୍ରବାଦ । ଆପଦପଦ—ବିପତ୍ତିର ସ୍ଥାନ ।

୨୩—ପର ପରତେ ହେବାର—ପର ପୁରୁଷ ସହିତ ପରିଚୟ ହେବା କଥା । ପୁରୀ—ନଗରୀ । ପୁରି ଯିବ—ପୂର୍ଣ୍ଣ ହେବ । ଅସନ୍ତ—ସବୁ ପ୍ରକାରେ ବା ସର୍ବଦା । ଲବେ—ଅଳ୍ପ ।

୨୪—ଧ୍ରୁବ—ନିଶ୍ଚୟ । ବଳି—ଅତିକ୍ରମ କରି । ନିନ୍ଦାଆବଳୀ—ଅପବାଦସବୁ । ଜୀବ—ପ୍ରାଣ । ତାହା—ସେ ଶ୍ରୀକୃଷ୍ଣ ପ୍ରେମ । ମୁଁ ତାକୁ (ସେହି ଶ୍ରୀକୃଷ୍ଣ ପ୍ରେମକୁ) ମୂର୍ଚ୍ଛି—ଦୃଢ଼କରି, ଛି କଲେ ସୁଦ୍ଧା କାମଦେବ—କନ୍ଦର୍ପ, ମନର ମମତାକୁ—ଆଗ୍ରହକୁ, ଛଡ଼ାଇ ଦେବ କି ? ଅର୍ଥାତ୍ ଦେବ ନାହିଁ ।

୨୫—ଭବ—ଜାଣ ଭାବର ମୂରତି—ପ୍ରେମମୟ ମୂର୍ତ୍ତି, ବା ଭା—କାନ୍ତିରେ ବର ଉତ୍କୃଷ୍ଟ ମୂର୍ତ୍ତି, ଶ୍ରୀକୃଷ୍ଣ । କି ବରତି—ବଞ୍ଚିବି କି ? କଷ୍ଟ ଅକୂପାର—କ୍ଳେଶସମୁଦ୍ର । ପାର—ପାରି । ଉପାୟ କର । ବିସ୍ତାର—ପ୍ରକାଶ କର । ତାର ଉଦ୍ଧାର କର ।

୨୬—ସଙ୍ଗୀତ ପଣ୍ଡିତା—ଜ୍ଞାନନିପୁଣା । ଜଗତମଣ୍ଡିତା—ସଂସାରର ଅଳଙ୍କାର ସ୍ୱରୂପା ଶ୍ରୀରାଧାଙ୍କର । ଖରେ—ବେଗରେ । ବାଚ—ବାଚକ ହୋଇଲେ—ବଚନ କହିଲେ । ସ୍ୱରୂପ—ସତ୍ୟ, ଉଚିତ । ଆତୁରେ—ଉତ୍କଣ୍ଠାରେ ।

୨୭—ନାଗ ନାଗର—ନାଗର ନାଗ—ରସିକଶ୍ରେଷ୍ଠ । ତୃଷ୍ଣାୟୁ ନାୟକ—ହେ ପୁଂସ; ଉନଜଣ ନାୟକ । ବର ବରଜରମଣୀଙ୍କର—ଉତ୍କୃଷ୍ଟ ଗୋପ ସ୍ତ୍ରୀମାନ-

ସୁଧା ସୁଧାର ଉତ୍ତର ଶ୍ରବଣେ ମିତର ବଢ଼ିଲା ରାଧା-ଆନନ୍ଦ ନଦ ।
ଶଶ ଶଶଧରବତ ସେ ବାଣୀ ଜୀବ ତ ମଣିବାରୁ ଧୀ-କୁମୁଦ ମୁଦ ।୨୮।
ବଦ୍ୟ ବଦ୍ୟତ ଗଉର ସୁକର ଭଉଁରୀ ଭାବ ସାମନ୍ତର୍ହି ହାର ହାର ।
ପ୍ରାନ୍ତ ପ୍ରାନ୍ତ ଆଦ୍ୟନ୍ତର ଯମକ ଗୀତର ମର୍ମଜ୍ଞ ବନା ଜଡ଼ର ଭର ।୨୯।

———

## ଚତୁର୍ବିଂଶ ଛାନ୍ଦ

ଶ୍ରୀରାଧାଠାରେ ଦୂତୀ ଉକ୍ତି । ଆଦ୍ୟବର୍ଣ୍ଣାନୁପ୍ରାସ

ରାଗ—କଲ୍ୟାଣଆହାରୀ

ରସିକେ ରସବଶରସ ରସିଣ ଶ୍ରବଣ କର ଦେଇ ମନ ।
ରସାଳସା ଯୋଷା ଦଶା ଦେଖି ସଖୀ ଦୁଃଖିତ କଲ ମନ ଅନ । ରସିକା ।
ରଣରଣ-ତାପ ନାଶନେ
ଋତୁ ଉଦ୍ଦୀପନ ଶାନ୍ତ ଉପଚାର ପ୍ରଚାର କରନ୍ତୁ ଯତନେ । ୧ ।

---

ଙ୍କର । ହୃଦମଣି—ହୃଦୟରତ୍ନ । କାମୀ ତପ୍ତଜୀବନବନ—କାମିକାମାନଙ୍କର ପରିତପ୍ତ ପ୍ରାଣର ଜଳ ସ୍ୱରୂପ । "ତା ଶୁଣାନ୍ତୁ ଏକୋକେବ ସୋ ଏସୋ ମହାଣାଅରେକହ୍ଲୋ ।" ଲଳିତା ଓ ବିଶାଖାଙ୍କ ଉକ୍ତି—ବ, ମା ।

୨୮—ସୁଧା ସୁଧାର ଉତ୍ତର ଶ୍ରବଣେ—ଅମୃତ ଧାରା ତୁଲ୍ୟ ଅଥବା ଅମୃତ-ପରି ସରଳ ବଚନ ଶୁଣି । ରାଧା-ଆନନ୍ଦ-ନଦ—ଶ୍ରୀରାଧାଙ୍କର ଆନନ୍ଦ ନଦୀ । ଶଶ ଶଶଧରବତ—ଶତ ଶତ ଚନ୍ଦ୍ରପରି । ସେ ବାଣୀ—ସେ ସଖୀ ବଚନ । ଜୀବନ—ଶ୍ରୀରାଧାଙ୍କର ପ୍ରାଣ ପରି । ଧୀକୁମୁଦ ମୁଦ—ମନରୂପକ କଇଁର ଆନନ୍ଦ ହେଲା ।

୨୯—ବଦ୍ୟ—ପଣ୍ଡିତମାନେ । ବଦ୍ୟତ-ଗଉର—ବିଜୁଳିବର୍ଣ୍ଣା । ଅଥବା ବଦ୍ୟ ବଦ୍ୟତ-ଗଉର—ବିଜୁଳିଆଭା—ବିଜୁଳିଆଭା ତୁଲ୍ୟ ବର୍ଣ୍ଣା —ଶ୍ରୀରାଧା । ସୁକର ଭଉଁରୀ—ସହଜ ଭ୍ରମ । ଭାବ—ପ୍ରେମଭକ୍ତି । ହାର—ମାଳାସ୍ୱରୂପ । ପ୍ରାନ୍ତ ଆଦ୍ୟ ଓ ମଧ୍ୟମ ଯମକଯୁକ୍ତ । ଗୀତର, ପ୍ରାନ୍ତ—ଶେଷ, ହେଲା । ମର୍ମଜ୍ଞ—ସାରଜ୍ଞ, ପଣ୍ଡିତ । ଜଡ଼ର—ମୂର୍ଖର ।

———

୧—ରସବଶରସ—ରସିକା ଶ୍ରୀରାଧାଙ୍କର ଶୃଙ୍ଗାର ରସ ବର୍ଣ୍ଣନା । ରସାଳସା ଯୋଷା ଦଶା—ମଦାଳସୀ, ରସ କ ଶୃଙ୍ଗାର ରସ ତନ୍ଦ୍ରିରେ ଘାରି ହେଉଥିବା ସ୍ତ୍ରୀ ଶ୍ରୀରାଧାଙ୍କର ଅବସ୍ଥା । ରଣରଣ ତାପ ନାଶନେ—କନ୍ଦର୍ପ ତାପ ଶାନ୍ତ ନମିତ୍ତ । ଋତୁଉଦ୍ଦୀପନ—ବସନ୍ତ ଋତୁରେ ବଢ଼ୁଥିବା । ଶାନ୍ତ ଉପଚାର—ଶାନ୍ତ ହେବାର ଉପାୟ, ସାମଗ୍ରୀ । ପ୍ରଚାର କଲେ—ବିଧାନ କଲେ ।

ରମଣୀ କେ ପୁଣି ଗୋଳି ଘନସାର ବୋଳି ଦେଉଅଛି ହୃଦରେ ।
ରାଜୀବନାଳ ମାଳ ମାଳ କରି କେ ଲମ୍ବାଇ ଦେଉଛି ଗଳାରେ । ରସିକା ।
ରତନ ଯତନ ପାଇଁକି ।
ରଚେ କେ ଶତ ଶତଦଳତଳପ ନୟନେ ଥକାଇ ପାଣିକି । ୨ ।
ରାମା କେ ଉଷୀର ବାଟୁଛି, ଛାଟୁଛି ବାତାୟନ-ବାଟ-ଫାଟକୁ ।
ରଚନା କଉଁ ସୁଲୋଚନା କରଇ ଅହିଭକ୍ଷ ବାତ ହତକୁ । ରସିକା ।
ରମ୍ୟ ପାଇଁ କେ ମନେ ଭାଳି ।
ରୁତବନ୍ତ ପରଭୃତକୁ ଲଉଡ଼ି ଘେନି ଦଉଡ଼ି ଦିଏ ଗାଳି । ୩ ।
ରସନିଧିରେ ଏ ବିଧିରେ ବଞ୍ଚାନ୍ତି, ଦୂଞ୍ଚାନ୍ତି ଅଳପ ତାପକୁ ।
ରଜନୀଶ ମୁଖୀ, ସଜନୀ କେ ବୋଲେ, ଅରଜ ଅଛି ଏ ପାପକୁ । ରସିକା ।
ରସଭାବନେ ଅଚେତନା ।
ରହିତ ନୋହେ ତ ସାନ୍ତ୍ୱନା କଲେ ତ ନୂତନା ଅମାପ ବେଦନା । ୪ ।
ରସାମନ୍ତ୍ରନା ଦଣ୍ଡ ନାଶ ଯିବ କି, ଶିବଙ୍କୁ ସେବା କରାଇବା ।
ରୁଚିର ମନ୍ଦାରହାର ନୈବେଦ୍ୟ ଦେଇ ଶିବାଙ୍କୁ ମନାଇବା । ରସିକା ।
ରାଧା ବାଧା ହିତ ପାଇଁକି ।
ରମାଙ୍କୁ ପୂଜିବା ରଞ୍ଜିବା ଅନେକ ଦେଇ ହେମପଦ୍ମ ମାଳିକି । ୫ ।
ରହିଛନ୍ତି ସଖୀ ଏହିପରି କରି ବିଚାର ନୈବେଦ୍ୟକୁ ପାଇ ।
ରୂପବନ୍ତୀ କାମସେନା ସେହିକାଳେ ପ୍ରବେଶ ହେଲା ତହିଁ ଯାଇ । ରସିକା ।

---

୨—ଘନସାର—କର୍ପୂର, ରାଜୀବନାଳ—ପଦ୍ମନାଡ଼ । ରତନ—ଶ୍ରେଷ୍ଠା ଶ୍ରୀରାଧାଙ୍କ । ଯତନ—ଭଲପାଇଁ । ଶତ ଶତଦଳ ତଳପ—ଅସଂଖ୍ୟ ପଦ୍ମପାଖୁଡ଼ାର ଶେଯ । ନୟନେ ଥକାଇ ପାଣି—ଆଖିରେ ଲୁହ ସମ୍ଭାଳି ନେଇ ।

୩—ରାମା—ସ୍ତ୍ରୀ । ଉଷୀର—ବେଣାଚେର । ବାତାୟନ-ବାଟ-ଫାଟକୁ ଝରକା କଣାକୁ । ଛାଟୁଛି—ବନ୍ଦ କରୁଛି । ସୁଲୋଚନା—ସ୍ତ୍ରୀ । ଅହିଭକ୍ଷ—ସାପର ଭକ୍ଷ । ବାତହତକୁ—ମଳୟ ପବନ ନାଶପାଇଁ (କାରଣ ସାପମାନେ ପବନ ପିଅନ୍ତି) । ରମ୍ୟପାଇଁ—ମନୋରଞ୍ଜନ ପାଇଁ । ରୁତବନ୍ତ ପରଭୃତକୁ—ବୋବାଉଥିବା କୋଇଲିକୁ । ଲଉଡ଼ି—ବାଡ଼ି । ଲ-ଗ୍ର ୨୨-୯ ଦେଖ ।

୪—ରସନିଧିରେ—ରସିକା ଶ୍ରୀରାଧାଙ୍କୁ । ରଜନୀଶମୁଖୀ—ଚନ୍ଦ୍ରମୁହିଁ । ରସଭବନେ—ରସକଥା ଭାବିବାରୁ । ଅଚେତନା—ଅଚେତା ହେଲା । ରହିତ—ବନ୍ଦ । ନୂତନ ଅମାପ ବେଦନା—ନବୀନା ଶ୍ରୀରାଧାଙ୍କର ବେଶୀ ପୀଡ଼ା ।

୫—ରସାମନ୍ତ୍ରନା ଦଣ୍ଡ—ପୃଥିବୀକୁ ମଣ୍ଡିଥିବା ଶ୍ରୀରାଧଙ୍କର ଦଶା । ରୁଚିର—ସୁନ୍ଦର । ଶିବାଙ୍କୁ—ଦୁର୍ଗାଙ୍କୁ । ରମାଙ୍କୁ—ମହାଲକ୍ଷ୍ମୀଙ୍କୁ । ହେମ—ସୁନା ।

ରସାଣସ୍ତୁନ ଦେଖି ଘଟିଲେ ।
ରତ୍ତପତ୍ତ ବିନା ନବୀନା-ବେଦନା-କାରୀ କେ ଅବନୀ ମଣ୍ଡଳେ । ୬ ।
ରସରାଜ କାର୍ଯ୍ୟ କମଳଜ ଆଜ ସିଦ୍ଧ କରିବ କି ସତେବେଁ ।
ରଖି ଏ ଭାବନା ବୋଲଇ ଅଙ୍ଗନା, କି ବ୍ୟାଧି ରସନିଧି ଦେହେଁ । ରସିକା
ରୂପ ତ ଦିଶୁଛି ବିବର୍ଣ୍ଣ ।
ରତନାବେଣୀ ବିରହବେଶ ଦେଖି ଧଇର୍ଯ୍ୟ ମୋର ହେଲା ଚୂର୍ଣ୍ଣ । ୭ ।
ରାଜକୁମାରୀ ସୁକୁମାରୀ ହୋଇଲା ଅଲେଲା କଣେଶ୍ୱରତନ ।
ରସ ବାସ ବେଶ ହାସ ମାତ୍ର ରୀତ ଏଥି କାଳରେ ରସେ ମନ । ରସିକା
ରଞ୍ଜନ ନ ପାରିଲି କରି ।
ରହି ଏତେ ସହି କି କରୁଛ ଆଜ ବୋଲଅ ପରି ପ୍ରାଣପରି । ୮ ।
ରସିବ କିହାରେ ଯାହାରେ ତାହାରେ ଅଣାଇବାର କଉଁ ଚିତ୍ର ।
ରଥାଙ୍ଗଧର ପୁରନ୍ଦର କୁମାର ମାର ସୁର ତ ଅଳ୍ପ ମାତ୍ର । ରସିକା ।
ରସିଛି କାହାଠାରେ ମତ୍ତ ।
ରେକକଟି କଷ୍ଟୀ ହେବା ଦେଖି ଫାଟି ଯାଉଛି ଚନ୍ତାରେ ମୋ ଚିତ୍ତ । ୯ ।
ରଖିଛ ଅନ୍ତର ମୋତେ କରି ପର, ନ କହ କାହିଁକି ସଜନୀ ।
ରଜନୀ କାମିନୀକି ଦେଖୁନାହିଁ କି ସାନ୍ଦ୍ର ହରଇ ଚନ୍ଦ୍ର ଯେନି । ରସିକା ।
ରସଶାସ୍ତ୍ର-ଅବଗାହିନୀ ।
ରହିବ କି କରି ଧଇର୍ଯ୍ୟକୁ ଧରି ରସିକ ବିନା ରସିକିନୀ । ୧୦ ।

---

୬—ନବେଦ – ବୁଦ୍ଧିବଣା ହୋଇ । ବୁଯବନ୍ତ୍ରୀ—ଓଡ଼ିଆରେ 'ବଲ୍ଲୀ' ସ୍ଥାନରେ 'ବନ୍ତ୍ରୀ' ହୁଏ । ରସାଣସ୍ତୁନ—ଭୂଇଁରେ ଶୋଇବା । ରତ୍ତପତ୍ତ ବିନା —କନ୍ଦର୍ପ ଛଡ଼ା । ନବୀନ-ବେଦନା-କାରୀ—ନବଯୁବତୀ ଶ୍ରୀରାଧାଙ୍କର ପୀଡ଼ା ଦେବା ଲୋକ । ଅବନୀ—ପୃଥିବୀ ।

୭—ରସରାଜ କାର୍ଯ୍ୟ—ଶ୍ରୀକୃଷ୍ଣଙ୍କ କାମ । କମଳଜ—ବିଧାତା । ରଖି—କରି । ଅଙ୍ଗନା—ସ୍ତ୍ରୀ, ଦୂତୀ । ରସନିଧି ଦେହେଁ—ରସିକା ଶ୍ରୀରାଧାଙ୍କର ଶରୀରରେ । ରତନାବେଣୀ—ରତନରେ ଶରଧା ଥିବା ରାଧାଙ୍କର ।

୮—ଅଲେଲା—ଶେଳବସର, ସେରନ୍ଧ୍ରୀ । ରସ—ଶୃଙ୍ଗାରରେ । ବାସ—ଲୁଗାରେ । ମାତ୍ର ରୀତ—ଆସ୍ଥିର ବ୍ୟବହାରରେ । ରସିକାରଞ୍ଜନ—ଶ୍ରୀରାଧାଙ୍କର ମନ ରଞ୍ଜାଇବା ।

୯—କିହାରେ—କେଉଁରେ । ଯାହାରେ—ଯାହାଙ୍କୁ । ତାହାରେ—ତାହାଙ୍କୁ । ଚିତ୍ର—ଆଶ୍ଚର୍ଯ୍ୟ । ରଥାଙ୍ଗଧର—ଚକ୍ରଧର, ବିଷ୍ଣୁ । ପୁରନ୍ଦର—ଇନ୍ଦ୍ର । କୁମାର—କାର୍ତ୍ତିକେୟ । ମାର—କନ୍ଦର୍ପ । ସୁର—ଦେବତା । ରେକକଟି—ରେକାପରି ସରୁ କଟି ଶ୍ରୀରାଧା । କଷ୍ଟୀ—ଦୁଃଖିନୀ ।

ଋଷିରମଣୀ ରସିଲେଟି ଚନ୍ଦ୍ରଙ୍କୁ ସାରସୁନ୍ଦର ଦେଖିକର ।
ରମାପତି ପଦ ତେଜି ଆସି ଗଙ୍ଗା ହୋଇଲେ ସାସ୍ତନୁ ନାରୀ । ରସିକା ।
ରତି କି ଏମନ୍ତ ପଦାର୍ଥ ।
ରସଜ୍ଞା ହେଲେ ଜାଣିବ ସିନା ତହୁଁ ନାହିଁଟି ଆଉ ପୁରୁଷାର୍ଥ । ।୧୧ ।
ରମ୍ୟଅଙ୍ଗୀ ଅଙ୍ଗୀକାର କଲେ ଭେଟାଇବ ଦବ୍ୟ ସାର ସୁନ୍ଦର ।
ରସରାଜ ଅଙ୍ଗସ୍ଥାନ ସେ ନାଗର ସୁଷମା-ସ୍ୱର୍ଗ-ପୁରନ୍ଦର । ରସିକା ।
ରଚନା ନୋହେ ସେ ବଧିରେ ।
ରସାମୃତ ମୂର୍ତ୍ତି ଏମନ୍ତ ପ୍ରତ୍ୟୟ ହେଉଛୁ ମୋହୋର ବୁଦ୍ଧିରେ । ୧୨ ।
ରୂପ ତୁଳନାକୁ ସେହୁ ସେ ତାହାକୁ ସମାନ ନାହିଁ ଆନ କେହୁ ।
ରାତିପତି ମୁଖଖଣ୍ଡିକ ଦେଖିଲେ ଧୂସର ଦଣେ ଲଜ ବହୁ । ରସିକା ।
ରସଧର ଦେଖି କାନ୍ତିକ ।
ରଖି ପାରଇ ନାହିଁ ନିଜ ଶରୀର ବହେ ଆନ ଆନ ରୀତିକ । ୧୩ ।
ରୁଚିର ଚରଣତଳକୁ ତୁଳକୁ ଜବା କରିବା ଅନୁଚିତ ।
ରଙ୍ଗ ରାଜୀବପତ୍ର ନେତ୍ର ବୋଇଲେ ପବିତ୍ର ହୋଇଯିବ ସେ ତ । ରସିକା ।
ରାଗ ଅନୁରାଗ ମିଶିବ ।
ରକ୍ତ ବ୍ୟକ୍ତ ଓଷ୍ଠ ପୃଷ୍ଠ ଉପମିତ ହେବାକୁ ଚେବେ ବା ଆସିବ । ୧୪ ।

---

୧୦—ଅନ୍ତର—ଭେଦ । ରଜନୀ—ରାତି ରୂପ ନାରୀ । ସାନ୍ଦ୍ର—ଶୋଭାରେ ଘୂର୍ଣ୍ଣ । ରସଶାସ୍ତ୍ର ଅବଗାହନୀ—କାମ ଶାସ୍ତ୍ର ଜାଣନ୍ତି ।

୧୧—ଋଷି ରମଣୀ—ବୃହସ୍ପତିଙ୍କ ସ୍ତ୍ରୀ ତାରା । ସାର—ଅତି ସୁନ୍ଦର । ତାରା ବୃହସ୍ପତିଙ୍କର ସ୍ତ୍ରୀ । ସେ ଚନ୍ଦ୍ରଙ୍କୁ ସୁନ୍ଦର ଦେଖି ତାଙ୍କଠାରେ ପ୍ରୀତି କରିଥିଲେ । ରମାପତି ପଦ—ବିଷ୍ଣୁଙ୍କର ପାଦ ବା ଆକାଶ । ଶାନ୍ତନୁ ନାରୀ—ଭୀଷ୍ମଙ୍କର ପିତା ଶାନ୍ତନୁ ରାଜାଙ୍କର ଭାର୍ଯ୍ୟା । ରସଜ୍ଞା—ରସ ଭୋଗ କଲେ । ପୁରୁଷାର୍ଥ—ଧର୍ମ୍ମ, ଅର୍ଥ, କାମ, ମୋକ୍ଷ ।

୧୨—ରମ୍ୟଅଙ୍ଗୀ—ସୁନ୍ଦରୀ ଶ୍ରୀରାଧା । ସେ ନାଗର ରସରାଜ—ରସମୟ । ଅଙ୍ଗସ୍ଥାନ—କନ୍ଦର୍ପ କିଂବା ଅଭ୍ୟାଡ଼ା କିଂବା ଅଙ୍ଗସ୍ଥାନ ପଢ଼ିଲେ ଦୋଷସ୍ଥାନ । ସୁଷମା-ସ୍ୱର୍ଗ-ପୁରନ୍ଦର—ସୌନ୍ଦର୍ଯ୍ୟ ସ୍ୱର୍ଗର ଇନ୍ଦ୍ର । ବଧିରେ—ବିଧାତା ଦ୍ୱାରା । ରସାମୃତ ମୂର୍ତ୍ତି—ରସ ରୂପ ଅମୃତରେ ଗଢ଼ା—ପ୍ରେମମୟ । ପ୍ରତ୍ୟୟ—ବୋଧହୁଏ ।

୧୩—ରାତିପତି—ଚନ୍ଦ୍ର । ମୁଖଖଣ୍ଡିକ—ମୁଖର ଶୋଭାକୁ । ଧୂସର—ମାଟିଆ । ରସଧର—ଜଳଧର (ମେଘ) । କାନ୍ତି—(ଶ୍ରୀକୃଷ୍ଣଙ୍କର) ଶରୀରର ବର୍ଣ୍ଣ । ଆନଆନ ରୀତି—ଅନେକ ଅନେକ ରୂପ ।

୧୪—ଜବା—ମନ୍ଦାର ଫୁଲ । ତୁଳକୁ—ତୁଳନା । ରଙ୍ଗ-ରାଜୀବପତ୍ର ନେତ୍ର—ରକ୍ତପଦ୍ମପତ୍ର ପରି ଓ ଲାଲବର୍ଣ୍ଣ ନୟନ । ରକ୍ତପଦ୍ମ ପବିତ୍ର ହେବ । ରାଗ

ଗାତ ମାତ ଶୋଭା ଶେଷ ଗଣେଶରେ ଶେଷ ତ ନୋହିବ କହିଲେ ।
ରସବତୀ ପ୍ରୀତ ପାଇଁ ଅନୁରୂପ ସେହି କେବଳ ରବତଳେ । ରସିକା ।
ରାହୁକୁ ସୁଧା-ଭୋଗ ପର ।
ରସନା ଆଜ ସାର୍ଥ ହେଲା ମୋହୋର ତା ଶୋଭା-ଗାତ କହି କର ।୧୫।
ରାମାସଖୀଶ୍ରେଣୀ ଦୂତୀବାଣୀ ଶୁଣି ଆନନ୍ଦମନେ ପଚାରିଲେ ।
ରୁଭବ ସେ କ ମନୁଷ୍ୟ, କଉଁ ଦେଶୀ, ଜନମ କଉଁ ରାଜକୁଳେ । ରସିକା ।
ରସିକାକୁ ଯୋଗ୍ୟ ହେବ ନା ।
ରସଲତା-ଚିତ୍ତ-ଚାତକକୁ ଘନ-ଗର୍ଜନ ଶୁଣାଇଲୁ ସିନା । ୧୬ ।
ରାମଅନୁଜ ନନ୍ଦରାଜାନନ୍ଦନ ଜଗବନ୍ଦନ, ଦୂତୀ କହେ ।
ରଙ୍କ ରତନ ଆଚ୍ଛନ୍ନ ଯତନରେ କରାଇ ପାଇଲେ ଆଗ୍ରହେ । ରସିକା ।
ରଖି ସେବ ଧୀରେ ବଧିରେ ।
ରୁଷ୍ଟ କରି ରାଧା ଦୂତୀକି ବୋଇଲେ, ସବୁ ହୋଇପାରେ ବଧିରେ ।୧୭।
ରସା ଉଲଟିବ, କମଳ ଫୁଟିବ ଯଦ୍ୟପି ପର୍ବତ ଶିଖରେ ।
ରହିବ ବିରଞ୍ଚି ଆକାଶେ ସୁମନ, ମେରୁହିଁ ଚଳିବ ପ୍ରଖରେ । ରସିକା ।
ରବି ପଶ୍ଚିମେ ଉଦେ ହେଲେ ।
ରାଧା ପତିବ୍ରତା-ବ୍ରତ ଅଚଳ କେ ଟାଳିଲେ ଟଳେ ନାକ ତଳେ । ୧୮ ।

---

—ସ୍ନେହ । ଅନୁରାଗ—ପ୍ରେମ । ରକ୍ତବ୍ୟକ୍ତ—ଲାଲବର୍ଣ୍ଣ ହୋଇଥିବା । ଓଷ୍ଠପୃଷ୍ଠ—ଓଠର ଉପର । ଉପମିତ—ସଦୃଶ ।

୧୫—ଶେଷଗଣେଶରେ—ବାସୁକ ଓ ଗଣେଶଙ୍କଦ୍ୱାରା । ଶେଷ—ସମାପ୍ତ । ରସବତୀପ୍ରୀତପାଇଁ—ରସିକା ଶ୍ରୀରାଧାଙ୍କର ପ୍ରୀତ କରିବାକୁ । ଅନୁରୂପ—ଯୋଗ୍ୟ । ରବତଳେ—ପୃଥିବୀରେ । ରାହୁ ଅମର ହୋଇ ସୁଧା (ଅମୃତ) ଭୋଗ କଲା ପରି ଆଜ ମୋର ରସନା (ଜିଭ) ତା ଶୋଭା—ଗୀତ (ସେହି ଶ୍ରୀକୃଷ୍ଣଙ୍କର ସୌନ୍ଦର୍ଯ୍ୟ-ପ୍ରକାର) କହି କରି ସାର୍ଥ—ସଫଳ, ହେଲା ।

୧୬—ରାମା—ଶ୍ରୀରାଧାଙ୍କର । ସଖୀଶ୍ରେଣୀ—ସଖୀମାନେ । ରୁଭବ—ହେବତା । ରସଲତା—ରସମୟୀ ଶ୍ରୀରାଧାଙ୍କର । ଚିତ୍ତଚାତକକୁ—ମନରୂପ ଚାତକ ପକ୍ଷୀକୁ । ଘନ-ଗର୍ଜନ – ମେଘ ଘଡ଼ଘଡି ।

୧୭—ରାମ—ଅନୁଜ—ବଳଦେବଙ୍କର ସାନ ଭାଇ । ଯେପରି ରଙ୍କ ରତ୍ନ ପାଇଲେ ଯତ୍ନ ଓ ଆଗ୍ରହରେ ଆଚ୍ଛନ୍ନ କରେ—ଘୋଡ଼େଇ ରଖେ, ସେହିପରି ରସିକା ରାଧା ଶ୍ରୀକୃଷ୍ଣଙ୍କୁ ଧୀରେ (ମନରେ) ରଖି ବଧିପୂର୍ବକ ସେବା କର ରୁଷ୍ଟ—କ୍ରୋଧ, ପ୍ରକାଶ କରି ଦୂତୀକି କହିଲେ । ବଧିରେ—ଦୈବଦ୍ୱାରା ।

୧୮—ରସା—ପୃଥିବୀ । କମଳ—ପଦ୍ମ । ବିରଞ୍ଚି—ବିଧାତା । ରହିବ—ଗଢ଼ିବ, ଖୋଜିବ । ସୁମନ—ଫୁଲ । ପ୍ରଖରେ—ବେଗରେ । ରବି—ସୂର୍ଯ୍ୟ ।

ରହନା ମୋ ଆଗେ ଯା ଯା ବେଗେ ବେଗେ, ପାପ ଘୋଟିବ ତୋ ବଚନେ ।
ରାମନୟନା ରାମ ରାମ ସୁମରି ଅଙ୍ଗୁଳି ଦେଲେ ଦୁଇ କାନେ । ରସିକା ।
ରୋଷ ଶୁଣି ଦୂତୀ ଚଳିଲା ।
ରୁରୁନୟନାର ଧଇର୍ଯ୍ୟ ଗାମ୍ଭୀର୍ଯ୍ୟ ବ୍ୟାଜ ଗୁଣ ବୋଲି ଜାଣିଲା । ୧୯ ।
ଋକ ସାମ ଯଜୁ ଅଥର୍ବ ବେଦରେ ମହିମା ଯାର ଅଗୋଚର ।
ରସେଶ୍ୱରୀ ପ୍ରେମରସ ଇଚ୍ଛା କରି ଅଧୀର ବର୍ଦ୍ଧନ ତାହାର । ରସିକେ ।
ରାଧିକା ରାଗସାର ମୂର୍ତ୍ତି ।
ରହୁ ଅଭିମନ୍ୟୁ ସାମନ୍ତସିଂହାର ମତ ସେ ରସେ ହବା ରତ । ୨୦ ।

---

## ପଞ୍ଚବିଂଶ ଛାନ୍ଦ

## କୃଷ୍ଣଛାମୁରେ ଦୂତୀ କଥନ

ରାଗ—କୌଶିକ—ପ୍ରାନ୍ତାନୁପ୍ରାସ

ରସିକେ ଦୂତୀବଚନମ୍ବୁରୁ ଗୋବିନ୍ଦତନୁ ଅବଶ ହୋଇଲୀନ ।
ଦୂର ଦୁର୍ଲ୍ଲଭ ଦୁନ୍ଦୁଭି ଦୁ ପୂର୍ବାଦ୍ଧ ଭାଷାରେ ଆଶା ହୋଇଲୀନ । ସେହିକାଳକୁ
ଦୂତୀ ସେଠାକୁ ଅଇଲୀନ ।
ତା କଥନମୁଖ ଦେଖି ହରିହୃଦେ ଆନନ୍ଦଚନ୍ଦ୍ର ଉଇଁଲୀନ । ୧ ।

---

ଅସମ୍ଭବ ସମ୍ଭବ ହେବ କିନ୍ତୁ ରାଧାଙ୍କର ପତିବ୍ରତାବ୍ରତ ରୂପକ ପର୍ବତକୁ କେହି ଟାଳିଲେ ଢଳେ ମାତ୍ର ଟଳିବ ନାହିଁ ।

୧୯—ରାମନୟନା—ମୃଗନେତ୍ରୀ ଶ୍ରୀରାଧା । ଅଙ୍ଗୁଳି—ଆଙ୍ଗୁଠି । ରୋଷ—କ୍ରୋଧ । ରୁରୁନୟନାର—ମୃଗନେତ୍ରୀ ଶ୍ରୀରାଧାଙ୍କର । ଗାମ୍ଭୀର୍ଯ୍ୟ-ଗମ୍ଭୀରପଣିଆ । ବ୍ୟାଜ—ଛଳ ବା କପଟ ।

୨୦—ଯାର—ଯେଉଁ ଶ୍ରୀକୃଷ୍ଣଙ୍କର, ମହିମା ଗୁଣ ବେଦରେ ଅଗୋଚର ଅଟେ । ସେହି ଶ୍ରୀକୃଷ୍ଣଙ୍କର ରସେଶ୍ୱରୀ (ଶ୍ରୀରାଧାଙ୍କ) ପ୍ରେମରସ ଇଚ୍ଛାରେ । ଅଧୀର ବର୍ଦ୍ଧନ—ଅଧୈର୍ଯ୍ୟ ବଢ଼ୁଅଛି । ରାଧିକାଙ୍କର ରାଗସାର ମୂର୍ତ୍ତି—ପ୍ରେମମୟ ଦେହ । "ପ୍ରେମସନ୍ତତିଭିରେବ ନିର୍ମମେ ବେଧସା ତୁ ବୃଷଭାନୁନନ୍ଦିନୀମ୍" (ଉ.ନ.), ବା ରାଗସାରମୂର୍ତ୍ତି ଶ୍ରୀକୃଷ୍ଣ ।

---

୧—ତନୁ—ଶରୀର । ଦୁନ୍ଦୁଭି—ବାଦ୍ୟ । ଦୁ ପୂର୍ବାଦ୍ଧ ଭାଷାରେ—'ଦୁ' ଯେଉଁ ଶବ୍ଦର ମୂଳରେ ଅଛି । ଦୂତୀଠାରେ ଅଧିକ ମନ ଥିବାରୁ ସବୁବେଳେ ଦୁ ଦୁ କହୁଅଛନ୍ତି । କଥନ ମୁଖ—ମୁହଁକୁ କହିଲା ଭଳି । ଆନନ୍ଦଚନ୍ଦ୍ର—ହର୍ଷ ରୂପକଚନ୍ଦ୍ର ।

ଦୁଷ୍ଟ ରସେ ହସେ, ଭାଷେ ହେ ନାଗର ! ତୁମ୍ଭର ଶୁଭ ଦିଶିଲାନ ।
କଟାକ୍ଷଶରଚ୍ଛଳେ ଯତନେ ମଦନ କଦନ ଦେଇ ତ୍ରାସିଲାନ । ନବନାଗରୀ ।
ଶ୍ରୀଅଙ୍ଗେ ଦଶା ଦିଶିଲାନ ।
ହାସ ରସ ବେଶ ବାସ ଗ୍ରାସ ଆଶ ବିଷ ସମାନ ରସିଲାନ । ୨ ।
ପ୍ରସ୍ତୁର ଉପସ୍କର ଏତେ ବିସ୍ତର, ସରୁଁ ସାରସ ସରିଲାନ ।
ଦଳତଳପ ନାଳମାଳ ଦେବାର ପ୍ରିୟ କରି ଆଦରିଲାନ । ନବନାଗରୀ ।
ହା ହା ଶବ୍ଦ ଉଚ୍ଚାରିଲାନ ।
ଘନସାର ସାର-ସାରସଲପନା ସାର ହିତ ବିସ୍ତରିଲାନ । ୩ ।
ପ୍ରାତରଜନୀ ରଜନୀଶବଦନୀ ରଜନକରେ ଗଡ଼ିଲାନ ।
ଆବେଶେ ଏବେ ସେ ଅବଶେଅବେଶେଭୂରେ ପଣତ ପାଡ଼ିଲାନ । ନବନାଗରୀ
ଶୋକସାଗରେ ବୁଡ଼ିଲାନ ।
ଜାତବେଦ-ଜାତ-ଯାତନା, ଅତନୁ ସୁତନୁ ତନୁ ପୋଡ଼ିଲାନ । ୪ ।
ରଦେ ରଦବାସ ବାସବମୋହିନୀ ତ ମୋ ହିତ ପାଇଁ ଉଡ଼ିଲାନ ।
ଅନ୍ତର ଭିତର ଖ୍ୟାତ ଅନ୍ତରତର, ଆତୁର ପଙ୍କେ ସଡ଼ିଲାନ । ନବନାଗରୀ ।

---

୨—କଟାକ୍ଷଶରଚ୍ଛଳେ—ଯୁବତୀଶ୍ରେଷ୍ଠା ଶ୍ରୀରାଧାଙ୍କୁ । ଯତନେ—କୌଶଳରେ । ମଦନ—କନ୍ଦର୍ପ । କଦନ—ପୀଡ଼ା ତ୍ରାସିଲାନ—ଡରାଇଲାଣି । ଦଶା—ମନଃସଙ୍ଗାଦି ମୂର୍ଚ୍ଛା ପର୍ଯ୍ୟନ୍ତ କନ୍ଦର୍ପର ଦଶଟି ଦଶା । ବାସ—ବସ୍ତ୍ର ବା ସୁଗନ୍ଧ । ଗ୍ରାସ—ଭୋଜନକୁ । ବିଷସମାନ—ବିଷପରି, ଅରୁଚି ଅବସ୍ଥା । ରସିଲାନ—ମଣିଲାଣି ।

୩—ଉପସ୍କର—ଶୀତଳ ଉପକରଣ । ପ୍ରସ୍ତୁର—ବିଧାନ ହେଉଅଛୁ । ଏତେ—ଏହା ଭାବ । ସରୁ—ପୋଖରୀରୁ । ସାରସ—ପଦ୍ମ । ଦଳତଳପ—ପଦ୍ମପାଖୁଡ଼ା ଶେଯ । ନାଳମାଳ—ପଦ୍ମନାଡ଼ର ମାଳା । ପ୍ରିୟ—ସୁଖକର; ଭଲ । ଘନସାର—କର୍ପୂରକୁ । ସାର-ସାରସଲପନା—ଉତ୍କୃଷ୍ଟ ପଦ୍ମମୁଖୀ—ଶ୍ରୀରାଧା । ସାର ହିତ—ଅଧିକ ଉପକାରୀ ।

୪—ପ୍ରାତରଜନୀ—ଦିନରାତି । ରଜନୀଶବଦନୀ—ଚନ୍ଦ୍ରମୁଖୀ—ଚନ୍ଦ୍ରମୁଖୀ—ଶ୍ରୀରାଧା । ରଜନକରେ—ଧୂଳିସମୂହରେ । ଆବେଶେ—ଶୃଙ୍ଗାର ଭାବରେ ମଜ୍ଜିବାରୁ । ଅବଶେ—ଅଶକ୍ତ ଭାବରୁ । ଅବେଶେ—ବେଶ ନ ହୋଇ । ଭୂରେ—ଭୂଇଁରେ । ଜାତବେଦ-ଜାତ-ଯାତନା—ଅଗ୍ନିରେ ଦଗ୍ଧ ହେଲେ ଯେପରି ପୀଡ଼ା ସେପରି ପୀଡ଼ା । ଅତନୁ—କନ୍ଦର୍ପ । ସୁତନୁତନୁ—ସୁନ୍ଦରୀ ଶ୍ରୀରାଧାଙ୍କ ଦେହକୁ ।

୫—ରଦେ—ଦାନ୍ତଦ୍ୱାରା । ରଦବାସ—ଓଠକୁ । ବାସବମୋହିନୀ—ଇନ୍ଦ୍ର ମୋହନକାରୀ ଶ୍ରୀରାଧା । ଅନ୍ତରଭିତର—ମନଭିତରେ । ଖ୍ୟାତ—ଉକ୍ତ । ଅନ୍ତରତର-

ବରନାଗର ଲେଉଡ଼ିଲେନି ।
ଲଜ ଧଇର୍ଯ୍ୟ କୁଳ ଶୀଳ ବିବେକ ଚଢ଼ାଇ ବେକ ମୋଡ଼ିଲେନି । ୫ ।
ଅନେକ-ଦହକ-କନକଗଉରି-ତନୁ ଧୂସର ଦିଶିଲେନି ।
ରସାଳସା ରସା ଦରପଣ କରି ଦରପଣରୁ ରସିଲେନି । ନବନାଗରି ।
ଶିବ ଶିବ ତ ଘୋଟିଲେନି ।
ଗିରିଦରି ସରି ପୁରିକ ବିସ୍ମରି କରଜେ ମହୀ ଚଟିଲେନି । ୬ ।
ରମ୍ୟ ଆରାମ ରମ୍ୟନେତ୍ରୀ ସକାଶୁଁ ମାଳୀ ଖଳି ତ କାଟିଲେନି ।
ସଜ-ନିକର ସଜନୀଙ୍କର କର ଆଦର ଛାର ଛୁଟିଲେନି । ନବନାଗରି ।
ଖଣ୍ଡି ଗୋପେ ଚହଟିଲେନି ।
ମନ୍ଦ ନଣନ୍ଦ ଦ୍ୱନ୍ଦ୍ୱ କରି ଫଟୁରୁଁ ବ୍ୟାଧି ବିଧିରେ ବଟିଲେନି । ୭ ।
ତା ମନା କାମନା ଶ୍ୟାମା ବେଦନାରୁ ସାମବେଦ ନା ଲୁଚିଲେନି ।
କଞ୍ଜ-ଖଞ୍ଜନଗଞ୍ଜନ ନୟନରୁ ନୀର ନିରତେ ମୁଞ୍ଚିଲେନି । ନବନାଗରି ।
ଗଣ୍ଡ ପାଣିରେ ସଞ୍ଚିଲେନି ।
ଚମ୍ପାଗାତ୍ରୀ ସବୁରାତ୍ରୀ ଶିବରାତି କରି କାଳକୁ ବଞ୍ଚିଲେନି । ୮ ।

---

ଖୁବ୍ ବେଶୀ । ଆତୁରପଙ୍କେ—ବ୍ୟାକୁଳତାରୂପକ ପଙ୍କରେ । ବରନାଗର—ଉତ୍କୃଷ୍ଟ ବିଳାସୀ ପୁରୁଷ । କୁଳ—ବଂଶ । ଶୀଳ—ଚରିତ୍ର । ବିବେକ—ବିଚାରଶକ୍ତି । ଏ ସମସ୍ତେ ଜାଣି ଚଢ଼ାଇ ( ପକ୍ଷୀ ) ହେଲେଣି, ସେମାନଙ୍କର ବେକ ମୋଡ଼ିଲଣି ଅର୍ଥାତ୍ ଏହାକୁ ସବୁ ଛାଡ଼ିଲଣି ।

୬—ଅନେକ ଦହକ-କନକଗଉରି—ଅନେକ ଥର ଆଉଟା ହେଲା ସୁନା ପରି ଗୋରି ଶ୍ରୀରାଧାଙ୍କର । ତନୁ—ଦେହ । ଧୂସର—ପାଉଁଶିଆ । ରସାଳସା—ରସପୂର୍ଣ୍ଣା ଶ୍ରୀରାଧା । ରସା—ପୃଥିବୀକୁ । ଦରପଣ କରି—ଗୃହି କରି ଅର୍ଥାତ୍ ମୁହଁ ପୋଛି । ଦରପଣରୁ—ଭୟହେତୁରୁ । ଗିରିଦରି—ପର୍ବତ ଗୁମ୍ଫା । ପୁରିକ—ଘରକୁ । କରଜେ—ନଖରେ । ମହୀ—ଭୂମିକୁ ଚଷିଲଣି ଅର୍ଥାତ୍ ଭୂଇଁରେ ଗାର କାଟିଲଣି ।

୭—ରମ୍ୟ ଆରାମ—ମନୋହର ବଗିଚାକୁ । ରମ୍ୟନେତ୍ରୀ—ମୃଗନୟନା ଶ୍ରୀରାଧାଙ୍କପାଇଁ । ମାଳୀ ଖଳିତ—ଚମତ୍କୃତ ହୋଇ, କାଟିଲଣି । ସଜନିକର—ଅଳଙ୍କାର ସବୁ । ଛାର ସଜନୀଙ୍କର—ସଖୀମାନଙ୍କର । କର ଆଦର—ହାତରେ ଧରିବା ଆଗ୍ରହ ଛୁଟିଲଣି । ଗୋପେ—ଗୋପପୁରେ । ମନ୍ଦ—ଦୁଷ୍ଟ । ଦ୍ୱନ୍ଦ୍ୱ—କଳହ । ବ୍ୟାଧିବିଧିରେ—ରୋଗପ୍ରକାରରେ । ବଟିଲେନି—ଭଣ୍ଡିଲଣି ।

୮—ତା କାମନା ମନା—ଇଚ୍ଛାବନ୍ଦ, ହେବାରୁ । ଶ୍ୟାମାବେଦନାରୁ—ଶ୍ରୀରାଧାଙ୍କର କଷ୍ଟ ହେବାରୁ । ସାମବେଦ—ଗାନ, ର ନା—ନାମ ଲୁଚିଲଣି । ( ରାଧାଙ୍କର ନାମ ଥିଲା—ଗାନ୍ଧର୍ବିକା ) ତା କାମନା—ସେହି ଗାନ ଇଚ୍ଛା, ମନା ହେଲଣି । କଞ୍ଜ-ଖଞ୍ଜନଗଞ୍ଜନ ନୟନରୁ—ପଦ୍ମ ଓ ଗୁଣ୍ଡୁକାଳିକା ପକ୍ଷୀ ଜିଣା

କଳକଣ୍ଠକଣ୍ଠୀ ପଣତରେ ଗଣ୍ଡି କି ମମତାରେ ପାଡ଼ିଲାଣି ।
ଦୁର୍ଜନ ଜନ କୁବଚନ ରଚନ ଶରକୁ ଶିର ଆଡ଼ିଲାଣି । ନବନାଗରୀ ।
ମନ—ତାପରେ ପଡ଼ିଲାଣି ।
ନତ ପ୍ରାନ୍ତ ପ୍ରୀତିବତୀ ମୂର୍ତ୍ତି ଲତା ଝରନ୍ତ ପତ୍ର ଝଡ଼ିଲାଣି । ୯ ।
ସଞ୍ଚ ଘଞ୍ଚ ଉଚ୍ଚ କୁଚପରେ ଧୀରେ ମୁଖଚନ୍ଦ୍ରକୁ ଥୋଇଲାଣି ।
ବନଜନୟନୁଁ ବନ ଘନ ଘନ ମୁଞ୍ଚି ପତ୍ରାଳି ଧୋଇଲାଣି । ନବନାଗରୀ ।
ସଖୀ ପଣତ ଧଇଲାଣି ।
"ଯିବ ଜୀବ ଜୀବଧବନବରକୁ, ମୋ ଆଶା ଛାଡ଼" ବୋଇଲାଣି । ୧୦ ।
କାଳୀକି ବଳି ଦେବାରୁ ଛେଳିଆଳି ମେଣ୍ଢାଏଁ ଶେଷ ହୋଇଲାଣି ।
ମାଳୀ ଆଳି କରେ ଚମ୍ପାମାଳ ଦେଇ ଶୂଳୀ ସେବା କରାଇଲାଣି । ନବନାଗରୀ
ସବୁ ବିଧି କରାଇଲାଣି ।
ଆଶା ଭରସା ରସା ଶୋଷା ନ ଲଭି କର କପାଳେ ମାଇଲାଣି । ୧୧ ।

---

ଆଖିରୁ । ନୀର—ଜଳ ଅର୍ଥାତ୍ ଲୁହ । ନିରନ୍ତେ—ସର୍ବଦା । ଗଣ୍ଡ—ଗାଲ । ପାଣିରେ—ହାତରେ । ସମ୍ଭାଳିଲାଣି—ରଖିଲାଣି । ଚମ୍ପାଗାତ୍ରୀ—ଚମ୍ପାବର୍ଣ୍ଣା-ଶ୍ରୀରାଧା । ଶିବରାତ୍ରି—ଜାଗରଣ କର ।

୯—କଳକଣ୍ଠକଣ୍ଠୀ—କୋକିଳଭାଷିଣୀ—ଶ୍ରୀରାଧା । ମମତାରେ—ଆଗ୍ରହରେ । ଗଣ୍ଡି ପାଡ଼ିଲାଣି—ଗଣ୍ଡି ପକାଇଲାଣି । ଦୁର୍ଜ୍ଜନ ଜନ—ଦୁଷ୍ଟଲୋକ-ମାନଙ୍କର । କୁବଚନ ରଚନ ଶରକୁ—ନିନ୍ଦାବାକ୍ୟ ପ୍ରକାଶରୂପକ କାଣ୍ଡକୁ । ଶିର—ମୁଣ୍ଡ । ଆଡ଼ିଲାଣି—ଦେଲାଣି । ମନତାପ—ମନୋଦୁଃଖ । ନତପ୍ରାନ୍ତ—ପ୍ରାନ୍ତନତ । ପ୍ରୀତିବତୀ—ପ୍ରୀତିଯୁକ୍ତା ଶ୍ରୀରାଧାଙ୍କର । ମୂର୍ତ୍ତିଲତା—ଦେହରୂପକ ଲତାର । ଝରନ୍ତପତ୍ର—କାନ୍ତିରୂପକ ପତ୍ର ।

୧୦—ସଞ୍ଚ—ସୁନ୍ଦର । ଘଞ୍ଚ—ଘନ । କୁଚ ଉପରେ—ସ୍ତନ ଉପରେ । ଧୀରେ—ସ୍ଥିରଭାବରେ । ମୁଖଚନ୍ଦ୍ରକୁ—ମୁହଁରୂପକ ଚନ୍ଦ୍ରକୁ । ଥୋଇଲାଣି ଅର୍ଥାତ୍ ମୁହଁ ପୋତିଲାଣି । ବନଜନୟନୁଁ—ପଦ୍ମନେତ୍ରରୁ । ବନ—ଜଳ ଅର୍ଥାତ୍ ଲୁହ । ଘନଘନ—ଅବିରଳ । ମୁଞ୍ଚି—ତ୍ୟାଗକରି, ବୁହାଇ । ପତ୍ରାଳି—ଚନ୍ଦନପାଟି । ଜୀବ—ପ୍ରାଣ । ଜୀବଧବନବରକୁ—ଯମପୁରକୁ ।

୧୧—କାଳୀକି—କାଳୀଠାକୁରାଣୀଙ୍କୁ । ଛେଳିଆଳି—ଛେଳିସବୁ । ମେଷ—ମେଣ୍ଢା । ମାଳୀ ଆଳି କରେ—ମାଳିମାନଙ୍କ ହାତରେ । ଶୂଳୀ—ମହାଦେବ । ରସାଶୋଷା—ପୃଥିବୀ ଶୋଷକାରିଣୀ ଶ୍ରୀରାଧା । କପାଳେ—କପାଳରେ, ଲଲାଟରେ । କର—ହାତ ।

ଏ ଅନୁମାନୁ ଯେଣୁ ଅଛି, ଅତନୁ କୁସୁମଧନୁ ଆସ୍ଫାଳନ ।
ଧରମ-କରମ-ଭରମ-ମରମ-ପୋଡ଼ା ଶରହିଁ ଯୋଚାଳନ । ନବନାଗରୀ ।
ଏଣୁ ତନୁ ରୋମାଞ୍ଚାଳନ ।
ପ୍ରକଟ ଲମ୍ପଟ ହୃଦସ୍ଫୁଟତଟରେ ପଟ ପକାଇ ବଞ୍ଚାଳନ । ୧୨ ।
ଅବଳା ଦୁର୍ବଳା କଳାହୀନ କଳାନିଧିବିଧିରୁ ବଳାଳନ ।
ବାଣୀଗୁଣୀକଣୀବଚନା-ଝିଣ୍ଟିଆ ବଳା ହେବାକୁ ଭଳାଳନ । ନବନାଗରୀ ।
ଗରିମା ପଣ ଟଳାଳନ ।
କେ କେତେକ ଗରୁ, ଗୁରୁ ଊରୁ ଖରୁ ପ୍ରେମ ଧର୍ମକୁ ତୁଳାଳନ ।
କଳାବର୍ଣ୍ଣ କଳା କଳାକରେ କଳା ବଟନ ଚନ୍ଦ ଲିହିଳନ ।
ତମ ତମାଳ ଖ-ତମାଳମାଳକୁ ଲାଜସେ ଗୃହିଁ ରହିଲନ । ନବନାଗରୀ ।
ନୀଳବାସହିଁ ବହିଲନ ।
ଅମଳ କଳାକମଳ ଗୃହିଁ ନେତ୍ରେ ନୀର ଥକାଇ ରହିଲନ । ୧୪ ।
ଋତୁଉଦ୍ଦୀପନମାନ ମାନସରୁ ସବୁ ତାର ଛଡ଼ାଇଲନ ।
ଦଣ୍ଡ ଦଣ୍ଡକେ ଉଦ୍ଦଣ୍ଡ ଫୁଲକାଣ୍ଡଦଣ୍ଡ ସୁଖ ଏଡ଼ାଇଲନ । ନବନାଗରୀ ।

---

୧୨—ଅତନୁ—କନ୍ଦର୍ପ । କୁସୁମଧନୁ—ଫୁଲଧନୁ । ଆସ୍ଫାଳନ—ଓଟାରିଲେଣି । ଧରମ କରମ ଭରମ ମରମ ପୋଡ଼ା—ଧର୍ମ କର୍ମ ସମ୍ଭ୍ରମ ମର୍ମକୁ ପୋଡ଼ି ଦେଉଥିବା । ଶର—କାଣ୍ଡ । ତନୁ—ଦେହ । ରୋମାଞ୍ଚାଳଣି—ରୋମଟାଙ୍କୁରିଲେଣି ! ପ୍ରକଟ ଲମ୍ପଟ—ଅତି ଆସକ୍ତ । ହୃଦସ୍ଫୁଟତଟରେ—ଗ୍ରୀବା ଉପରେ । ପଟ—ଶ୍ରୀକୃଷ୍ଣ ଚିତ୍ରପଟ ।

୧୩—ଅବଳା—ସ୍ତ୍ରୀ ଶ୍ରୀରାଧା । ଦୁର୍ବଳା—ବଳହୀନା । କଳାହୀନ—କ୍ଷୀଣ । କଳାନିଧିବିଧିରୁ—ଚନ୍ଦ୍ରପ୍ରକାରରୁ, ଅର୍ଥାତ୍ ବେଶୀ ସରୁ ହେଲଣି । ବାଣୀଗୁଣୀକଣୀ ବଚନା—ତାରର ସ୍ୱରକୁ ଜିଣୁଥିବା କଥା ଯେ କହେ—ସେହି ଶ୍ରୀରାଧା । (କୃଶତା କାମଦଶା) ଏତେ ସରୁ ହେଲଣି, ଝିଣ୍ଟିଆ ବଳା ହେଲଣି । ଗରିମାପଣ—ଗୌରବ, ଟେକ । ଖରୁ—ତପସ୍ୱିନୀ—ଶ୍ରୀରାଧା । ପ୍ରେମ ଓ ଧର୍ମ ମଧ୍ୟରେ କେ କେତେକ ଉରୁ ଗରୁ (କିଏ ବେଶୀ ବଡ଼) ତାହା ତୁଳାଳଣି ।

୧୪—କଳା କଳାକରେ—ଅଳ୍ପ ଅଳ୍ପ କାଳିଆ ରଙ୍ଗରେ—କଜ୍ଜଳାଦିରେ । କଳାବର୍ଣ୍ଣ ଚିତ୍ର—କୃଷ୍ଣବର୍ଣ୍ଣ ସୁନ୍ଦର ଚନ୍ଦ । ଲିହିଳନ—ଲେଖିଲଣି । ତମ—ଅନ୍ଧକାର । ତମାଳ—ଗଛ । ଖ-ତମାଳମାଳକୁ—ମେଘ-ମାଳାକୁ । ଲାଜସେ—ଲୋଭରେ । ନୀଳବାସ—କଳାଶାଢ଼ୀ । ଅମଳ କଳା କମଳ—ନିର୍ମଳ ନୀଳପଦ୍ମ । ନେତ୍ରେ—ଆଖିରେ । ନୀର—ଜଳ ଅର୍ଥାତ୍ ଲୁହ । (ସଙ୍କଳ୍ପାଖ୍ୟ ଦାମଦଶା) ଥକାଇ—ଛଳ ଛଳ କରି ।

୧୫—ଋତୁଉଦ୍ଦୀପନ—ବସନ୍ତ ପ୍ରଭୃତି ଋତୁମାନଙ୍କରେ କୋକିଳ ପ୍ରଭୃତି ମନରେ କାମଭାବ ଜନ୍ମାଇବା ବିଷୟମାନ । ତାହାଙ୍କର ମାନସରୁ ( ମନରୁ )

ରସେ ମନ ବୁଡ଼ାଇଲ୍ଲନ ।

କି ବସ୍ତୁର-ଗୁଣଅଙ୍କ-ମଧ୍ୟା ତବ ନାମେ ଶାସ୍ତ୍ର ପଢ଼ାଇଲ୍ଲନ । ୧୫ ।

ମୁକୁରକୁ ଗ୍ଲହ୍ନି ବିକାର ବଦନେ ପୂରି ଚୁମ୍ବ ଉପୁଜିଲ୍ଲନ ।

ଗୁଣିତିଳକ ତିଳକ ତିଳକରେ ଆଦର ଏଣୁ ତେଜିଲ୍ଲନ । ନବନାଗରୀ ।

ମନ ପ୍ରେମରେ ମଜ୍ଜିଲ୍ଲନ ।

ଭୁନ ଭୁନ କରି କି ମନ୍ତ୍ରର ତରଳାକ୍ଷୀ ଏଥର ଭଜିଲନ । ୧୬ ।

ଗଣେଶ ଚତୁର୍ଥୀତିଥି ଚନ୍ଦ୍ରାଦର ସର୍ବଦା ଏବେ ସେ କଲ୍ଲନ ।

ସତ୍ତ ଅସତ୍ତ ମଣିଲ୍ଲନ ।

ଚଢ଼କ ପିକ ଡାକ ମଣି କାକକୁ କୁନ୍ଦଦନ୍ତୀ ଗାଳି ଦେଲ୍ଲନ । ନବନାଗରୀ ।

ଧନକୁ ଧନ ଧାନ ଧାନ କଲ୍ଲରୁଁ ଅବକାଶ ନ ରହିଲ୍ଲନ । ୧୭ ।

ଲଜ ବ୍ୟାଜ ଧୈର୍ଯ୍ୟ ଗାମ୍ଭୀର୍ଯ୍ୟ କେବଳ ପ୍ରବଳା ବଳୁଁ ବଳିଲ୍ଲନ ।

ଏ ଯେନ ମଣୁଛୁ ଅନ୍ତର ଭିତର ହାରି ବାନ୍ଧକ ଝାଳିଲ୍ଲନ । ନବନାଗରୀ ।

ମୋ ବୋଲନ୍ତି ନ ପାଳିଲ୍ଲନ ।

ନ ଜାଣି ଧୃତି ଆତୁର ରଣେ ପୁଣି କେ କାହା ବଳ ଟାଳିଲ୍ଲନ । ୧୮ ।

---

ମାନ ( ଅଭିମାନ ) ସବୁ ଛଡ଼ାଇଲଣି । ଦଣ୍ଡ ଦଣ୍ଡକେ—ପ୍ରତି ମୂହୂର୍ତ୍ତିରେ । ଉଦଣ୍ଡ ଫୁଲକାଣ୍ଡଦଣ୍ଡ—କନ୍ଦର୍ପର ବେଶୀ ପୀଡ଼ା କିବା ଉଦ୍ଧତ କନ୍ଦର୍ପ ପୀଡ଼ା । ଗୁଣଅଙ୍କ—ମଧ୍ୟା— ୪' ଏହି ଅଙ୍କର ମଝିପରି ଅତି ସରୁ ଅଣ୍ଟା ଯାହାର ।

୧୬—ମୁକୁରକୁ—ଦର୍ପଣକୁ । ବିକାର—କନ୍ଦର୍ପ ବିକାର ସୀତ୍କାର ପ୍ରଭୃତି । ବଦନେ—ମୁଖରେ । ପୂରି—ପୂର୍ଣ୍ଣ ହୋଇ । ଚୁମ୍ବ—ଚୁମ୍ବନସ୍ୱର । ଗୁଣିତିଳକ—ଗୁଣବତୀଶ୍ରେଷ୍ଠା—ଶ୍ରୀରାଧା । ତିଳକ ତିଳକରେ—ଅଳ୍ପକଟତା ଯେନବାରେ । ତରଳାକ୍ଷୀ—ଚଞ୍ଚଳନେତ୍ରୀ—ଶ୍ରୀରାଧା ।

୧୭—ଗଣେଶ ଚତୁର୍ଥୀତିଥି ଚନ୍ଦ୍ରାଦର—ହରିତାଳିକା ଚନ୍ଦ୍ରଠାରେ ଆଦର କରିବା ଅର୍ଥାତ୍ ଚନ୍ଦ୍ରକୁ ନ ଦେଖିବା । ହରିତାଳିକା ଚନ୍ଦ୍ର ଦେଖିଲେ ପାପ ହୁଏ ଓ ଅପବାଦ ମିଳେ ବୋଲି ସ୍ମୃତି ପ୍ରସିଦ୍ଧ ଅଛି ।

ପଞ୍ଚାନନଗତେ ଭାନୌ ପକ୍ଷୟୋରୁଭୟୋରପି,
ଚତୁର୍ଥ୍ୟାମୁଦିତଶ୍ଚନ୍ଦ୍ରୋ ନେକ୍ଷିତବ୍ୟଃ କଦାଚନ ।

ପିକ—କୋଇଲିର । ଚଢ଼କ—ଚକ୍ର । ଅସତ୍ତ—ଶତ୍ରୁ । ଧାନଧାନ—ଅତି ଦୁଃଖିତ । ଅବକାଶ—ଅବସର ।

୧୮—ବ୍ୟାଜ ( କପଟ ଛଳନା ) । ଧୈର୍ଯ୍ୟ—ଧୀରପଣିଆ । ଗାମ୍ଭୀର୍ଯ୍ୟ—ଗମ୍ଭୀରପଣ । କେବଳ ପ୍ରବଳା ବଳୁ ( ରାଧାଙ୍କ ବଳରୁ ) ବଳିଲ୍ଲନ ( ବେଶୀ ହେଲଣି ) । ଏହି ହେତୁରୁ ମୁଁ ମଣୁଅଛି ନିଜ ମନଭିତର ହାରି ବାନ୍ଧି ( ବନ୍ଧ ) ଝାଳିଲଣି କି, ଅର୍ଥାତ୍ ମନକୁ କଠିନ କଲଣି । ଧୃତି ( ଧୈର୍ଯ୍ୟ ) ଆତୁର

ଶୁଣି ଏଣୀକ୍ଷଣୀଶନ୍ତ "ମର ମର" ହରି ମୁଖଁ ଉଚ୍ଚରିଲାନ ।
ବଗୃହ ପଗୃହିଲେ ମୋହୋ ପାଇଁକ ସତେ ଏତେ ଆଦରିଲାନ । ନବନାଗରୀ
ସତେ କାମକୁ ଡରିଲାନ ।
ଦୂତୀ କହେ ତାର ଆରମ୍ଭ ଅପାର ଅଥଯ୍ୟେ ତନୁ ଥରିଲାନ । ୧୯ ।
ମହୀମୋହନୀ ମୋହିତ ମୋ ହୃତରେ ସତେ ଦଇବ ବହିଲାନ ।
ଭଷି ଭସିଗଲେ ହରି ହରିଣାକ୍ଷୀ ପ୍ରାପ୍ତିକ ଆଶ ରହିଲାନ । ନବନାଗରୀ ।
ଭାବ ହୃଦସ୍ଥ ଦହିଲାନ ।
ତାଙ୍କ ଦୁଖେ ଦୁଖୀ ହୋଇ ଅଭିମନ୍ୟୁ ନୟନୁଁ ଲୁଅ ବହିଲାନ । ୨୦ ।

---

## ଷଷ୍ଠବିଂଶ ଛାନ୍ଦ

ସୂକ୍ଷ୍ମାଳଙ୍କାର । ଦୂତୀକଥନ ।

ରାଗ ଶଙ୍କରାଭରଣ

ଏ ଉତ୍ତରୁ ଶୁଣ ହେ ରସିକେ ଦେଇ ମନ ।
ଦୂତୀକି ପୁଚ୍ଛନ୍ତି ପୁଣି ଉଚ୍ଛନ୍ନେ ମୋହନ ।
କହ କହ ବେଗ କରି । ଭେଟିଲବେଳେ କି କରୁଥିଲା ସେ କିଶୋରୀ ।୧।
ତୁ କି କହିଲୁ କହିଲେ କି କି ସଖୀମାନେ ।
ତା ଶୁଣି କି କି ବିକାର ହେଲା କେଉଁସ୍ଥାନେ ।
ସେ ତ ଅଲେଖା ଛଇଳା । କଉଁ କଥାରୁ କି ଭଙ୍ଗୀ କାହିଁକି ଆଣିଲା ।୨।

---

( ବ୍ୟାକୁଳତା ) ଏ ଦୁହେଁ ରଣେ ( ପରସ୍ପର ଯୁଦ୍ଧରେ ) କିଏ କାହାକୁ ବଳି ପଡ଼ିଲାଣି ଜାଣି ହେଉ ନାହିଁ ।

୧୯—ଏଣୀକ୍ଷଣୀ—ମୃଗନୟନା ଶ୍ରୀରାଧାଙ୍କର । ହରି—ଶ୍ରୀକୃଷ୍ଣ । ଆରମ୍ଭ—ଯୋଗାଡ଼, ଉଦ୍ୟମ । ଅପାର—ଅସୀମ । ତନୁ—ଦେହ ।

୨୦—ମହୀମୋହନୀ—ପୃଥିବୀ ମୋହନକାରିଣୀ ଶ୍ରୀରାଧା । ମୋହିତ ( ମୁଗ୍ଧ କାମରେ ) ହୋଇଥିବାର ଦୈବ କଲଣି । ହରି—ଶ୍ରୀକୃଷ୍ଣ । ହରିଣାକ୍ଷୀ ପ୍ରାପ୍ତିକ—ମୃଗନେତ୍ରା ଶ୍ରୀରାଧାଙ୍କୁ ପାଇବାକୁ । ଭସି—କହି; ରସରେ ଭସିଗଲେ । ଭାବ—ଶୃଙ୍ଗାର ଭାବ । ଲୁଅ—ଲୁହ ।

---

୧—ଉଚ୍ଛନ୍ନେ—ଉତ୍କଣ୍ଠାରେ । ମୋହନ ଶ୍ରୀକୃଷ୍ଣ ।

୩—ଗରୁଁ—ପୂର୍ବରୁ । ଗତାଗତ ସ୍ଥିତ—ଯିବା ଆସିବା ବ୍ୟବହାର । ଅଭିମନ୍ୟୁ ସେନ ପୁରେ—ରାଧାଙ୍କ ସ୍ୱାମୀ ଚନ୍ଦ୍ରସେଣା ଘରେ ।

ଦୂତିକା ହସି ଭାଷିଲା, ଶୁଣ ହେ ନାଗର ।
ଗତୁଁ ଗତାଗତଖିନ୍ନ ଥିଲ ତ ମୋ ହୋରି ।
ତେଣୁ ଗଲ ନଣନ୍ଦଙ୍କରେ । ପ୍ରବେଶ ହୋଇଲ ଅଭିମନ୍ୟୁସେନ-ପୁରେ । ୩ ।

ଉପଗୃହର ପ୍ରହର ସଜନୀ କରୁଛନ୍ତି ।
ଶତଦଳଦଳେ ଗୁଣୀମଣି ଶୋଇଛନ୍ତି ।
ବ୍ୟସ୍ତଦଶୁଛି ଏସନ । ନୀଳାମଣ୍ଡିରେ ଦ୍ୱିଜସ୍ୱାଶଣୀ କି ପତନ । ୪ ।

କି କଷଟି କଷା ବାରବାନ ସୁନାଗାର ।
ଫିଟି ଗଣ୍ଠି ରତନ ପତନ ଦରକାର ।
ଏତେ ବପଊିରେ ଭାତ । ଶାଣଶାର୍ଣ୍ଣି ମାରାଗ ପରାପ୍ରେ ଦଶେ ଜ୍ୟୋତ । ୫ ।

ପଡ଼ିଛି ପୃଷ୍ଠରେ ବେଣୀ ଅସ୍ତବ୍ୟସ୍ତ ହୋଇ ।
ସ୍ୱର୍ଣ୍ଣ-ମଣ୍ଡିରେ କି କେତୁ ଅଛି ଆସି ଶୋଇ ।
ମଣି ହଜାଇ ଭୁଜଙ୍ଗ । ରଙ୍ଗ ତେଜ ସ୍ଥକତ କରଛି ନଜ ଅଙ୍ଗ । ୬ ।

ସଜନୀଙ୍କି ପଚାରିଲ; ଧନୀ ଏଡ଼େ ଶୀର୍ଣ୍ଣା ।
ସୁନ୍ଦରୀ ପୁରନ୍ଦରୀର ହେଲ କି ବେଦନା ।
ବରହଣୀ ଉପଗୃହ । ଦେଖିମାତ୍ରୁଁ ମାରଦର ହେଉଛି ବଗ୍ରହ । ୭ ।

ସଖୀପଣ ଗୁଣ ଦେଖାଗଲା ନାହିଁ କଛି ।
ପାଖେ ଥାଉଁ ଥାଉଁ ରାଧା ଏ ଦୁଖ ପାଉଛି ।
ସବୁ କହିବା ବଧିକ । ଆଜନମ ସୁକୁମାରୀ ଏ ଦଣ୍ଡ ଯୋଗ୍ୟ କି ? ।୮।

ରମାବର ଚନ୍ଦ୍ରମାର ଅଶ୍ୱିନୀକୁମାର ।
ପୁରନ୍ଦର କୁମାର ତ ମୋହିବା ଇତର ।
ଆଜ କାହିଁ ଦେଲ ମନ । ପ୍ରୀତି କି ଅନରୂପ କେ ଅଛି ଏ ଧରଣୀ । ୯ ।

---

୪—ଉପଗୃହ—ଶୀତଳ ଚକଶା । ପ୍ରହର—ବଧାନ । ଶତଦଳ ଦଳେ—ପଦ୍ମ ପତରରେ । ଗୁଣୀମଣି—ଗୁଣବତୀ ଶ୍ରେଷ୍ଠା—ଶ୍ରୀରାଧା । ବ୍ୟସ୍ତ—ବ୍ୟାକୁଳ ବା ବଭକ୍ତ । ନୀଳାମଣ୍ଡିରେ—ନୀଳମଣିର ଭୂଇଁରେ । ଦ୍ୱିଜସ୍ୱାଶଣୀ—ଦ୍ୱିଜସ୍ୱା ଚନ୍ଦ୍ର ପଡ଼ିଛି କି ?

୫—ବାରବାନ—ଖାଣ୍ଟି । କଷଟି ପଥରରେ କଷା ହୋଇଥିବା ଖାଣ୍ଟି ସୁନାର ଗାର କି ? ବନ୍ଧା ହୋଇଥିବା ରତନ ଫିଟି ପଡ଼ିବା ପରି । ଭାତ—ଶୋଭା । ଶାଣଶାର୍ଣ୍ଣି—ଶାଣରେ ଘଷା ହୋଇଥିବା । ମାରାଗ—ମରକତ ନୀଳମଣି । ଜ୍ୟୋତ—କାନ୍ତି ।

୬—ପୃଷ୍ଠରେ—ପିଠିରେ । ସ୍ୱର୍ଣ୍ଣମଣ୍ଡିରେ—ସୁନା ଭୂଇଁରେ । କେତୁ—କାଳିଆ ସାପ ପରି । ଭୁଜଙ୍ଗ—ସାପ । ରଙ୍ଗ—ଖେଳ । ସ୍ଥକତ—ସ୍ଥିର ।

୭—ଶୀର୍ଣ୍ଣା—କ୍ଷୀଣା । ସୁନ୍ଦରୀ ପୁରନ୍ଦରୀର—ସୁନ୍ଦରୀ ଶ୍ରେଷ୍ଠା—ଶ୍ରୀରାଧାଙ୍କର । ବରହଣୀ ଉପଗୃହ—ବିୟୋଗିନୀ ସ୍ତ୍ରୀର ଚକଶା । ମାରଦର—କନ୍ଦର୍ପ ଭୟ ।

ସିତେ ବୋଇଲେ, ବାମନ ଚନ୍ଦ୍ରଧରା ଆଶ ।
କରିବାରୁଁ କରଶୋଷ ପାଉଛୁ ଏତେ କ୍ଳେଶ ।
କି କହିବା ସେ ଚରିତ । କଉଁ କଥା ନୁହଇ ଗୋ ଦଇବ ଆୟତ୍ତ ? ୧୦ ।
ମୁଁ ବୋଇଲି ବନେ ଯେବେ ଫୁଟଇ ସୁମନ ।
ମଧୁପକୁ ଲୁଚଇ କି ଏ କଥା ନ ଘେନ ।
ପର ପରି କଲ ମୋତେ । ଜାଣି ନ ଥିଲି ଅନ୍ତର ଏତେ ଅଛି ଚିତ୍ତେ ।୧୧।
ନବୀନାମଣି ପାଉଛୁ ଏ ଜାତି ବେଦନା ।
ଧିକ ଧିକ ମୋହୋର ଜୀବନ ଯାଉ କିନା ।
ଜଣା ହୋଇଲେ କାମନା । ମଣାଇଁ ସୃଷ୍ଟି ଯୁବାଙ୍କୁ ପାରଇଁ ମୁଁ ସିନା ।୧୨।
ଏ ପଟ ଦେଖି କରୁଛୁ ମନେ ଅନୁମାନ ।
ନନ୍ଦନନ୍ଦନଙ୍କୁ ସାଧ ବଳାଇଛୁ ମନ ।
କେହ୍ନେ ହେଲି ଏ ଗୋଚର । ଅଳ୍ପ ଭାଗ୍ୟ ନୁହଇଁ ତ ତାଙ୍କୁ ଲଭିବାର ।୧୩।
ଅତନୁ ଯେହାଙ୍କୁ ଦେଖି ହୋଇବ ମୋହନ ।
କଉଁ ସୁକୃତୀ ପାରିବ ହରି ତାଙ୍କ ମନ ।
ଗୁଣନିଧି ନୀତିବନ୍ତ । ଗମ୍ଭୀର ସାଗର ଧୀର ମନ୍ଦର ସଞ୍ଜାତ ।୧୪।
ମହତ୍ତ୍ୱ-ମର୍ଯ୍ୟାଦା-ଧର୍ମଶୀଳ ବିଚକ୍ଷଣ ।
ଘେନଛୁ ତାହାଙ୍କ ହୃଦ ପବିରୁଁ କଠିଣ ।
ଏହା ଶୁଣି ଗୁଣୀମଣି । ମୁଖ ହଣିଗଲା ରବିଅସ୍ତ-ପଦ୍ମ ଜାଣି ।୧୫।

---

୯—ରମାବର—ବିଷ୍ଣୁ । ମାର—କନ୍ଦର୍ପ । ଅଶ୍ୱିନୀକୁମାର—ସ୍ୱର୍ଗବୈଦ୍ୟ । ପୁରନ୍ଦର—ଇନ୍ଦ୍ର । କୁମାର—କାର୍ତ୍ତିକେୟ, ଏମାନଙ୍କୁ ମୋହିବା ତ ଇତର (ଅଳ୍ପକ କଥା) । ମତି—ମନ । ଅନୁରୂପ—ଯୋଗ୍ୟ । ଧରିତ୍ରୀ—ପୃଥିବୀରେ ।

୧୦—ସିତେ—ସଖୀମାନେ । ଚନ୍ଦ୍ରଧରା ଆଶ—ଚନ୍ଦ୍ରକୁ ଧରିବା ଆଶା । ଆୟତ୍ତ—ଅଧୀନ ।

୧୧—ସୁମନ—ଫୁଲ । ମଧୁପକୁ—ଭ୍ରମରକୁ । ପର ପରି—ଇତର ଲୋକ ପରି । ଅନ୍ତର—ଭେଦ ।

୧୨—ଏ ଜାତି ବେଦନା—ଏପରି ପୀଡ଼ା । କାମନା—ମନକଥା । ସୃଷ୍ଟି ଯୁବାଙ୍କୁ—ଜଗତରେ ସମସ୍ତ ଯୁବା ପୁରୁଷଙ୍କୁ । ୧୩—ପଟ—ଶ୍ରୀକୃଷ୍ଣଙ୍କ ଚିତ୍ରପଟ ।

୧୪—ଅତନୁ—କନ୍ଦର୍ପ । ସୁକୃତୀ—ପୁଣ୍ୟବତୀ । ହରି—ମୋହି ପାରିବ । ନୀତିବନ୍ତ—ନ୍ୟାୟପରାୟଣ । ସମୁଦ୍ର ପରି ଗମ୍ଭୀର ଓ ମନ୍ଦର ପରି ଧୀର ଅଟନ୍ତି ।

୧୫—ବିଚକ୍ଷଣ—ଚତୁର । ଘେନିଛୁ—ଜାଣିଅଛୁ । ପବିରୁ—ବଜ୍ରରୁ ମଧ୍ୟ ବେଶୀ କଠିଣ—କଠିନ ପଣିଆ । ଗୁଣୀମଣି-ମୁଖ—ଗୁଣବତୀ ଶ୍ରେଷ୍ଠା ଶ୍ରୀରାଧାଙ୍କର ମୁଖ । ରବିଅସ୍ତପଦ୍ମ ସୂର୍ଯ୍ୟ ଗଲାବେଳେ ପଦ୍ମପରି ମଳିନ ।

ବଡ଼ କରି ପକାଇଲା ଗୋଟାଏ ନିଶ୍ୱାସ ।
ଛଳ ଛଳ ଲୁହେ ହେଲା ନୟନସାରସ ।
ଦେଖି ଏକାନ୍ତ ଘଟକ । ଆଶ ଭାଷ ପ୍ରକାଶ ମୁଁ କଲଇଁ ଏତେକ । ୧୬ ।
ନାଗର ସାଗର-ଲୀଳାଲହରୀ ଗୋବିନ୍ଦ ।
ପ୍ରୀତିରୀତି ବିଚକ୍ଷଣ ନାମ ରସାନନ୍ଦ ।
ଦୀନବନ୍ଧୁ ଭାବଗ୍ରାହୀ । ଅନୁଗତ ଜନବଶ କୃପାସିନ୍ଧୁ ସେହି । ୧୭ ।
ଏହା ଶୁଣି ଗଣ୍ଡପାଳି ରୋମାଳି ପୁଲକ ।
ମୁଖ ଶୋଭେ ଉଷାକାଳ ପଙ୍କଜ ପ୍ରାୟେକ ।
କଣ୍ଟି ହୋଇଲା କପୋଳ । ଭ୍ରୂସନ୍ଧିକି ଲୁଚ ଲୁଚ ଯାଏ ବେନି ଡୋଳ ।୧୮।
ଏ ରୀତି ଦେଖି ମୁଁ ପଚାରିଲି ବିମ୍ବୋଷ୍ଠୀକି ।
ମନାଇବ ତାଙ୍କୁ ସୀତକାର ହେବଟିକି ।
ଶୁଣି ମୁଖ କରି ନତ । ବୋଲେ ଚୁମ୍ୱସ୍ୱରେ ସବୁ ଭାଗ୍ୟକୁ ପ୍ରାପତ । ୧୯ ।
ତୁ କହିଲୁ ମାତ୍ର କେ କହନ୍ତା ଆଉ ପୁଣି ।
ମନକଥା କେ କାହାର ପାରଇ କି ଜାଣି ।
ଯା ଯା ଜାଣିଲି ଜାଣିଲି । କାହାକୁ କି କହୁଚୁ ତୁ, କେ ଏଥିକି ଭଲି ।୨୦।
ପ୍ରେମଶୀଳା ଲଜ୍ଜାବତୀ ଗାମ୍ଭୀର୍ଯ୍ୟପୂର୍ଣା ।
ଉତ୍କଣ୍ଠାଭୂର୍ଯ୍ୟରୁ ଧଇର୍ଯ୍ୟ ତା ଗଲା ଜଣା ।
ସବୁ କହିଲା ଭ୍ରମୁରେ । ବସ୍ତ୍ରର ମନ ମମତା କେମନ୍ତ ଏଥିରେ । ୨୧ ।

---

୧୬—ଲୁହେ—ଲୁହରେ । ନୟନସାରସ—ନେତ୍ରରୂପକ ପଦ୍ମ । ଏକାନ୍ତ ଘଟକ—ଏପରି ଅବସ୍ଥାକୁ । ଆଶଭାଷ—ଆଶାପ୍ରଦ ବଚନ ।

୧୭—ନାଗରସାଗରଲୀଳାଲହରୀ—ବିଳାସ ସମୁଦ୍ରରେ ଖେଳୁଥିବା ଲହରୀ ସ୍ୱରୂପ । ପ୍ରୀତିରୀତି ବିଚକ୍ଷଣ—ପ୍ରେମ ବେଭାରରେ ପଣ୍ଡିତ । ରସାନନ୍ଦ—ରସରେ ଆନନ୍ଦ ଯାହାଙ୍କର । ଦୀନବନ୍ଧୁ—ଦୁଃଖୀବାନ୍ଧବ । ଭାବଗ୍ରାହୀ—ଭକ୍ତି ଘେନନ୍ତି ଯେ । ଅନୁଗତଜନବଶ—ସେବକର ଅଧୀନ । କୃପାସିନ୍ଧୁ—ଦୟାସମୁଦ୍ର ।

୧୮—ଗଣ୍ଡପାଳି ରୋମାଳି ପୁଲକ—ଗାଲର ରୋମସବୁ ଟାଙ୍କୁରିଲା—ସାତ୍ତ୍ୱିକ ବିକାର ହେଲା । ଉଷାକାଳ ପଙ୍କଜ—ସକାଳେ ପଦ୍ମପରି ଫୁଟି ଉଠିଲା । କଣ୍ଟି ହୋଇଲା କପୋଳ—ଗଣ୍ଡରେ ଝାଳ ବୋହିଲା । ଭ୍ରୂସନ୍ଧିକି—ଭ୍ରୂଲତାର ସନ୍ଧିକୁ, ଭାବରେ ଆଖି ଖୋପି ହୋଇ ଯାଉଥାଏ ।

୧୯—ବିମ୍ବୋଷ୍ଠୀକି—ବିମ୍ବାଧରୀ, ଶ୍ରୀରାଧାଙ୍କୁ । ନତକରି—ନୁଆଁଇ । ଚୁମ୍ୱସ୍ୱରେ—ଚୁମ୍ୱନସ୍ୱରରେ ଅର୍ଥାତ୍ ଚୂକାର କରି ।

୨୦—କେ ଏଥିକି ଭଲି—କିଏ ଏଥିରେ ଭୁଲିଯିବ ?

ଚୁମ୍ବସ୍ତରେ ହାହା କହି ନେତ୍ର ମୁଦି ହରି ।
ଶ୍ୱାସ ତେଜି ଭାଷିଲେ ହା ବନ୍ଧୁ ମରି ମରି ।
ନେତ୍ର ନୀରେ ଜରଜର । ଛନ୍ନେ ପଚାରିଲେ ପୁଣି କହି ତା ସୁନ୍ଦର ।
ଶୋଭା ଗୁଣ ଯଶ ଶୁଣି ହୋଇବି କୃତାର୍ଥ ।
ମୋ ପାପ ତାପ ନାଶନେ ସେ ମଦନତୀର୍ଥ ।
ଅର୍ଥ ପୁରୁଷାର୍ଥ ସେହି । ତା କଥା ବାହାରେ ମୋତେ ଆନ ଦିଶୁନାହିଁ ।୨୩।
ସେ ରାଧା ଗୋବିନ୍ଦଭାବ ମନେ କରି ଧ୍ୟାନ ।
ଦିନ ଅଭିମନ୍ୟୁ ସାରିବ କି ସବୁ ଦିନ ।
ଦିବ୍ୟ ସୂକ୍ଷ୍ମ ଅଳଙ୍କାର । ଏ ଛାନ୍ଦରେ କହିଅଛି ସୁଜନେ ବିଚାର ।୨୪।
ଅନିୟମ ନିୟମ ଏ ଛାନ୍ଦ ବିରଚନା ।
ଆର ଛାନ୍ଦେ ଶୁଣିମ ହେ ସୁଷମା ବର୍ଣ୍ଣନା ।
ତୋଷ ହୋଇବେ ରସିକେ । ଗ୍ରାହକ ବିନା କି ଗମ୍ୟ ରସ ଅବିବେକେ ।୨୫।

---

୨୧—ପ୍ରେମଶୀଳା—ପ୍ରେମିକା । ଲଜ୍ଜାବତୀ—ଲାଜକୁଳୀ । ଗାମ୍ଭୀର୍ଯ୍ୟପୂର୍ଣ୍ଣା—ସ୍ୱର ଗଭୀର । ଉକ୍ତିଚାତୁର୍ଯ୍ୟରୁ—ବଚନ ଛଟାରୁ । ଧଇର୍ଯ୍ୟ—କପଟ ଦମ୍ଭ । ମନ ମମତା—ମନର ଆସକ୍ତି ।

୨୨—ଶ୍ୱାସ—ନିଃଶ୍ୱାସ । ନୀର—ଜଳ ଅର୍ଥାତ୍ ଲୁହ । ଛନ୍ନେ—ଉତ୍କଣ୍ଠାରେ । ସୁନ୍ଦର—ଶୋଭା ।

୨୩—ପାପତାପ—ଦୁଷ୍କୃତ, ଦୁଃଖ । ମଦନତୀର୍ଥ—କନ୍ଦର୍ପର ପୁଣ୍ୟକ୍ଷେତ୍ର, ତୀର୍ଥରେ ସ୍ନାନ କଲେ ପାପ ତାପ ଯାଏ । ଅର୍ଥ—ପ୍ରୟୋଜନ । ପୁରୁଷାର୍ଥ—ଧର୍ମ ଅର୍ଥ କାମ ମୋକ୍ଷ ଚତୁର୍ବର୍ଗ ସ୍ୱରୂପ ।

୨୪—ଦିବ୍ୟ—ଉତ୍ତମ ସୂକ୍ଷ୍ମ ଅଲଙ୍କାର—କୌଣସି ଭଙ୍ଗୀଦ୍ୱାରା ସୂକ୍ଷ୍ମ ଅର୍ଥସୂଚିତ ହେଲେ ସୂକ୍ଷ୍ମାଲଙ୍କାର ହୁଏ । ଏ ଛାନ୍ଦରେ ଶ୍ରୀରାଧାଙ୍କର ବହିର୍ଗତ-ବିବାଦଦ୍ୱାରା ମନଃସଙ୍ଗାଦି ମୋହାନ୍ତ କନ୍ଦର୍ପ ଦଶା ସୂଚିତ ହୋଇଅଛି । ସୁଜନମାନେ ବିଚାର କର ।

୨୫—ଅନିୟମନିୟମ—ଅନୁପ୍ରାସାଦି ଚିତ୍ରାଲଂକାର ରହିତ ନିୟମ । ସୁଷମା ବର୍ଣ୍ଣନା—ଶୋଭା ବିବରଣ । ଗମ୍ୟ—ବୋଧ । ଅବିବେକେ—ବିଚାରଶୂନ୍ୟ ଲୋକଦ୍ୱାରା ।

## ସପ୍ତବିଂଶ ଛାନ୍ଦ

## କୃଷ୍ଣଙ୍କ ଛାମୁରେ କିଶୋରୀ ଶୋଭା ଦୂତୀ କଥନ

ବ ପୂର୍ବାନୁପ୍ରାସ । ବାଣୀ— ରସକୋଇଲି

ବରଜବନ୍ଧୁ ହେ ପଟ୍ଟର ଯାହା । ବିଶ୍ୱ ମଧ୍ୟରେ କେ କହିବ ତାହା ।
ବର୍ଣ୍ଣିବା ପାଇଁକି ଯା ଶୋଭା ଗୁଣ । ବିଶ୍ୱସୃକ ଚୁରମୁଖ ଘଟଣ ଯେ ।
ବାମଦେବ ପଞ୍ଚାନନ ଯେ ।
ବାହୁଳେୟ ଋତୁଆନନେ ଗାୟନ କରୁଛନ୍ତି ପ୍ରତିଦିନ ଯେ । ୧ ।
ବିଶେଷ ବଦନ ଶେଷ ହୋଇଲେ । ବିଶ୍ୱମୋହି ଗୁଣ ବର୍ଣ୍ଣିମା ଛଳେ ।
ବଦନେ କରୁଁ ହେଲା ଲଳାୟିତ । ବର୍ଦ୍ଧନେ ଲେଭେ ଦ୍ୱିଜିହ୍ୱ ହେଲେ ତ ସେ
ବଶ ଶୋଭାଗୁଣେ ହୋଇ ଯେ ।
ବିଭୁର ଚକ୍ଷୁଶ୍ରବ ହୋଇଗଲେ ସେ ସୁଖ ଆସ୍ୱାଦନ ପାଇଁ ଯେ । ୨ ।
ବିନାୟକ ବକ୍ରତୁଣ୍ଡ ହୋଇଲେ । ବିଭାତି ଲବ ବର୍ଣ୍ଣି ନ ପାରିଲେ ।
ବିଭୁରି କବି ଏକଦୃଷ୍ଟି ହେଲେ । ବାଚସ୍ପତି ଗଣି ଗଣିକେ ଗଲେ ସେ ।
ବିଶ୍ରମେ ସାରଦା ମନେ ଯେ ।
ବାଣୀ ସ୍ୱରୂପ ହେଲେ ନିନ୍ଦାବଚନ ପାଇ ଅଖିଳ ବଦନେ ଯେ । ୩ ।

---

୧—ହେ ବରଜବନ୍ଧୁ—ଶ୍ରୀକୃଷ୍ଣ । ବିଶ୍ୱମଧ୍ୟରେ—ବ୍ରହ୍ମାଣ୍ଡ ଭିତରେ । ବିଶ୍ୱସୃକ୍—ବ୍ରହ୍ମା ଚୁରମୁହାଁ ହୋଇଅଛନ୍ତି । ବାମଦେବ—ଶିବ ପଞ୍ଚାନନ—ପାଞ୍ଚମୁହାଁ । ବାହୁଳେୟ—କାର୍ତ୍ତିକେୟ । ଋତୁ ଆନନେ—ଛଅ ମୁହଁରେ । ଗାୟନ—ଗାନ ।

୨—ବିଶେଷ ବଦନ—ସହସ୍ର ମୁଖ । ଶେଷ—ଅନନ୍ତ । ବିଶ୍ୱମୋହି—ବ୍ରହ୍ମାଣ୍ଡ-ମୋହିନୀ ଶ୍ରୀରାଧାଙ୍କର । ବଦନେ କରୁଁ—ମୁହଁରେ ବର୍ଣ୍ଣନା କରିବାରୁ । ଲଳାୟିତ—ଆଗ୍ରହ ବଳି ପଡ଼ିଲା । ବର୍ଦ୍ଧନେ—ଆଗ୍ରହ ବଢ଼ିବାରୁ । ଲେଭେ—ଗୁଣ ଲେଭରେ । ଦ୍ୱିଜିହ୍ୱ—ଦୁଇ ଜିଭଯୁକ୍ତ ହେଲା । ଉତ୍ପ୍ରେକ୍ଷା । ସାପମାନଙ୍କର ଦୁଇଟି ଜିଭ ଅଛି । ପୁଣି ସେ ଶ୍ରୀରାଧାଙ୍କ ଶୋଭା ଓ ଗୁଣ ଉଭୟରେ ବଶ ହୋଇ ଦୁହିଙ୍କୁ ଗୋଟିଏ ଇନ୍ଦ୍ରିୟରେ ଏକାବେଳେକେ ଗ୍ରହଣ କରିବାକୁ ବିଭୁର ସେ ସୁଖ ଆସ୍ୱାଦନ କରିବାକୁ ଚକ୍ଷୁଶ୍ରବା ଅର୍ଥାତ୍ ଆଖିରେ ଶୁଣିବା କ୍ଷମତା ପାଇଲେ । ଉତ୍ପ୍ରେକ୍ଷା । ସାପର କାନ ନାହିଁ, ଆଖିରେ ଶୁଣେ ।

୩—ତଥାପି ବିନାୟକ—ଗଣେଶ, ଶ୍ରୀରାଧାଙ୍କର ବିଭାତି ଲବ—କାନ୍ତିରୁ ଲେଶମାତ୍ର ବର୍ଣ୍ଣି ପାରିଲେ ନାହିଁ । ବକ୍ରତୁଣ୍ଡ ହେଲେ ଅର୍ଥାତ୍ ତାଙ୍କ ଗୁଣ କହିବାକୁ ଯାଇ ତୁଣ୍ଡ ବଙ୍କା ହୋଇଗଲା । କବି—ଶୁକ୍ର, ଶ୍ରୀରାଧାଙ୍କ ଶୋଭାକୁ ଦେଖିବାକୁ ଏକଦୃଷ୍ଟି ହେଲେ । ଶୁକ୍ର କଣା ଅଟନ୍ତି । ବାଚସ୍ପତି—ବୃହସ୍ପତି, ଗଣି ଗଣି

ବହୁତ ରୂପ ଧରିଲେ ଗିରିଜା । ବଳି ନ ପାରି ସୁଷମାରେ ହାରି ।
ବିଧୁଶେଖର-ଶରୀରେ ଲୁଚିଲେ । ବହି ଧବଳଅଙ୍ଗୀ ଭାବି ଗଲେ ସେ ।
ବ୍ରୀଡ଼ା ପାଇ ଅଷ୍ଟନିଧି ଯେ ।
ବନଜ ଦର ଆଦିରୂପ ଧରି ତ ରହିଲେ ପଦ ଆରାଧି ଯେ । ୪ ।
ବିଷ୍ଣୁ ପାଟରାଣୀ ସପତ୍ନୀ ଡରେ । ବାସ କଲେ ଗୁଣୀମଣି ଅଙ୍ଗରେ ।
ବଡ଼ କେ ଆଉ ବ୍ରହ୍ମାଣ୍ଡମଣ୍ଡଳେ । ବିଲକ୍ଷ ହେବ ସେ ଶୋଭାକୁ ତିଳେ ସେ ।
ବାସବ ଦେଖି ଭୁଲିଲେ ଯେ ।
ବିଜ୍ଞଜନଙ୍କର କ୍ରୋଧହିଁ ସେ ବର, ଗଉତମ ଭଲ କଲେ ଯେ । ୫ ।
ବିଲକ୍ଷ ହେବାକୁ ନାହିଁ ତ ସ୍ଥାନ । ବୋଲିବା କି ପ୍ରତିବିମ୍ବ ସମାନ ।
ବିଚେଷ୍ଟା ପରତନ୍ତ୍ରେ ତ ବୋଲିବା । ବାତୁଳ ହେଲେ ବା ତୁଳ କରିବା ସେ
ବର୍ଣ୍ଣି ବସିଲେ ତା ଗୁଣ ଯେ ।
ବାଇ-ବଦନେ ବ୍ୟାକରଣ ପଢ଼ିଲେ ହୁଅଇ କିସ ଲକ୍ଷଣ ଯେ । ୬ ।

---

ଗଣିକେ—ଜ୍ୟୋତିଷ୍କମାନଙ୍କ ମଧ୍ୟରେ, ଗଣା ଗଲେ । ସାରଦା—ସରସ୍ୱତୀ, ଶ୍ରୀରାଧାଙ୍କ ଶୋଭାରୁ ନିକୃଷ୍ଟ ହେବାରୁ ନିନ୍ଦାବଚନ—ନିନ୍ଦାବାଦ, ପାଇ ମନେ ବିଶ୍ରମ୍ଭେ—ସେ ନିନ୍ଦାରେ ବିଶ୍ୱାସ କରି, ଅଖିଳ ବଦନେ—ସମସ୍ତ ଲୋକ ମୁଖରେ, ବାଣୀସ୍ୱରୂପ—ବଚନ ରୂପ ଧରିଲେ ।

୪—ଗିରିଜା—ଦୁର୍ଗା ଦଶମହାବିଦ୍ୟା ପ୍ରଭୃତି ବହୁତ ରୂପ ଧାରଣ କଲେ । ତଥାପି ଶ୍ରୀରାଧାଙ୍କୁ ବଳି ନ ପାରି ତାଙ୍କ ସୁଷମା—ପରମ ଶୋଭାରେ, ହାରି ଯାଇଁ ବିଧୁଶେଖର—ଚନ୍ଦ୍ରଶେଖର-ଶିବଙ୍କ, ଶରୀରରେ ଲୁଚିଲେ, ଅର୍ଥାତ୍ ଅର୍ଦ୍ଧାଙ୍ଗିନୀ ହେଲେ । ଧବଳ ଅଙ୍ଗୀ—ଗଙ୍ଗା, ଶ୍ରୀରାଧାଙ୍କର ଶୋଭା ଭାବି ତରଳି ଯାଇ ନଦୀରୂପେ ବହିଗଲେ । ଅଷ୍ଟନିଧି ମାନେ ଶ୍ରୀରାଧାଙ୍କର ଶୋଭାରେ ବ୍ରୀଡ଼ା—ଲାଜ ପାଇ ବନଜ—ପଦ୍ମ, ଦର—ଶଙ୍ଖ, ଆଦି ରୂପ ଧରି ପଦ୍ମନିଧି, ଶଙ୍ଖନିଧି ନାମରେ ନିଜ ନିଜ ପଦ—ସେହି ସେହି ଶବ୍ଦ, ଆରାଧି—ସେବା କରି, ରହିଲେ ।

୫—ବିଷ୍ଣୁ ପାଟରାଣୀ—ଲକ୍ଷ୍ମୀ ସପତ୍ନୀ ଡରେ—ସଉତୁଣୀ ସରସ୍ୱତୀଙ୍କ ନିନ୍ଦା ପାଇବା ଭୟରେ ଅଥବା ଶ୍ରୀରାଧା ମୋର ସଉତୁଣୀ ଅବା ହେବେ ଏହି ଭୟରେ ଗୁଣୀମଣି—ଶ୍ରୀରାଧାଙ୍କ ଅଙ୍ଗରେ ବାସ କଲେ, ଶୋଭାରୂପେ ରହିଲେ । ବିଲକ୍ଷ—ସମାନ ଲକ୍ଷ୍ୟ—ହେବ ନାହିଁ । ତିଳେ—ଅଳ୍ପ ପରିମାଣରେ ବାସବ—ଇନ୍ଦ୍ର । ବିଜ୍ଞଜନମାନଙ୍କର କ୍ରୋଧ ସୁଦ୍ଧା ବର—ଅନୁଗ୍ରହ, ସ୍ୱରୂପ । ଗୌତମ କ୍ରୁଦ୍ଧ ହୋଇ ସହସ୍ର ଚକ୍ଷୁ କରିବାଦ୍ୱାରା ମୋତେ ଅନୁଗ୍ରହ କଲେ, ଯେହେତୁ ମୁଁ ଶ୍ରୀରାଧାଙ୍କ ଶୋଭା ଭଲ କରି ଦେଖି ପାରିଲି ।

୬—ବିଲକ୍ଷ୍ୟ—ବିଶେଷ ଲକ୍ଷ୍ୟ, ସମାନ । ପ୍ରତିବିମ୍ବ—ଦର୍ପଣାଦିରେ ଦେଖାଯିବା ଛାୟା । ସେହିପ୍ରତିବିମ୍ବର ବିଚେଷ୍ଟା—ଭଙ୍ଗୀ । ପରତନ୍ତ୍ରେ—ପର

ବିଶ୍ୱକାନ୍ତିସାର ପୀୟୂଷେ ବୋଳି । ବିଧି ବନାଇଛନ୍ତି ଶୋଭପିତୁଳୀ ।
ବିରଦୀପ୍ତି ଟାଙ୍ଗଣାରେ ଝାଳିଲା । ବିଚିତ୍ର ହେମ ରସାଣେ ଶାଣିଲା ସେ ।
ବିଗ୍ରହ ଲବଣ୍ୟନୀରେ ଯେ ।
ବୁଡ଼ାଇ ଥୋଇ ଜୀବନ୍ୟାସ କରିଛନ୍ତି ପରି ମୋହନମନ୍ତରେ ସେ । ୭ ।
ବିତଶଲକ୍ଷଣା ଗୁଣନିପୁଣା । ବିଶ୍ୱକେତୁ କେଳିକଳା-ପ୍ରବୀଣା ।
ବିଧି ଅଷ୍ଟବିଂଶ ଅଳଙ୍କାରର । ବାସ ବିଚେଷ୍ଟା ବିଶେଷ ଭଙ୍ଗୀର ।
ବିଶେଷ କୃପାନିଧାନୀ ଯେ ।
ବିରାଙ୍ଗୀ ପ୍ରେମ ବିଇଭବ ଭଣ୍ଡାର ଶୋଭା ପ୍ରଭା-ବିରଧନୀ ଯେ । ୮ ।
ବିବେକୀ ଶାନ୍ତା ସୁଶୀଳା ଅଲୋଳା । ବିଶେଷ ମଦନଶାସ୍ତ୍ରକୁଶଳା ।
ବିଡ଼ ତାର୍କିକୀ ସ୍ୱଜନବତ୍ସଳା । ବାରିନିଧିରୁ ଗମ୍ଭୀର ଛଇଳା ସେ ।
ବାଳା ସୁଧାସ୍ୱାଦୁ ଭାଷି ଯେ ।
ବିରପରସନ୍ଧାନନୀ ଆହ୍ଲାଦିନୀ ମନଙ୍କଟକ-ସୂହାସୀ ଯେ । ୯ ।

---

ଅଧୀନରେ ଅର୍ଥାତ୍ ବିମ୍ବର ଭଙ୍ଗୀ ଅନୁସାରେ ହୁଏ । ବାତୁଳ—ପାଗଳ । ତୁଲ—ସମାନ । ବାଇବଦନେ—ବାସ୍ୟା ଲୋକ ମୁହଁରେ । ସୁଲକ୍ଷଣ—ବିଶୁଦ୍ଧ । ଶ୍ରୀରାଧାଙ୍କ ଗୁଣବର୍ଣ୍ଣନାରମ୍ଭ ବାତୁଳ ମୁଖରେ ବ୍ୟାକରଣ ପାଠ ପରି । ନିଦର୍ଶନାଲଙ୍କାର ।

୭—ବିଶ୍ୱକାନ୍ତିସାର—ସମସ୍ତ ବ୍ରହ୍ମାଣ୍ଡଶୋଭାର ଉତ୍କୃଷ୍ଟାଂଶ । ପୀୟୂଷେ—ଅମୃତରେ । ବିରଦୀପ୍ତି—ଉତ୍କୃଷ୍ଟ ଝଟକ ଶୋଭାକୁ । ହେମରସାଣେ—ସୁନାର ଶାଣରେ ଶାଣିଲା—ଶାଣ ଦେଲା, ଘଷିଲା (ଅଷ୍ଟ ଛା ୩ ପଦ ଦେଖ) । ବିଗ୍ରହ—ମୂର୍ତ୍ତି । ଲବଣ୍ୟନୀରେ—କାନ୍ତିର ତରଳ ଜଳରେ । ଜୀବନ୍ୟାସ—ପ୍ରାଣଦାନ । ମୋହନମନ୍ତ୍ରରେ—ମୋହନକାରୀ ମନ୍ତ୍ରରେ ।

୮—ବିତଶଲକ୍ଷଣା—ଭାବର ଗମ୍ଭୀରତା ପ୍ରଭୃତି ବିତଶପ୍ରକାର ଲକ୍ଷଣ-ପୂର୍ଣ୍ଣ । ପୂର୍ଣ୍ଣଚନ୍ଦ୍ର ଚନ୍ଦ୍ରୋଦୟ ୭ମ ଅଧ୍ୟାୟ ବା ଭକ୍ତିରସାମୃତସିନ୍ଧୁ ଦକ୍ଷିଣବିଭାଗ ୧ ଲହରୀ ଗୁଣୋଦ୍ଭବଲକ୍ଷଣ ଦେଖ । ଗୁଣନିପୁଣା—ଗୁଣବତୀ । ବିଶ୍ୱକେତୁକେଳି-କଳାପ୍ରବୀଣା କାମକ୍ରୀଡ଼ାକୌଶଳପଣ୍ଡିତା । ଅଷ୍ଟବିଂଶ ଅଳଙ୍କାରର—ଭାବ ହାବ ପ୍ରଭୃତି ୨୮ ପ୍ରକାର ନାୟିକାର ସ୍ୱାଭାବିକ ଅଳଙ୍କାର । ସାହିତ୍ୟଦର୍ପଣ—ତୃତୀୟ ପରିଚ୍ଛେଦ ୧୨୫ କାରିକା ଦେଖ । ବିଧି—ବିଧାତା । ବିଚେଷ୍ଟା ବିଶେଷ ଭଙ୍ଗୀର—ବ୍ୟାପାର ଅନୁସାରେ ଭିନ୍ନ ଭିନ୍ନ ଭଙ୍ଗୀର । ବାସ ଗୃହସ୍ୱରୂପା । ବିଶେଷ-କୃପାନିଧାନୀ—ଅତିଶୟ ଦୟାନିଧି । ବିରାଙ୍ଗୀ—ଶୋଭନାଙ୍ଗୀ । ପ୍ରେମବିଇଭବ-ଭଣ୍ଡାର—ପ୍ରେମ ସମ୍ପତ୍ତିର ଭଣ୍ଡାରଘର । ( ଗୋକୁଳପ୍ରେମ ବିସତିଃ—ଉ. ନୀ ) ଶୋଭାପ୍ରଭାବିରଧନୀ—ସୌନ୍ଦର୍ଯ୍ୟଝଟକ ବୃଦ୍ଧିଶାଳିନୀ ।

୯—ବିବେକୀ—ବିଚାରବତୀ । ତାର୍କିକୀ—ତର୍କବତୀ ବା ତର୍କଶାସ୍ତ୍ରଜ୍ଞା । ସ୍ୱଜନବତ୍ସଳା—ଆତ୍ମୀୟସ୍ନେହିନୀ । ବାରିଧିରୁ—ସମୁଦ୍ର ଅପେକ୍ଷା । ଗମ୍ଭୀର—

ବସିଲେ କହିବ ତାହା ଗୁଣ ଲେଶ । ବୟସ ଶେଷରେ ହୋଇବ ଶେଷ ।
ବିଗତ ହୋଇଗଲେ ତିନକାଳ । ବର୍ଣ୍ଣିବା ଭଳି କେବା ପାଦତଳ ଯେ ।
ବୋଲୁଛି ଯେତେକ ମୁହିଁ ଯେ ।
ବୋଲନ୍ତି ସୁଧାକୁ ସ୍ୱାଦୁ ଯଥା ଜନେ ତଥା ଏ କଥାକୁ କହି ଯେ । ୧୦ ।
ବିଗର୍ବୀକୃତ ମଉଳିମୁକୁଟ । ବ୍ରହ୍ମାଣ୍ଡଖଣ୍ଡର ସାର ପ୍ରକଟ ।
ବୋଲିବାକୁ ମୁଖ ଲଜ ପାଉଛି । ବର ଉପମାକୁ କରୁଛି ଛି ଛି ଯେ ।
ବିରସବଦନ ଆଣି ଯେ ।
ବିଧୁ ବନଜ ଦର୍ପଣ ପଣ ପଣ ହେଲେ ପାରିବେକି ଆଣି ଯେ । ୧୧ ।
ବାଳୀ ଚଳି ଗାଳି ଦେଲା ଭାଷାକୁ । ବୋଲିବା କି ସୁଧା ସ୍ୱାଦୁ ଲକ୍ଷକୁ ।
ବିକଳ କଳ ତୁଳ ବୀଣାବାଣୀ । ବନ୍ଧୁତ୍ୱ କଲେ କି ପିକରେ ଗଣି ଯେ ।
ବିରହ କାଳରେ ଅବା ଯେ ।
ବରବରନା ବରନକୁ ଉପମା କନକ ଚମ୍ପକ ଦେବା ଯେ । ୧୨ ।
ବିଭୂଷିତର ଭୂଷିତ ବପୁର । ବିଶେଷ ଅଳଙ୍କାର ଅଳଙ୍କାର ।
ବିରସ ଲାବଣ୍ୟ ଜନମସ୍ଥଳ । ବାଞ୍ଛାନିଧି ଭାବଲତିକାମୂଳ ଯେ ।

---

ଶବ୍ଦର । ସୁଧାସ୍ୱାଦୁଭଙ୍ଗୀ—ଅମୃତ ପରି ମିଷ୍ଟ କଥା କହେ ଯେ । ବରପରସନ୍ନାନନୀ—ବଡ଼ପ୍ରସନ୍ନମୁଖୀ । ଆହ୍ଲାଦନୀ—ଆହ୍ଲାଦଦାୟିନୀ । ମନ୍ଦଟଟକସୁହାସୀ-ଅଳ୍ପ ଅଳ୍ପ ଟକ ଟକ ହାସିନୀ ।

୧୦—ଶେଷର—ସହସ୍ରମୁଖ ଅନନ୍ତଦେବଙ୍କର । ଶେଷ—ସମାପ୍ତ । ବିଗତ ହୋଇଗଲେ—ବିତିଗଲେ । ତିନକାଳ—ଅତୀତ, ବର୍ତ୍ତମାନ, ଭବିଷ୍ୟତ । ପାଦତଳ—ଶ୍ରୀରାଧାଙ୍କର ତଳିପା । ସୁଧାକୁ—ଅମୃତକୁ । ଲୋକେ ଅନୁଭବ ନ କରି ଅମୃତକୁ ସ୍ୱାଦ ବୋଲି କହିଲା ପରି ମୁଁ କିଛି ଗୁଣ ଶ୍ରୀରାଧାଙ୍କର ନ ଜାଣି କହୁଅଛୁ ।

୧୧—ବିଗର୍ବୀକୃତ-ମଉଳିମୁକୁଟ—ସୁନ୍ଦରୀସମୂହ ମଉଡ଼ମଣି । ବ୍ରହ୍ମାଣ୍ଡ-ଖଣ୍ଡର—ସଂସାରସାକର । ବର ଉପମାକୁ—ଉତ୍କୃଷ୍ଟ ଉପମାନ ପଦାର୍ଥକୁ । ବିରସବଦନ—ଦୁଃଖିତ ମୁଖର ଟେକକୁ । ବିଧୁ—ଚନ୍ଦ୍ର । ବନଜ—ପଦ୍ମ ।

୧୨—ବାଳୀ—ନବୀନା ଶ୍ରୀରାଧା । ଚଳି—ଚଡ଼ିକରି । ଭାଷାକୁ—କଥାକୁ । ସୁଧା—ଅମୃତ । ସ୍ୱାଦୁଲକ୍ଷକୁ—ମିଷ୍ଟତାରେ ସମାନ ହେବାକୁ । ରାଧାଙ୍କ ବିକଳ-କଳବାଣୀ—ରାଗିବାବେଳେ ଖଣ୍ଡ ଖଣ୍ଡିଆ କଥା ବୀଣାର ତୁଳ୍ୟ ଅଟେ । ପିକ—କୋଇଲି । ବନ୍ଧୁତ୍ୱ—ବନ୍ଧୁପଣିଆ କରିବାକୁ ଗଲେ । ବିଚ୍ଛେଦ ଅବସ୍ଥାରେ ବରବରନାବରନକୁ—ସୁନ୍ଦରୀ ଶ୍ରୀରାଧାଙ୍କ ବର୍ଣ୍ଣକୁ । କନକ ଚମ୍ପକ—ସୁନା ଚମ୍ପା ଅବା ଉପମା ଦେବାକୁ ହେବ ।

ବିଶ୍ୱକର୍ମା-ଗୁରୁ ଧନ୍ୟା ସେ ।
ବର-ଉପମାମାନ-ଦାନକାରିଣୀ ଭଙ୍ଗି ଗୁଣକୃତାର୍ଥିନୀ ସେ । ୧୩ ।
ବିଶ୍ୱପବିତ୍ର ପ୍ରେମରସପାତ୍ରୀ । ବିଧାତା ବିଧାନ ନିତି କରତ୍ରୀ ।
ବିଜ୍ଞମାନଙ୍କ ଦମ୍ଭବାସ କତୁରୀ । ବ୍ରହ୍ମାଣ୍ଡ-ବିଜୟୀ ଶର ନାଗରୀ ସେ ।
ବରଯୁବା ମୋହଫାନ୍ଦ ସେ ।
ବିଲୋକନଜନ ଆନନ୍ଦସାଗରବୃଦ୍ଧିକ ଶ୍ରୀମୁଖଚନ୍ଦ୍ର ସେ । ୧୪ ।
ବାରଣଗତି-ମୂର୍ଦ୍ଧା-ପଦଦତ୍ତା । ବନିତା ସଙ୍ଗୀତମତିପଣ୍ଡିତା ।
ବିଚକ୍ଷଣ ଯୁବା ମୋହପଦାର୍ଥ । ବିଶ୍ୱକେତୁ-ତାପପାପକୁ ତୀର୍ଥ ସେ ।
ବୋଲିବା କି ପୁରୁଷାର୍ଥ ସେ ।
ବଡ଼ କଠିନ ଶ୍ଲୋକ ମୂର୍ଖମୁଖରେ ଯେମନ୍ତ ହୁଅଇ ଅର୍ଥ ସେ । ୧୫ ।

---

୧୩—ଧନ୍ୟା—ଶ୍ରୀରାଧା, ବିଭୂଷିତର ଭୂଷିତ—ଭୂଷଣମାନଙ୍କର ଭୂଷଣ ଅର୍ଥାତ୍ ଶୋଭାକାରିଣୀ, ବୋଲି ବିଚାର କର । ବିଶେଷ ଅଳଙ୍କାର—ହାବ ଭାବ ପ୍ରଭୃତି ୨୮ଶ ନାୟିକାଙ୍କ ଅଳଙ୍କାରମାନଙ୍କର; ଅଳଙ୍କାର—ମଣ୍ଡନକାରିଣୀ । ବିଚିତ୍ର ଲାବଣ୍ୟର ବିସ୍ମୟଜନକ କାନ୍ତିର ତରଳତାର ଜନମ ସ୍ଥଳ । ବାଞ୍ଛାନିଧି—ବାଞ୍ଛାପୂରଣକାରିଣୀ, ଭାବଲତିକା, ମୂଳ—ପ୍ରେମରୂପକ ଲତାର ମୂଳସ୍ୱରୂପା । ବିଶ୍ୱକର୍ମାଗୁରୁ—ବିଧାତାଙ୍କ ଶିକ୍ଷୟିତ୍ରୀ । ଅର୍ଥାତ୍ ବିଧାତା ଶ୍ରୀରାଧାଙ୍କୁ ଦେଖି ରଚନା କୌଶଳ ଶିଖି ଅଛନ୍ତି କି ? ବର ଉପମା—ଉତ୍କୃଷ୍ଟ ଉପମାନ ଚନ୍ଦ୍ର ପଦ୍ମାଦି ମାନଙ୍କର, ମାନଦାନକାରିଣୀ ସମ୍ମାନ ଦାତ୍ରୀ । ଅର୍ଥାତ ଉପମାନ ବସ୍ତୁମାନେ ଶ୍ରୀରାଧାଙ୍କ ଅଙ୍ଗ ସହିତ ତୁଳିତ ହୋଇ ସମ୍ମାନିତ ହେଉଅଛନ୍ତି ବା ମାନକୁ-ଗର୍ବକୁ, ଦାନ—ଖଣ୍ଡନ କରୁଅଛନ୍ତି । ଭଙ୍ଗୀ ଓ ଗୁଣମାନ ଏହାଙ୍କଠାରେ ରହି କୃତକୃତ୍ୟ ହୋଇଅଛନ୍ତି ।

୧୪—ବିଶ୍ୱପବିତ୍ରପ୍ରେମରସପାତ୍ରୀ—ବ୍ରହ୍ମାଣ୍ଡର ଶୁଦ୍ଧ ପ୍ରେମରସର ସ୍ଥାନ । ନିତି—ପ୍ରତିଦିନ, ବିଧାତାବିଧାନ—ସର୍ଜ୍ଜନା ବା ଶୋଭାର ସୃଷ୍ଟି କରୁଅଛନ୍ତି । ଅର୍ଥାତ୍ ପ୍ରକୃତ ରୂପରେ ସଂସାର ସର୍ଜ୍ଜନା କରନ୍ତି । ବିଜ୍ଞମାନଙ୍କ—ବିଶେଷ ଜ୍ଞାନୀମାନଙ୍କର । ଦମ୍ଭବାସକତୁରୀ—ଧୈର୍ଯ୍ୟରୂପକ ବସ୍ତ୍ରର କତୁରୀ ପରି । ବ୍ରହ୍ମାଣ୍ଡ-ବିଜୟୀଶର—କନ୍ଦର୍ପଙ୍କ ଶର ବା ବିଶ୍ୱଜୟୀ କାଣ୍ଡ । ବରଯୁବାମୋହଫାନ୍ଦ—ଶ୍ରେଷ୍ଠ ଯୁବକମାନଙ୍କର ମୋହଫାଶ । ବିଲୋକନଜନ—ତାଙ୍କ ଶ୍ରୀମୁଖ ଦେଖିବା ଲୋକଙ୍କର, ଆନନ୍ଦ-ସାଗରବୃଦ୍ଧିକୁ—ଆନନ୍ଦ ସମୁଦ୍ର ବଢ଼ାଇବାକୁ, ଚନ୍ଦ୍ରସ୍ୱରୂପ ଅଟେ ।

୧୫—ବାରଣଗତି ମୂର୍ଦ୍ଧା ପଦଦତ୍ତା—ଗଜଗମନା ସ୍ତ୍ରୀମାନଙ୍କ ମୁଣ୍ଡରେ ପାଦ ଦେଇ ଅଛନ୍ତି । ବନିତା—ସୁନ୍ଦରୀ ଶ୍ରୀରାଧା । ସଙ୍ଗୀତମତିପଣ୍ଡିତା—ସଙ୍ଗୀତ ବିଷୟରେ ପଣ୍ଡିତା । ବିଚକ୍ଷଣଯୁବାମୋହପଦାର୍ଥ—ଚତୁର ଯୁବକର ମୋହଜନକବିଷୟ । ବିଶ୍ୱକେତୁତାପପାପକୁ—କନ୍ଦର୍ପର ତାପ ଓ ପାପ ଛଡ଼ାଇବାକୁ ।

ବଶ୍ୱସୃକ କର ସାର୍ଥ ପାଇଁକ । ବକଲ୍ପି ଶ୍ରୀରାଧା ଚତ୍ରମୂର୍ତ୍ତିକ ।
ବଶେଷ କାନ୍ତସାର ସୁଧା ଗୋଳ । ବାର ବାର ଗୁଣି କର ଛିଭଳ ସେ ।
ବନାଏ ଆଗ ଅସାର ଯେ ।
ବଗ୍ଗୁର ହାତବଳା କଲ ଯାହା ସେ ହେଲେ ଅପସରୀବାର ଯେ ।୧୬।
ବନାଇଲ ମଧ୍ୟଭଳକ ପୁଣି । ବଦ୍ୟ ମୋ ରତ୍ତ ବରତରୁଣୀ ।
ବଡ଼ ସାର ଭଳ ଦ୍ୱି ଭାଗ କଲ । ବଚଛେ ରମାରୂପ ବନାଇଲ ସେ ।
ବଗୁରଣା ବସି କଲ ଯେ ।
ବଚଜ ତନୁ ଚଳପା-ତଳ ତୁଳ ଭଲ ତ କେହ୍ନ ନୋହିଲ ଯେ । ୧୭ ।
ବୃଥା ଶ୍ରମ ହେଲ ବଗ୍ଗୁର ରାଗେ । ବେଗେ ଫିଙ୍ଗିଦେଲ ସକଳ ହରେ ।
ବରୁଣାଳୟେ ରମା ଅପସରୀ । ବନେ ରତ୍ତ, ହିମାଳୟେ ଗଉରୀ ସେ ।
ବନା ରହିତ ଭାଗକ ଯେ ।
ବଧୂ ହେଲ କୁଶଦ୍ୱୀପେ ପଡ଼, କହି ବସିବା କେତେ ତା ଚେକ । ୧୮ ।

---

ତୀର୍ଥ—ତୀର୍ଥସ୍ଥାନ, ପବତ୍ର ଜଳମୟ ସ୍ଥାନ । ଶ୍ରୀରାଧାଙ୍କ ପୁରୁଷାର୍ଥ—ଧର୍ମ୍ମ, ଅର୍ଥ, କାମ ମୋକ୍ଷ, ବୋଲବା କ ? ତାହା ନୁହେଁ । ମୂର୍ଖ ମୁଖରୁ ଅତ କଠିନ ଶ୍ଳୋକ ଅର୍ଥ କରବା ପର ତାହା ବୁଝାଯାଇ ନ ପାରେ । ନଦର୍ଶନାଲଙ୍କାର ।

୧୬—ବଶ୍ୱସୃକ୍ - ବଧାତା ନଜର କର—ହାତକୁ, ସାର୍ଥ—ସଫଳ, କରବାପାଇଁ ଶ୍ରୀରାଧାଙ୍କର ଚତ୍ରମୂର୍ତ୍ତିକ—ଚତ୍ରିତ ରୂପକୁ; ଗଢ଼ିବାକୁ ବକଳ୍ପି—ବଗ୍ଗୁର କର, ବଶେଷକାନ୍ତସାରସୁଧା—ଉତ୍କୃଷ୍ଟ ଲବଣ୍ୟ ଅମୃତକୁ ବା ଲବଣ୍ୟ ଓ ଅମୃତକୁ, ଗୋଳ ବାରମ୍ବାର ଗୁଣି କର ଛିଭଳ—ଛନପ୍ରକାର କଲ । ଆଗ ଅସାର—ନକୃଷ୍ଟ ପ୍ରକାରକୁ, ବନାଏ । ବଗ୍ଗୁର ଯାହାକୁ ହାତବଳା କଲ—ହାତରେ ବଳଲ, ସେ ସବୁ ଅପସରୀବାର—ଅପ୍‌ସରୀ ସମୂହ ହେଲେ ।

୧୭—ପୁଣି ମଧ୍ୟଭଳକ ମଧ୍ୟମପ୍ରକାରକୁ, ବଦ୍ୟ – ପ୍ରସିଦ୍ଧ । ବରତରୁଣୀ —ଉତ୍କୃଷ୍ଟ ସ୍ତ୍ରୀ, ଉମା—ପାର୍ବତୀ, ରତ—କନ୍ଦର୍ପ ପତ୍ନୀଙ୍କୁ ବନାଇଲ । ବଡ଼ସାର ଭଳକୁ ଦୁଇ ଭାଗ କଲ । ବଚଛେ—ବଶେଷ ଶୋଭାରେ, ରମାରୂପ – ଲକ୍ଷ୍ମୀଙ୍କ ରୂପକୁ ବନାଇଲ । ତହୁଁ ବସି ବଗ୍ଗୁର କଲ ଯେ, ଏମାନଙ୍କ ମଧ୍ୟରେ କେହି ଶ୍ରୀରାଧାଙ୍କ ଚତ୍ରମୂର୍ତ୍ତିର—ବଚଜ—ଆଶ୍ଚର୍ଯ୍ୟ, ତନୁ— ପାତଳଆ ଚଳପା ତଳ ସହତ ତୁଳ ହେବା ଭଳ କେହି ହେଲେ ନାହିଁ !

୧୮ —ଅତଏବ ଶ୍ରମ ବୃଥା ହେଲ ବୋଲ ବଗ୍ଗୁର ରାଗରେ ସକଳ ହରକୁ ସେମାନଙ୍କୁ ଫିଙ୍ଗି ଦେଲ । ବରୁଣାଳୟେ—ସମୁଦ୍ରରେ, ରମା ଅପ୍‌ସରୀ—ଲକ୍ଷ୍ମୀ ଓ ଅପ୍‌ସରୀମାନେ ପଡ଼ଲେ । ରତ ଦେବୀ ବନରେ ପଡ଼ଲେ । ଗୌରୀ – ପାର୍ବତୀ ହିମାଳୟରେ ପଡ଼ଲେ । ବନାରହିତଭାଗକ—ବନା ହୋଇ ନ ଥିବା ଭାଗକ କୁଶଦ୍ୱୀପରେ ପଡ଼ ବଧୂ—ଚନ୍ଦ୍ର ହେଲ । ତା ଚେକ—ବଡ଼ପଣିଆ, କେତେ କହି ବସିବା ।

ବ୍ରହ୍ମାହାତଧୂଆ ଜଳପତନେ । ବିଶ୍ୱ ମଧ୍ୟେ ଖ୍ୟାତ କେତେ ବିଧାନେ ।
ବୃକ୍ଷ ପକ୍ଷୀ ଜୀବ ଫୁଲ ପଟଳ । ବିଚିତ୍ର ମଞ୍ଜୁଳ ଲାବଣ୍ୟସ୍ଥଳ ସେ ।
ବରାଙ୍ଗୀ ଉପମା ଭଲ ଯେ ।
ବିଧି ରଚନା କଳ୍ପନା ଆନ ନୋହେ, ଏଣୁ କରି ମନେ କଲ ଯେ ।୧୯।
ବାଛି ଉପମାକୁ ବୋଇଲେ ଛି ଛି । ବଡ଼ ପୁରୁଷାର୍ଥ ତାକୁ ହୋଇଛି ।
ବହିଥିଲୁ ଦେହ ଯହିଁ ପାଇଁକି । ବିଶେଷେ ଯୋଗ୍ୟ ତ ନୋହୁ ତହିଁକି ସେ ।
ବିଦୁଷେ ଧନ୍ୟ ବୋଇଲେ ଯେ ।
ବସୁଧାବିଶୁଦ୍ଧା ଉପମା ଆବରେ ଛି ଛି ହେଲେହେଁ ତ କଲେ ଯେ ।୨୦।
ବରପତିବ୍ରତା-ଶିରମୁକୁଟ । ବନଜପଦ ଲଳିତ ଦୁର୍ଘଟ ।
ବିଷ୍ଣୁପଦୀ ତାରା ତାରା ଅହଲ୍ୟା । ବାଳୀ ଦ୍ରୌପଦୀ ମନ୍ଦୋଦରୀ ଲୀଳା ସେ ।
ବଲ୍ଲଭବ୍ରତା ବୋଲନ୍ତି ଯେ ।
ବିଗୁରି ଏହା ଗୀତ ଆତ୍ମନିନ୍ଦନ କରୁଥିବେ ସେ ତ ନିତ ଯେ । ୨୧ ।
ବଚନ ଦୂତୀର ଶୁଣି ଏମନ୍ତ । ବନମାଳୀ ହୃଦେ ବାଜିଲା କୁନ୍ତ ।
ବୋଇଲେ ସୁଧାରେ ସ୍ନାନ କରାଇ ବଜ୍ର ପ୍ରହାରିଲୁ ମୁଣ୍ଡେ କି ପାଇଁ ଯେ

---

୧୯—ସେ ସମୟରେ ବ୍ରହ୍ମାଙ୍କର ହାତଧୂଆ ପାଣି ପଡ଼ିବାରୁ ବୃକ୍ଷ, ପକ୍ଷୀ ଏବଂ ଫୁଲସମୂହ ବିଚିତ୍ର—ଆଶ୍ଚର୍ଯ୍ୟଜନକ, ମଞ୍ଜୁଳ—ସୁନ୍ଦର, ଲାବଣ୍ୟସ୍ଥଳ—ଶୋଭା ସ୍ଥାନ, କେତେ ବିଧାନେ—ପ୍ରକାରରେ, ବିଶ୍ୱମଧ୍ୟେ ଖ୍ୟାତ—ପ୍ରକାଶିତ ହେଲା । ଏଣୁକରି, ମନରେ କଲନା କରୁଅଛି ଯେ ବିଧି—ବିଧାତାଙ୍କ, ଆନ—ଅନ୍ୟ କିଛି ରଚନା ଓ କଳ୍ପନା ବରାଙ୍ଗୀ—ସୁନ୍ଦରୀ ଶ୍ରୀରାଧାଙ୍କର ଉପମା ଭଲ ହେଲେ ନାହିଁ ।

୨୦—ଉପମାକୁ—ଚନ୍ଦ୍ରାଦି ଉପମାନ ପଦାର୍ଥମାନଙ୍କୁ ବାଛି ନିକୃଷ୍ଟ ହେବାରୁ ଛି ଛି କଲେ, ମାତ୍ର ତାକୁ (ସେ ଉପମାନମାନଙ୍କୁ) ବଡ଼ ପୁରୁଷାର୍ଥ—ପୌରୁଷ, ହେଉଅଛି । ବିଦୁଷେ—ପଣ୍ଡିତମାନେ ବା "ବିଦ୍ୟୁସେ ପାଠରେ" ସେ ବିଦ୍ୟୁ—ବିଦ୍ୟୁ (ବିଦ୍ ବିତ୍) ସେ ପଣ୍ଡିତମାନେ, ଧନ୍ୟ ବୋଇଲେ । କାରଣ ବସୁଧାବିଶୁଦ୍ଧା—ପୃଥିବୀ ଶୁଦ୍ଧିକାରିଣୀ ଶ୍ରୀରାଧାଙ୍କର, ଉପମା ଦେବା'ଦେଲେ ଛି ଛି ହେଲେହେଁ ତ କଲେ । ସେହି ଛି ଛି କରିବାଟା ଧନ୍ୟର କାରଣ ଅଟେ ।

୨୧—ବରପତିବ୍ରତାଶିର ମୁକୁଟ—ଉତ୍କୃଷ୍ଟ ସତୀଶିରମଣ୍ଡନରୂପିଣୀ ଶ୍ରୀରାଧାଙ୍କର ବନଜପଦ—ପଦ୍ମତୁଲ୍ୟ ପାଦରେ ଲୁଳିତ—ପଡ଼ିବାକୁ, ଦୁର୍ଘଟ—ଅଯୋଗ୍ୟ ବା ଲଳିତ—ରମ୍ୟ ପଦ୍ମପାଦର ଅଯୋଗ୍ୟ । ବିଷ୍ଣୁପଦୀ—ଗଙ୍ଗା, ତାରା—ବୃହସ୍ପତି ପତ୍ନୀ, ତାରା—ସୁଗ୍ରୀବ ପତ୍ନୀ, ଦ୍ରୌପଦୀ, ମନ୍ଦୋଦରୀ, ଲୀଳା—ମୟୂରାକ୍ଷସ ସ୍ତ୍ରୀ, ଅହଲ୍ୟା ପ୍ରଭୃତି ବାଳୀଙ୍କୁ—ସ୍ତ୍ରୀମାନଙ୍କୁ, ବଲ୍ଲଭବ୍ରତା—ପତିବ୍ରତା ବୋଲି ଲୋକେ ବୋଲନ୍ତି । (ଏମାନଙ୍କର ଏକରୁ ଅଧିକ ପତି ଥିଲେ) । ସେମାନେ ଏହି ଗୀତ (ଶ୍ରୀରାଧାଙ୍କ ଆଚରଣ)କୁ ବିଗୁରି ନିତ ଆତ୍ମନିନ୍ଦନ—ନିଜକୁ ନିନ୍ଦା କରୁଥିବେ ।

ବିଶେଷେ ଆଶାତରୁକୁ ଗୋ ।
ବଚନ ରଚନେ ବଢ଼ାଇ ବଢ଼ାଇ କାଟିଲୁ କଉଁ ଯଶକୁ ଯେ । ୨୨ ।
ବୋଇଲା ଦୂତୀ, ହେ ନାଗରମଣି । ବଲ୍ଲବୀ-କୁଚ ମହୀଧର ଜାଣି ।
ବିଶ୍ୱକେତୁ-ଫୁଲଶର ନ ଭେଦେ । ବନିତା ଦମ୍ଭ ଅଛି ଏଣୁ ହୃଦେ ସେ ।
ବର ଉପାୟ ସଙ୍ଖଳ ହେ ।
ବାଳାମଣି ହୃଦପଥରକୁ ପାଣି କଲେ ହୋଇବ କୁଶଳ ଯେ । ୨୩ ।
ବ୍ୟଥା ଏ କଥାରେ କୃଷ୍ଣଙ୍କୁ ଦେଇ । ବିଦା ହୋଇ ଦୂତୀ ପୁରେ ଚଳଇ ।
ବରଜବୀର ଆତୁର ସାଗରେ । ବୁଦ୍ଧି ଉଚ୍ଛନ୍ନ ଲହରୀ ପ୍ରଖରେ ସେ ।
ବିଶେଷ ଭ୍ରମ ଭଉଁରୀ ଯେ ।
ବୁଡ଼ାଏ ଉଠାଏ ରାଘବ କୁମ୍ଭୀର ଘୋର ଦଶା ଭୟକାରୀ ଯେ । ୨୪ ।
ବ୍ରହ୍ମାଣ୍ଡେଶ୍ୱର ଯାହା ଅଂଶୁ ଜାତ । ବିବଶ ରସରେ ହେଲେ ଏମନ୍ତ ।
ବଢ଼େ ଦଗଧ-ସୁନା-ପ୍ରୀତିବାନ । ବିଚନ୍ଦ୍ର୍ୟ ସ୍ୱଇଚ୍ଛା ପ୍ରୀତିସନ୍ଧାନ ସେ ।
ବିଗୁର ସାଧବେ ଯେନ ହେ ।
ବିଦର୍ଭବାସୀ ରାଧାକୃଷ୍ଣ ଭବନେ ଯାଉ ଅଭିମନ୍ୟୁ ବନ ହେ । ୨୫ ।

---

୨୨—କୁନ୍ତ—ଅସ୍ତ୍ରବିଶେଷ । ସୁଧାରେ—ଅମୃତରେ । ବଚନ ରଚନେ—କଥା କୁହାରେ । ଯଶକୁ—କେଉଁ କୀର୍ତ୍ତି ପାଇବାକୁ ।

୨୩—ବଲ୍ଲବୀ—ଗୋପୀ ଶ୍ରୀରାଧାଙ୍କର । କୁଚ—ସ୍ତନ । ମହୀଧର—ପର୍ବତ । ବିଶ୍ୱକେତୁ—କନ୍ଦର୍ପର ।.ଫୁଲଶର—ଫୁଲକାଣ୍ଡ । ବନିତା ଦମ୍ଭ—ପତିବ୍ରତା ଟାଣ । ବର ଉପାୟ—ଭଲ କୌଶଳ । ସଙ୍ଖଳ—ଖୋଜ ।

୨୪—ବ୍ୟଥା—ପୀଡ଼ା । ବରଜବୀର—ଶ୍ରୀକୃଷ୍ଣଙ୍କୁ । ଆତୁରସାଗରେ—ବ୍ୟାକୁଳତା ସମୁଦ୍ରରେ । ବୁଦ୍ଧି ଉଚ୍ଛନ୍ନ ଲହରୀ ପ୍ରଖରେ—ବୁଦ୍ଧିଭ୍ରଂଶ ରୂପକ ପ୍ରଖର ଲହରୀରେ । ବିଶେଷଭ୍ରମ ଭଉଁରୀ—ଅଧିକ ଭ୍ରମରୂପକ ଭଉଁରୀ । ରାଘବ କୁମ୍ଭୀର ଘୋର ଦଶା ଭୟକାରୀ [ଭଉଁରୀ ପକ୍ଷେ] ରାଘବ ମାଛ ଓ କୁମ୍ଭୀରମାନଙ୍କର ଭୟଜନକ ଭୟଙ୍କର ଅବସ୍ଥା । ଭ୍ରମପକ୍ଷେ—ରାଘବ (ରମାବତାରଧାରୀ) କୁମ୍ଭୀର ଘୋରଦଶା—ହାତୀର ଭୟର ଅବସ୍ଥାରଭୟକାରୀ—ନାଶକ, ଶ୍ରୀକୃଷ୍ଣଙ୍କୁ । ଘୋରୁ ପାଠ ମଧ୍ୟ ଠିକ୍ ।

୨୫—ବ୍ରହ୍ମାଣ୍ଡେଶ୍ୱର—ବିଷ୍ଣୁ । ଅଂଶୁ—ଅଂଶରୁ । ରସରେ—ଶ୍ରୀରାଧାଙ୍କ ସ୍ନେହରେ । ବିବଶ—ବିହ୍ୱଳ । ଦଗ୍ଧ-ସୁନା-ପ୍ରୀତିବାନ—ଆଉଟା ସୁନାରୂପକ ପ୍ରୀତିର ଜ୍ୟୋତି । ସ୍ୱଇଚ୍ଛା ପ୍ରୀତି ସନ୍ଧାନ—ନିଜ ଇଚ୍ଛାରେ ପ୍ରୀତିଯୋଗ । ବିଚନ୍ଦ୍ର୍ୟ—ଚନ୍ଦ୍ରମାସ୍ୟ । ବିଦର୍ଭବାସୀ—ମଦନବାସିନୀ ବା କୁଣପୁଷ୍ପ ତୁଲ୍ୟ ବାସିନୀ ଶ୍ରୀରାଧା-କୃଷ୍ଣଙ୍କ ଭବନାରେ ।

# ଅଷ୍ଟାବିଂଶ ଛାନ୍ଦ

## ଶ୍ରୀକୃଷ୍ଣଙ୍କ ଉକ୍ତି

ଆଦ୍ୟ ଭ୍ରାନ୍ତାନୁପ୍ରାସ । ରାଗ—ଘଣ୍ଟାରବ

ସରସେ ଗୁନ୍ଦ କରିବି । ସନ୍ତୁମାନସ ହରିବି ।
ସଞ୍ଚାରି ଗମନେ ଗୋବିନ୍ଦ ବିମନେ ବୋଲନ୍ତି, କେହ୍ନେ ତରିବି । ୧ ।
ସୁମନସେ ମନାଇବି । ସୁମନସ ଚଢ଼ାଇବି ।
ସୁମନା ଆନନ ଆନନ୍ଦସଦନ ଦର୍ଶନ ଅବା ପାଇବି । ୨ ।
ସନ୍ତୋଷ ହେବାକୁ ଦେବୀ । ସରଙ୍ଗ ମନ୍ଦାର ଦେବି ।
ସରିଗ ନଜାଣି ନ କଲେ ତା ବିନା ଜୀବନ ନିଜ ନ ଦେବି । ୩ ।
ସକଳ ଶାସ୍ତ୍ରେ ଖୋଜିବି । ସବୁ ଉପାୟ ସର୍ଜିବି ।
ସ୍ୱବଶ ତାହାକୁ ନ କଲେ ଦେହକୁ ପ୍ରୟାଗରେ ବିସର୍ଜିବି । ୪ ।
ସତେହେଁ ଯେବେ ପାଇବି । ସଂସାର ସାର ହୋଇବି ।
ସମସ୍ତ ଲୋକରେ ମୁହିଁ ରସିକରେ ନୃପଛତ୍ର ଟେକାଇବି । ୫ ।
ଶୁଭାଙ୍ଗୀଭଙ୍ଗୀ ଦେଖିବି । ସୁଭାଗ୍ୟ ନେତ୍ର ଲକ୍ଷିବି ।
ସୁନାସୀର ପଦ ସୁନାସୀର ପଦତଳେ କାହିଁକି ଲେଖିବି । ୬ ।
ସାର ବଚନ ଶୁଣିବି । ସାରଙ୍ଗେ କପା ଗଣିବି ।
ଶାରଦାବାଣୀକୁ ମନପୂରୁଣୀକୁ ପାଣିକି କପା ଆଣିବି । ୭ ।

---

୧—ସଞ୍ଚାରି—ଦୂତୀ । ବିମନେ—ଦୁଃଖରେ ।

୨—ସୁମନସେ—ଦେବତାଙ୍କୁ । ସୁମନସ—ଫୁଲ । ସୁମନା-ଆନନ—ସୁବୁଦ୍ଧି ଶ୍ରୀରାଧାଙ୍କର ମୁଖ ଆନନ୍ଦ ସଦନ—ଆନନ୍ଦର ଘର ପରି ।

୩—ଦେବୀ—ଦୁର୍ଗାଙ୍କୁ । ସରଙ୍ଗ—ଲାଲ । ସରିଗ—ଶରଧା । ଜୀବନ ନ ଦେବି ନିଜ—ପ୍ରାଣ ଝାସ ଦେବି ନାହିଁକି ଅର୍ଥାତ୍ ଦେବି ।

୪—ଶାସ୍ତ୍ରେ—ମନ୍ତ୍ର, ତନ୍ତ୍ର ଓ କାମସୂତ୍ର ପ୍ରଭୃତି ଶାସ୍ତ୍ରରେ । ସ୍ୱବଶ—ନିଜ ଅଧୀନ ।

୫—ସାର—ଉତ୍କୃଷ୍ଟ । ନୃପଛତ୍ର—ରାଜଛତ୍ର । ରସିକଙ୍କ ମଧ୍ୟରେ ରାଜା (ଶ୍ରେଷ୍ଠ) ହେବି ।

୬—ଶୁଭାଙ୍ଗୀଭଙ୍ଗୀ—ସୁନ୍ଦରୀ ଶ୍ରୀରାଧାଙ୍କର ଭଙ୍ଗୀ (ଛଇ) । ସୁଭାଗ୍ୟ—ବଡ଼ ଭାଗ୍ୟବନ୍ତ ବୋଲି । ନେତ୍ର—ଆଖିର । ଲକ୍ଷିବି—ବିଗୃହିବି । ସୁନାସୀର ପଦ—ଇନ୍ଦ୍ରପଦ । ସୁନାସୀର ପଦତଳେ—ସୁନ୍ଦର ନାସିକା ଥିବା ଶ୍ରୀରାଧାଙ୍କର ପାଦତଳକୁ । ଲେଖିବି—ଗଣିବି ।

ସୁନ୍ଦରୀ ମୁଖ ଚୁମ୍ବିବ । ସୁଧାଂଶୁକୁ ନ ଚୁମ୍ବିବ ।
ଶୁଝିଲ ତୋ ଦାଉ, ମୋତେ ନ କମ୍ପାଉ ଏବେ ସେ କାଳ କମ୍ବିବ । ୮ ।
ସୁନାଙ୍ଗୀ ସଙ୍ଗ ପାଇବ । ସୁନାଗର ବୋଲାଇବ ।
ସୁମନଶର ଶରାସନ ନ ଧର ଏଥର, କ ଛଳାଇବ । ୯ ।
ସମ୍ଭୋଗ ରଙ୍ଗେ ସଜିବ । ସନାଦ ବଳା ଖଞ୍ଜିବ ।
ଷଟ୍ପଦ ନାଦ ବାଦନ ସମ୍ପାଦ କ ବୋଲ ସତେ ତର୍ଜିବ । ୧୦ ।
ସୁମନ୍ତଅଙ୍ଗେ ଜଡ଼ିବ । ସୁଧା ସମୁଦ୍ରେ ବୁଡ଼ିବ ।
ସୁବାସ କର୍ପୂର ଚନ୍ଦନ ଆଦର କାହିଁ ପାଇଁ ନ ଛୁଡ଼ିବ । ୧୧ ।
ଶ୍ରୀପଦେ ଲକ୍ଷା ସଜିବ । ଶ୍ରୀପଦ ସବୁ ଅର୍ଜିବ ।
ଶ୍ରୀମୁଖ ଆନାଇଁ ମୁହୂର୍ତ୍ତେ କମ୍ପାଇ ଗରୁଡ଼ ସ୍ତମ୍ଭ ବର୍ଜିବ । ୧୨ ।
ସେବା ସ୍ନେହ ବଢ଼ାଇବ । ଶେଯଶୁଆ ଛଡ଼ାଇବ ।
ସେ କୋମଳାଙ୍ଗୀକ ଆନନ୍ଦଦାୟୀକ ଛନ୍ଦରେ ପହୁଡ଼ାଇବ । ୧୩ ।
ସାଭିଳାସ ନ ଏଡ଼ିବ । ଶାଢ଼ୀ ପରାପ୍ତେ ଜଡ଼ିବ ।
ସାହଚର୍ଯ୍ୟପଠିମା ଗହଣ ଖଟଣି ଛୁଇ ପ୍ରାୟୁ ନ ଛୁଡିବ । ୧୪ ।
ସୁଲକ୍ଷଣାକୁ ଚୁମ୍ବିବ । ଶୁଭ୍ର ଆଉ କ କମ୍ବିବ ।
ସୁର ଆଚରଣ ପଣକୁ ସେ କ୍ଷଣ ଈକ୍ଷଣ ଦାନ ବନ୍ଧିବ । ୧୫ ।
ସରାଗେ କୋଳ ରଞ୍ଜିବ । ସବୁ ସମ୍ପତ୍ତି ସଞ୍ଚିବ ।
ସରିତ ସାଗର ଅଭେଦ ହେବାର କଉଁ ଅଧିକ ପାଞ୍ଚିବ । ୧୬ ।

---

୭—ସାର-ଉତ୍କୃଷ୍ଟ । ସାରଙ୍ଗେ—ସାରଙ୍ଗୀ ବାଜାକୁ । ଶାରଦାବୀଣାକୁ—ସରସ୍ୱତୀଙ୍କର ବୀଣାକୁ । ମନଫୁଲ୍ଲଣାକୁ—ମନ ପ୍ରଫୁଲ୍ଲ କରିବା । ପାଣିକ—ହାତକୁ ।

୮—ସୁଧାଂଶୁକୁ—ଚନ୍ଦ୍ରକୁ ।

୯—ସୁନାଙ୍ଗୀ—ସ୍ୱର୍ଣ୍ଣବର୍ଣ୍ଣା ଶ୍ରୀରାଧାଙ୍କ । ସୁମନଶର—କନ୍ଦର୍ପ । ଶରାସନ—ଧନୁ ।

୧୦—ସମ୍ଭୋଗ—ସୁରତ । ରଙ୍ଗେ—କୌତୁକରେ । ସନାଦ—ବାଜେଣୀ । ଷଟ୍ପଦନାଦ ଭଅଁରର ଗୁଣୁଗୁଣୁ ଶବ୍ଦ । ବାଦ—ବିବାଦ । ନ ସମ୍ପାଦ—ନ କର ।

୧୧—ସୁବାସ—ସୁଗନ୍ଧ ।

୧୨—ଶ୍ରୀପଦେ—ଶ୍ରୀଯୁକ୍ତ ପାଦରେ । ଲକ୍ଷା—ଅଳତା । ଶ୍ରୀପଦ—ଐଶ୍ୱର୍ଯ୍ୟ । ଗରୁଡ଼ସ୍ତମ୍ଭ—ହାତଯୋଡ଼ି ଆଗରେ ଠିଆ ହେବା ।

୧୪—ସାଭିଳାଷ (ସାଭିଳାଷ) ମନୋରଥ । ସାହଚର୍ଯ୍ୟପଠିମା—ସାହଚର୍ଯ୍ୟ ପଢ଼େ ଯେଉଁ ରାଧା । ଗହଣ ଖଟଣି—ସଙ୍ଗସେବାକୁ ।

୧୫—ସୁର ଆଚରଣ ପଣକୁ—ଦେବତାମାନଙ୍କ ଆଚରଣ ନିର୍ନିମେଷ ପଣକୁ । ଈକ୍ଷଣ—ପଲକ ନ ପଡ଼ିବା କଥାକୁ । ବନ୍ଧିବ—ଚୁମ୍ବିବ ।

ଶରୀର ସାର୍ଥ କରିବି । ସର୍ପବନ୍ଧ ଆଚରିବି ।
ସକର୍ମ ଶ୍ରୀମୁଖେ ଗୁଡ଼ ଗୁଡ଼ ଦୁଖେ ବୋଇଲେ କସ କରିବି । ୧୭ ।
ସତ୍ୟ ଆଗ କରାଇବି । ସର୍ଜି ଖେଳେ ହରାଇବି ।
ସନାଦ କଙ୍କିଣୀ କଟିତଟେ ପୁଣି ଜାବ ଥିବ ଭିଡ଼ାଇବି । ୧୮ ।
ସୁମନ୍ତକ ଛଳାଇବି । ଶୁଣିବାକୁ ବଳାଇବି ।
ସୁକ୍ଷୀନ-ବସନା ବୋଲିବେ ସତେ ନା ଋଣୀ ହେବୁ ଚଳାଇବି । ୧୯ ।
ସୁମନ୍ତ-କର ଧରିବି । ଶୂଣା କଙ୍କିଣୀ ଛିରିବି ।
ଶୁଣି ମୋହୋ ଭାଷା ବଳା ଖଞ୍ଜୁ ଯୋଷା ଚରଣ ଧରି ବାରିବି ।୨୦।
ସୁବେଣୀ ନାଟ ଦେଖିବି । ସୁମେରୁ ପଦ୍ମେ ରଖିବି ।
ସୁମନ୍ତ ମୋ ବାଣୀ ଶୁଣି ନାଶାମଣି ନଗ୍ନଇବ ପରଖିବି । ୨୧ ।
ସପଥ ମୋର ଭାଙ୍ଗିବି । ସପ୍ତର୍ଦ୍ଧିବସ୍ତ୍ରା ଚୋଧିବି ।
ସପ୍ତକମାନାଦ ଶୁଣି ମୁଁ ଆନନ୍ଦ-ରସ-ସାଗରେ ଭାସିବି । ୨୨ ।
ସେ ଅଙ୍ଗେ ବାସ ହରିବି । ସ୍ନେହରସ ବର୍ଷିବି ।
ସେ ବ୍ୟାଜବେଦନେ ଆନନଧୂନନେ ଆନ ଦେଲେ କି କରିବି । ୨୩ ।
ସାରଣା ଆଗ କରିବି । ଶାଢ଼ୀ ଦେବା ଆଚରିବି ।
ସାତକୁମ୍ଭଗୋରି ବୋଲି ସତ୍ୟ କରି 'କାମନାକୁ ନ ବାରିବି' । ୨୪ ।

---

୧୬—ସରିତସାଗର—ନଈ ଓ ସମୁଦ୍ର । ଅଭେଦ—ଅଭିନ୍ନ ଏକାକାର ହେବାଟା କି ଅଧିକ କଥା ? ଏହା ପାଣ୍ଠିବ ।

୧୭—ସର୍ପବନ୍ଧ—ରତିବନ୍ଧ ବିଶେଷ । ସକର୍ମ ଶ୍ରୀମୁଖେ—ଶ୍ରୀମୁଖ ହଲାଇ ।

୧୮—ସନାଦ—ବାଜୁଥିବା । ଭିଡ଼ାଇବି—ପିନ୍ଧାଇବି ।

୧୯—ସୂକ୍ଷ୍ମୀନ—ସରୁ ।

୨୦—କର—ହାତ । କଙ୍କିଣୀ—ଶବ୍ଦ । ଶୂଣା—ଶୁଣାଅ ତେବେ ମୁଁ ଛିରିବି । ଭାଷା—କଥା । ଯୋଷା—ସ୍ତ୍ରୀ ଶ୍ରୀରାଧା ।

୨୧—ସୁବେଣୀ—ଶ୍ରୀରାଧାଙ୍କର ସୁନ୍ଦର ବେଣୀର ନାଟ ବିପରୀତ ବନ୍ଧରେ ଦେଖିବି । ସମେରୁ ପର୍ବତକୁ ପଦ୍ମରେ ରଖିବି ଅର୍ଥାତ୍ ପୁରୁଷାୟିତରେ ଶ୍ରୀରାଧାଙ୍କର ସ୍ତନ ଓଲଟାହାତରେ ଧରିବି । ସୁମନ୍ତ ଶ୍ରୀରାଧା ମୋ କଥା ମାନି ମୁଖସ୍ଖଳନ ଦ୍ୱାରା ନାସାମଣି ହଲାଇବେ ପରୀକ୍ଷା କରିବି ।

୨୨—ସପଥ—ଶପଥ, ରାଣ । ସପ୍ତର୍ଦ୍ଧିବସ୍ତ୍ରା—ଚଉଦବରଷୀ ଶ୍ରୀରାଧାଙ୍କୁ । ସପ୍ତକମାନାଦ—ପୁରୁଷାୟିତରେ କଟିକିଙ୍କିଣୀରୁ ଜାତ ଶବ୍ଦ । ଆନନ୍ଦ-ରସ-ସାଗରେ ହର୍ଷରସ ସମୁଦ୍ରରେ ।

୨୩—ବ୍ୟାଜବେଦନେ—ମିଛରେ କାନ୍ଦିଲେ । ଆନନଧୂନନେ—ମୁହଁ ହଲାଇ । ଆନ ଦେଲେ—ରାଣ ପକାଇଲେ ।

ସବନସ୍ଥ ମୁଁ ହୋଇବ । ସତ୍ୟ ଏତେ କରାଇବ ।
ଶଶିକରଣରେ ଚୂର୍ଣ୍ଣପ୍ରାଙ୍ଗଣରେ ବପଶାତ ମଙ୍ଗାଇବ । ୨୫ ।
ସୁମନେ ବେଶ ସାଜବ । ସୁ-ମକଶ୍ୱ ସରଜବ ।
ସୁପତ୍ରାବଳୀକ ଲେଖନେ ବାଳୀକ ମନାଇଁ ନଖ ମାଜବ । ୨୬ ।
ସୁଗ୍ରୀଷ୍ମ ଦେଖି ଡ଼ରବ । ସୁମନା ମନ ହରବ ।
ସୁମନ-ବନରେ ଜଳଯନ୍ତ୍ର-ପୁରେ ବସି ଦନକୁ ସାରବ । ୨୭ ।
ଶ୍ରୀଖଣ୍ଡ ସ୍ତନେ ଲେପିବ । ଶ୍ରୀଉର ଉରେ ସ୍ଥାପିବ ।
ଶ୍ରୀଅଙ୍ଗ ଶୀତଳ ପାଇଁ ଗ୍ରୀଷ୍ମକାଳ-ତାପେ ଆଉ ନ ତାପିବ । ୨୮ ।
ଶ୍ୟାମା ମତ ବଢ଼ାଇବ । ସାମୁଦ୍ରକ ପଢ଼ାଇବ ।
ସାର ଏ ବରଷା ବୋଲ ରସାଳସା ବାହୁ କଣ୍ଠେ ବେଢ଼ାଇବ । ୨୯ ।
ଶରଦ ଯନ୍ତୁ ଦେଖିବ । ସରୋଜାକ୍ଷୀକ ଲେଖିବ ।
ସରୁଛି ମୁଁ ଭୂରେ ତୁ ପବ ପ୍ରଭୁରେ ମୋ ଜୀବ କେହ୍ନ ରଖିବ । ୩୦ ।
ସ୍ନେହେ ତାକୁ ଦ୍ରବାଇବ । ସେବ୍ୟକ୍ଷଣି ଅଣାଇବ ।
ସେ ସଙ୍ଗୀତ ରଙ୍ଗ କରବ ଅନଙ୍ଗ ମୁଖେ କାଳ ଲଗାଇବ । ୩୧ ।

---

୨୪—ହେ ଶାତକୁମ୍ଭଗୋର—ସୁନାଗୋର ଶ୍ରୀରାଧେ ! ମୋ କାମନା—ଇଚ୍ଛାକୁ ନ ବାରବ—ବାରଣ କରବ ନାହିଁ, ସତ୍ୟ କର କହ । ଏହା ଆଗେ ସାରଣା—ଠିକ୍ କରବ । ପଛେ ଶାଢ଼ୀ ଦେବ ।

୨୫—ଶଶିକରଣରେ—ଚନ୍ଦ୍ର ଆଲୋକରେ । ଚୂର୍ଣ୍ଣପ୍ରାଙ୍ଗଣରେ—ଚୂନ ଅଗଣାରେ ।

୨୬—ସୁମନେ—ଫୁଲରେ । ସୁ-ମକଶ୍ୱ—ଶଡାପାଟି । ସରଜବ—କରବ । ସୁପତ୍ରାବଳୀକ—ସ୍ତନାଦରେ ଲତାପତ୍ରାଦ ଚତ୍ରରଚନାକୁ । ଲେଖନେ—ଲେଖିବାକୁ ।

୨୭—ସୁମନା—ସୁବୁଦ୍ଧି ଶ୍ରୀରାଧାଙ୍କ । ସୁମନବନରେ—ଫୁଲ ବଗିଚାରେ । ଜଳଯନ୍ତ୍ରପୁରେ—ଯେଉଁ ଘରେ ପାଣିକଳରୁ ପାଣି ପଡ଼େ ।

୨୮—ଶ୍ରୀଖଣ୍ଡ—ଚନ୍ଦନ । ଶ୍ରୀଉର—ରାଧାଙ୍କ ସ୍ତନକୁ । ଶ୍ରୀଅଙ୍ଗ ଶ୍ରୀତଳ—ଶ୍ରୀରାଧାଙ୍କ ଦେହ ଶୀତଳତାକୁ । ତାପେ—ତାତରେ ।

୨୯—ଶ୍ୟାମା—ଶ୍ରୀରାଧା । ଶୀତେ ସୁଖୋଷ୍ଣସର୍ବାଙ୍ଗୀ ଗ୍ରୀଷ୍ମେ ଯା ସୁଖଶୀତଳା । ତପ୍ତକାଞ୍ଚନବର୍ଣ୍ଣାଭା ସା ସ୍ତ୍ରୀ ଶ୍ୟାମେତ କଥ୍ୟତେ । ଶ୍ୟାମା ଯୌବନମଧ୍ୟସ୍ଥା—ଏ ଅର୍ଥ ଏଠାରେ ପ୍ରଯୁଜ୍ୟ ନୁହେଁ । ମତ—ମନ । ସାମୁଦ୍ରକ—ଲକ୍ଷଣଜ୍ଞାପକ ଶାସ୍ତ୍ର, ଯେଉଁ ଶାସ୍ତ୍ର ପଢ଼ିଲେ ମଣିଷଙ୍କର ଭଲ ମନ୍ଦ ଜଣା ପଡ଼େ । ସାର—ଉତ୍କୃଷ୍ଟ । ରସାଳସା—ରସପୂର୍ଣ୍ଣା ରାଧାଙ୍କର ।

ଶୀତଳ ଋତୁ ପାଇବ । ଶିବାରିକ କମ୍ପାଇବ ।
ସ୍ମିତ ହାସେ ଠାରି ଦେବ ଏ ଶର୍ବରୀ ବନ୍ଧୁ ହିତ ଜଣାଇବ । ୩୨ ।
ସିହାଣୀ ପାଦେ ଖଟିବ । ଶୀତ କଲି ତ ବଟିବ ।
ଶୀଘ୍ରରେ ପଣନ୍ତ ଘୋଡ଼ାଇଲେ ମୁଁ ତ । ଶିଶିର ଭୟ କାଟିବ । ୩୩ ।
ସାର ଋତୁକୁ ଗୁହିଁବ । ସାରଙ୍ଗୀ କରେ ବାଇବ ।
ସାର ପିକମାନ କରି ଗୀତ ଗାନ ମୋ ଗୁଣ ଦେଇ କହିବ । ୩୪ ।
ସୁମନ୍ତ କର ଧରିବ । ସୁମନା ତୋଳା ବାରିବ ।
ସୁମନା ଏ ଗ୍ରନ୍ତ କଲେ ଦାସ ଗତି କସ ଆଉ ପଚାରିବ । ୩୫ ।
ସେ ବନେ ଭ୍ରମୁ ଗୁହିଁବ । ସେବକ ପଣ ବହିବ ।
ଶେଷାଞ୍ଚଳ ଧରି ଶ୍ରମସ୍ୱେଦ ବାରିବାର ଭାଗ୍ୟ କ କହିବ । ୩୬ ।
ଶେଯହିଁ ସଜଡ଼ାଇବ । ସେବତୀକ ପଡ଼ାଇବ ।
ସେ ତ ସୁକୁମାରୀ ବାଧିବାକୁ ଡରି ବୃନ୍ତ ଯତ୍ନେ ଛଡ଼ାଇବ । ୩୭ ।

---

୩୦—ସରୋରୁହାକ୍ଷୀକ—ପଦ୍ମନେତ୍ରୀ ଶ୍ରୀରାଧାଙ୍କୁ । ଲେଖିବ—ଗଣି ଦେବ । ଭୂରେ—ପୃଥିବୀରେ । ପ୍ରଭୁ—ମାଲିକ । କେନ୍ଦୁ—କପଟ ।

୩୧—ଦ୍ରବାଇବ—ତରଳାଇବ । ସଙ୍ଗୀତରଙ୍ଗ—ଗାନକୌତୁକ । ଅନଙ୍ଗ—କନ୍ଦର୍ପ । କାଳି ଲଗାଇବ—ହଟେଇ ଦେବ ।

୩୨—ଶୀତଳ—ହିମ । ଶିବାରିକ—କନ୍ଦର୍ପକୁ । ସ୍ମିତହାସେ—ମନ୍ଦହାସରେ । ହେ ବନ୍ଧୁ ! ଶର୍ବରୀ—ରାତ୍ରି । ହିତ—ଭଲ ।

୩୩—ସିହାଣୀ—ଚରଣ ଶ୍ରୀରାଧାଙ୍କ । ବଟିବ—ଭଣ୍ଡାଇବ । ଶିଶିରଭୟ—ଶୀତଭୟ ।

୩୪—ସାର ଋତୁକୁ—ଉତ୍କୃଷ୍ଟ ଋତୁ ବସନ୍ତକୁ । ସାରଙ୍ଗୀ—ବାଜାକୁ କରେ-ହାତରେ । ପିକମାନ—ପଞ୍ଚମସ୍ୱରକୁ । ସାର—ଅଧିକ ଶ୍ରେଷ୍ଠ କରି ଗୀତ ଗାନ କର ।

୩୫—ସୁମନ୍ତକର—ଶ୍ରୀରାଧାଙ୍କ ହାତ । ସୁମନା ତୋଳା—ଫୁଲ ତୋଳିବା । ବାରିବ—ମନା କରିବ । ହେ ସୁମନା ତୁ ଏ ଗାଢ (ଫୁଲତୋଳା) କଲେ ଆଉ ଦାସ (ଗୁକର—ମୋର) ଗତି କଣ ? ମୁଁ ବା ଆଉ କଣ କରିବ ?

୩୬—ସେ (ଶ୍ରୀରାଧା) ବଣରେ ବୁଲି ବୁଲି ଗୁକର ହେବ । ଶେଷାଞ୍ଚଳ—ଲୁଗାକାନି । ଶ୍ରମସ୍ୱେଦ—ଝାଳ । ବାରିବାର—ପୋଛି ଦେବାର । ଭାଗ୍ୟ—ସୌଭାଗ୍ୟ ବିଷୟ ।

୩୭—ସୁକୁମାରୀ—କୋମଳାଙ୍ଗୀ ତାଙ୍କୁ କାଟିବ ବୋଲି । ସେବତୀକ—ସେବତୀ ଫୁଲକୁ । ପଡ଼ାଇବ—ପକାଇବ । ବୃନ୍ତ—ଡେମ୍ଫ ।

ସୁମନେ ପଙ୍ଖା ରଞ୍ଜିବ । ସୁମରୁ ଧନେ ବଞ୍ଚିବ ।
ସୁମତି ତା ଜାଣି ମାଗିଲେ ତା ପୁଣି କଉଁ ବ୍ୟାଜ ବରଞ୍ଜିବ । ୩୮ ।
ସୁମନା ମନା କରିବ । ସହାସ୍ୟ ମୁଖ ଅନାଇବ ।
ସୁକାନ୍ତ ଏ ଦେହ କାହାର ନ କହ, ଏହି ବଚନେ ଛଳିବ । ୩୯ ।
ଶତଦଳ ଛୁନାଇବ । ସହାସ୍ୟ ମୁଖ ଅନାଇବ ।
ସଦା ପ୍ରସନ୍ନତା ଥିବ ନା ବନିତା ବୋଇଲେ ଲଜ ପାଇବ । ୪୦ ।
ସେ କ୍ଷଣି ପାଦ ଧରିବ । ସେ ଚଳିଲେ ନ ଡରିବ ।
ସେବକର ଦୋଷ କ୍ଷମା ହେଲ ଭଷ, କବି ଦୋଷୀ ଉଚ୍ଚାରିବ । ୪୧ ।
ସତେ ମୁଁ କଣ୍ଠ ପାଇବ । ଶଶିରୁ ସୁଧା ପିଇବ ।
ସ୍ୱପନ ସମ୍ପତ୍ତି ଭୋଗକୁ ପ୍ରାପତ ହେବ ପ୍ରତେ ଜନ୍ମାଇବ । ୪୨ ।
ସାର ଯଶ ରଖାଇବ । ସାଧୁ ସୁଖ ବଢ଼ାଇବ ।
ସାମନ୍ତସିଂହାର ବୋଲେ ଦାମୋଦର ରାଧା ତୁଳେ ମିଳାଇବ । ୪୩ ।

---

୩୮—ସୁମନେ—ଫୁଲରେ । ସୁମରୁଁ—ବଞ୍ଚି ହେବାକୁ ମନେ କରୁ କରୁ । ଧନେ—ଶ୍ରୀରାଧାଙ୍କୁ । ସୁମତି—ବୁଦ୍ଧିମତୀ ଶ୍ରୀରାଧା । ମାଗିଲେ—ମୋତେ ପଙ୍ଖା ମାଗିଲେ । ବ୍ୟାଜ—କପଟ ।

୩୯—ସୁମନା ଶ୍ରୀରାଧା ବଞ୍ଚିବାକୁ ମନା କଲେ, ବାରଣ କରିବ ଅର୍ଥାତ୍ ମନା ମାନିବ ନାହିଁ । ହେ ସୁକାନ୍ତ—କାନ୍ତିମନ୍ତ ।

୪୦—ଶତଦଳ—ପଦ୍ମ । ସହାସ୍ୟମୁଖ—ଶ୍ରୀରାଧାଙ୍କ ମୁହଁ । ସଦା ପ୍ରସନ୍ନତା—ପ୍ରଫୁଲ୍ଲତା, ଥିବ ନା । ଏ ପଦ୍ମ ପରି ସମସ୍ତରେ ମଉଳିବ ଅର୍ଥାତ୍ ଆପଣଙ୍କ ବିରହରେ ମଉଳିବ ତ ନାହିଁ । ବନିତା—ଶ୍ରୀରାଧା ।

୪୧—ଭଷ—କୁହ । କବି ପଦ୍ମକୁ ତୁଳନା ଦେବାରେ ଦୋଷୀ—ମୁଁ ନୁହେ ଏହା କହିବି ।

୪୨—ମୁଁ କଣ୍ଠ—ରାଧାଙ୍କ ନିକଟକୁ । ଅଥବା ମୁକ୍ତ ସ୍ୱରୂପ । ଶଶିରୁସୁଧା—ଚନ୍ଦ୍ରଠାରୁ ଅମୃତ । ଶ୍ରୀରାଧାଙ୍କ ନିକଟ ପାଇବା ଓ ଚନ୍ଦ୍ରରୁ ଅମୃତ ପିଇବା ସମାନ । (ଅତଏବ ନିଦର୍ଶନାଲଙ୍କାର) । ସ୍ୱପ୍ନରେ ପ୍ରାପ୍ତଧନ ପୁଣି ସାକ୍ଷାତରେ ଭୋଗ ହେବ ? ଏ ପ୍ରତେ, ପ୍ରତ୍ୟୟ-ବିଶ୍ୱାସ ।

୪୩—ସାରଯଶ—ଉତ୍କୃଷ୍ଟ କୀର୍ତ୍ତି । ସାଧୁସୁଖ—ସାଧୁଲୋକଙ୍କର ସୁଖ ବା ନିଜ ଗୁରୁ ସାଧୁଚରଣ ଦାସଙ୍କର ସୁଖ । ଦାମୋଦର—ଶ୍ରୀକୃଷ୍ଣଙ୍କୁ ।

## ଊନବିଂଶ ଛାନ୍ଦ

## ଶ୍ରୀକୃଷ୍ଣ ରୂପ ବର୍ଣ୍ଣନ

ଅବନା ନୟୂମ । ରାଗ—କାଳୀ

ସଜ୍ଜନଗଣ କର ଶ୍ରବଣ ନନ୍ଦନନ୍ଦନ ଅଙ୍ଗ ।
ବ୍ରଜକଳନ୍ତ ମଦନଶସ୍ତ୍ର ଉଚ୍ଛନ୍ନ ଭକ୍ତ ରଙ୍ଗ ।
ସଜଳ—ନବଘନ—ସମ୍ଭବ ବରନ ବରଯତ୍ନ ।
କୃଷ୍ଣ-କମଳ-ପ୍ରଚ୍ଛଳଦଳ ମରକତଗଞ୍ଜନ ।୧।
ରମ୍ୟ କଜ୍ଜ୍ୱଳବର ଉଜ୍ଜ୍ୱଳ ତମସଚୟ ଜୟ ।
ଭ୍ରମର ସଞ୍ଚ ମସ୍ତକ-କଚ-ବନ୍ଧନ ସ୍ମର ଭୟ ।୩।
ବରହ୍ମବର ମଣ୍ଡନ କ-ର ନବପଲ୍ଲବ ସଙ୍ଗ ।
ଅର୍ଦ୍ଧଚନ୍ଦ୍ରକ କମଳସ୍ରକ ବନ୍ଧନ ଛନ୍ଦରଙ୍ଗ । ୪ ।
ରତ୍ନସଂଘଟ ମକରବତ ଶ୍ରବଣ ଅବତଂସ ।
ରମ୍ୟ ଅଞ୍ଜନ ଅକ୍ଷରଞ୍ଜନ କରଇ ମନ ବଶ । ୫ ।

---

୧—ନନ୍ଦନନ୍ଦନ ଅଙ୍ଗ—ଶ୍ରୀକୃଷ୍ଣଙ୍କର ଶ୍ରୀଅଙ୍ଗ । ବ୍ରଜକଳତ୍ର-ମଦନଶସ୍ତ୍ର—ବ୍ରଜାଙ୍ଗନାମାନଙ୍କର କନ୍ଦର୍ପଶର, ଅର୍ଥାତ୍ କାମ ପୀଡ଼ା ଦେଉଛ । କିମ୍ବା ଗୋପାଙ୍ଗନାମାନେ କାମଶର ପରି, ସେଥିରେ କୃଷ୍ଣଙ୍କ ଦେହ ଉଚ୍ଛନ୍ନ—ଉତ୍କଣ୍ଠିତ । ଭକ୍ତରଙ୍ଗ—ଭକ୍ତଙ୍କର ଆନନ୍ଦଦାୟକ ।

୨—ସଜଳ-ନବଘନ-ସମ୍ଭବ-ବରନ—ଜଳପୂର୍ଣ୍ଣ ନୂଆ ମେଘ ପରି ରଙ୍ଗ । ବରଯତ୍ନ—ବଡ଼ ଯତନ । କୃଷ୍ଣକମଳପ୍ରଚ୍ଛଳଦଳ ମରକତଗଞ୍ଜନ—କଳା ପଦ୍ମର ନିର୍ମଳ ପାଖୁଡ଼ା ଓ ମରକତମଣିକୁ ଶୋଭା ଜୟ କରୁଛ କିମ୍ବା କଳା ପଦ୍ମପାଖୁଡ଼ା ସେ କୃଷ୍ଣ ।

୩—ରମ୍ୟ କଜ୍ଜ୍ୱଳବର ଉଜ୍ଜ୍ୱଳ—ମନୋହର କଳା ପରି ଉଜ୍ଜ୍ୱଳ । ତମସଚୟ ଜୟ—ଅନ୍ଧକାରପୁଞ୍ଜଜିଣା । ଭ୍ରମର ସଞ୍ଚ—ଭଅଁର ପରି ସୁନ୍ଦର । ମସ୍ତକ କଚ ବନ୍ଧନ ସ୍ମର ଭୟ—ମୁଣ୍ଡର କେଶ ପାଶଟି କନ୍ଦର୍ପର ଭୟକାରୀ ଅଥବା କେଶପାଶଦ୍ୱାରା କାମଭୟକାରୀ । ତାର ଶୋଭା ଦେଖି କନ୍ଦର୍ପ ହାରି ଯାଉଛ ।

୪—ବରହ୍ମବର—ଉତ୍କୃଷ୍ଟ ମୟୂରପୁଚ୍ଛ, ନବପଲ୍ଲବ ସଙ୍ଗ—ନୂତନ ପତ୍ର ସହିତ; କ-ର—ମସ୍ତକର ମଣ୍ଡନ ହୋଇଅଛି । ଅର୍ଦ୍ଧଚନ୍ଦ୍ରକ—ଅର୍ଦ୍ଧଚନ୍ଦ୍ରାକାର ଅଳଙ୍କାର । କମଳସ୍ରକ—ପଦ୍ମମାଳା । ଛନ୍ଦରଙ୍ଗ—ଛନ୍ଦ ପ୍ରକାରରେ ଛନ୍ଦଣିରେ । ବନ୍ଧନ—ବନ୍ଧା ହୋଇଅଛି ।

୫—ରତ୍ନସଂଘଟ—ମଣିଖଚିତ । ମକରବତ—ମଗର ଆକାର । କୁଣ୍ଡଳ ଓ ଶ୍ରବଣ ଅବତଂସ—କର୍ଣ୍ଣରେ ଖୋସା ହୋଇଥିବା ଟାହିଆ ପ୍ରଭୃତି । ଅଥବା

ମଦନ ମନ ଅକ୍ଷ ବନ୍ଧନ ପରତକ୍ଷ ଲପନ ।
କଳଙ୍କହତ ଚନ୍ଦ୍ରମହତ କରଇ ତ ଦଳନ ।୬।
କଜ୍ଜ୍ୱଳବର୍ଣ୍ଣ ପଙ୍କଜ ଯନ୍ନ ଘଟନ ଅଘଟନ ।
ମର୍କତ ଦରପଣର ବରପଣ ତ ଅଯତନ ।୭।
ପବନବହ ସର ସଗ୍ରହ ସହ-ଅର୍ଣ୍ଣବଫଳ ।
ଚନ୍ଦ୍ରର ଖଣ୍ଡ ଉଜ୍ଜଳ ଗଣ୍ଡ ଦର୍ପକ-ଦର୍ପସ୍ଥଳ ।୮।
ପଲ୍ଲବରଙ୍ଗ ଅଧର ଭ॰ୀ କରଇ ପରତକ୍ଷ ।
ମନ୍ଦ ସରସ ସଂଟକ ହସ ଅମୃତ ତ'ଅଲକ୍ଷ ।୯।
କଣ୍ଠ ତ ଦର-ମହତହର କଳରବ ଗଞ୍ଜନ ।
ପଦ୍ମକଦମ୍ବ ରତନ ଦମ୍ଭହରକ ସ୍ରକଯନ୍ନ ।୧୦।
ଉର ମର୍କତ ଅଗର ବନ୍ତ ଅଲକ୍ଷ ତ ଲକ୍ଷଣ ।
ଗଜ ପ୍ରମତ୍ତ କର ସପତ ହସ୍ତଦଣ୍ଡ ଘଟଣ ।୧୧।

---

ଶ୍ରବଣ ଅବତଂସ—କର୍ଣ୍ଣଭୂଷଣ ଅର୍ଥାତ୍ କୁଣ୍ଡଳ । ରମ୍ୟଅଞ୍ଜନ—ମନୋହର କଜ୍ଜଳ । ଅକ୍ଷରଞ୍ଜନ—ଆଖିରେ ଶୋଭିତ ।

୬—ମଦନ ମନ ଅକ୍ଷବନ୍ଧନ—କନ୍ଦର୍ପର ମନ ଓ ଆଖିର ବନ୍ଧନକାରୀ । ପରତକ୍ଷ ଲପନ—ପ୍ରତ୍ୟକ୍ଷଦୃଷ୍ଟି ମୁଖ । କଳଙ୍କ ହତ—କଳଙ୍କ ଶୂନ୍ୟ । ମହତ—ଆଧିକ୍ୟ । ଦଳନ—ବିନାଶ ।

୭—ଯେ ଶ୍ରୀକୃଷ୍ଣଙ୍କ ମୁଖକୁ, ଓ ପଙ୍କଜ ଯନ୍ନ—କାଳିଆ ପଦ୍ମ ଶୋଭା । ଘଟନ—ତୁଳନାରେ । ଅଘଟନ—ଅନୁପଯୁକ୍ତ । ମର୍କତ ଦରପଣର—ମରକତମଣି ଦର୍ପଣର । ବରପଣ—ବଡ଼ପଣିଆ । ଅଯତନ—ଅଶୋଭନ ।

୮—ପବନବହ ସରସଗ୍ରହ—ପବନବହ ଯେ ଶବ୍ଦ ତାର ସର ଆଧାର ଅର୍ଥାତ୍ ନାସିକା—ନାକ, ଅର୍ଣ୍ଣବଫଳ ସହ ସଗ୍ରହ—ମୁକ୍ତାଯୁକ୍ତ, ହୋଇଅଛୁ । ଚନ୍ଦ୍ରର ଖଣ୍ଡଉଜ୍ଜଳ—ଅର୍ଦ୍ଧଚନ୍ଦ୍ର ପରି ସ୍ୱଚ୍ଛ । ଗଣ୍ଡ—କପୋଳ । ଦର୍ପକଦର୍ପସ୍ଥଳ—କନ୍ଦର୍ପର ଗର୍ବସ୍ଥାନ ।

୯—ଅଧର—ଓଷ୍ଠ । ପଲ୍ଲବରଙ୍ଗ—କୋମଳପତ୍ର ଶୋଭାକୁ । ପରତକ୍ଷ—ପ୍ରତ୍ୟକ୍ଷରେ । ଭଙ୍ଗ—ପରାଜୟ କରଇ । ମନ୍ଦସରସସଂଟକହସ—ରସପୂର୍ଣ୍ଣ ଚକ୍ ଚକ୍ ମନ୍ଦହାସକୁ ଅମୃତ ତ, ଅଲକ୍ଷ—ସମାନ ନୁହେ ।

୧୦—ଦରମହତହର—ଶଙ୍ଖର ବଡ଼େଇ ନାଶକ । କଳରବ ଗଞ୍ଜନ—ପାରା ପରାଭବକାରୀ ଅର୍ଥାତ୍ ପାରାକଣ୍ଠଠାରୁ ଅଧିକ ସୁନ୍ଦର । ପଦ୍ମକଦମ୍ବ—ପଦ୍ମସମୂହ ଅଥବା ପଦ୍ମ ଓ କଦମ୍ବ ଫୁଲର ଏବଂ ରତନ—ରତ୍ନମୟ ହାରର ଦମ୍ଭହରକ—ଧୈର୍ଯ୍ୟ ନାଶକ । ସ୍ରକଯନ୍ନ—ମାଳାର ଶୋଭା ବା ପଦ୍ମ ଓ କଦମ୍ବ ପୁଷ୍ପାଦରେ ଗୁନ୍ଥା ବନମାଳା ରତ୍ନହାରର ବଡ଼ପଣକୁ ତୁଚ୍ଛ କରୁଛୁ ।

ପତଙ୍ଗ କୃତ ରଙ୍ଗ ବ୍ୟକତ କରପତ୍ର ପ୍ରକଟ ।
ମଧ୍ୟର ସମ ବଜ୍ର ଉପମ ଏଣଇନ୍ଦ୍ର ଅଘଟ । ୧୨ ।
ଉଦର ଶତ ପତ୍ରର ଶତପତ୍ର ମହତହର ।
ବରଚରମ ଫଳକ-ରମ୍ୟ-ଗରବ-ଖର୍ବକର । ୧୩ ।
କନକ-ଯନ୍ତ୍ର ଜସ୍ବବସନ ସନକ-ଦମ୍ଭହର ।
ମଧ୍ୟ-ମଣ୍ଡନ ସ୍ୱନ ମଦନ-ମନ-ଧନଚଉର । ୧୪ ।
ଘନଜଘନ ମଲ୍ଲମଜ୍ଜନ-ସ୍ତମ୍ଭ-ଦମ୍ଭ-ତସ୍କର ।
ତଳର ଜଙ୍ଘ ଖଡ଼୍ଗଶୃଙ୍ଗ ବ୍ରୀଡ଼ବନ୍ଧନ-କର । ୧୫ ।
ଚରଣତଳ ରଙ୍ଗକମଳ-ମଦ-ମର୍ଦ୍ଦନକର ।
ପଦର ବନ୍ଧଛନ୍ଦନ ଶକ୍ରମନଆକର୍ଷଭର । ୧୬ ।

---

୧୧—ହର—ସ୍ତୁତ । ମର୍କତଅରର ବତ—ମରକତ ମଣିମୟ କପାଟ-ତୁଲ୍ୟ । ଲକ୍ଷଣ ଅଲକ୍ଷ୍ୟ—ତୁଳନା ଅଯୋଗ୍ୟ, ଅଥବା ଅତୁଳନୀୟ ଶୁଭ ଲକ୍ଷଣଯୁକ୍ତ । ଗଜପ୍ରମତ୍ତକର ଫଯତ—ମତ୍ତହସ୍ତିର ଶୁଣ୍ଡଦଣ୍ଡ ଯୋଜନା ହସ୍ତଦଣ୍ଡଘଟଣ—ବାହୁଦଣ୍ଡ ଶୋଭନ ।

୧୨—ବରପତ୍ର ( ହସ୍ତରୂପକ ପଲ୍ଲବରେ ) ପତଙ୍ଗକୃତରଙ୍ଗ ( ସୂର୍ଯ୍ୟଙ୍କ ଦ୍ୱାରା ରଙ୍ଗବର୍ଣ୍ଣ ) ପ୍ରକଟରୂପେ ବ୍ୟକତ ( ସ୍ଫୁଟ ) ହୋଇଅଛି । ବଜ୍ରଉପମ—ବଜ୍ରତୁଲ୍ୟ, ମଧ୍ୟର—କଟିର, ସମ ହେବାକୁ । ଏଣଇନ୍ଦ୍ର—ସିଂହ, [ ଏଣ—ମୃଗ ] । ଅଘଟ—ଅନୁପଯୁକ୍ତ ।

୧୩—ଉଦର—ପେଟ । ଶତପତ୍ର ପତ୍ରର—ପଦ୍ମପତ୍ରର । ମହତହର—ଶୋଭା ଓ କୋମଳତାକୁ ନାଶ କରୁଛି, ଏହା ସତ । ବରଚରମ—ଉତ୍କୃଷ୍ଟ ପିଠି । ଫଳକରମ୍ୟଗର୍ବ ଖର୍ବକର—ଢାଲର ଯେ ଶୋଭା ତାହାର ଗର୍ବକୁ ଊଣା କରିଦିଏ ।

୧୪—କନକଯନ୍ତ୍ରଜସ୍ବବସନ—ସୁନାଶୋଭାଜଣା ଅର୍ଥାତ୍ ହଳଦିଆ ବସ୍ତ୍ର । ସନକଦମ୍ଭହର—ସନକାଦି ଋଷିମାନଙ୍କର ଧୈର୍ଯ୍ୟ ଟାଳିଦିଏ । ମଧ୍ୟମଣ୍ଡନସ୍ୱନ—କଟିଭୂଷଣ ଶବ୍ଦ । ମଦନମନଧନଚଉର—କନ୍ଦର୍ପର ମନରୂପ ଧନର ଚୋର । ଅର୍ଥାତ୍ ମନ ହରଣ କଲେ ।

୧୫—ଘନଜଘନ—ଘଞ୍ଚ ଜଙ୍ଘ । ମଲ୍ଲମଜ୍ଜନସ୍ତମ୍ଭଦମ୍ଭତସ୍କର—ମାଲ ସାଧନଖମ୍ବର ଦୃଢ଼ତାହରଣକାରୀ । ମଜ୍ଜନ—ଆସକ୍ତ ଅର୍ଥାତ୍ ଯେଉଁ ଖମ୍ବରେ ସର୍ବଦା ମାଲମାନେ ଲଗି ରହିଥାନ୍ତି; ମଲ୍ଲମର୍ଦ୍ଦନପାଠ ମଧ୍ୟ ସମୀଚୀନ । ତଳର ଜଙ୍ଘ—ଜଙ୍ଘା ଅର୍ଥାତ୍ ପେଣ୍ଡା । ଖଡ଼୍ଗଶୃଙ୍ଗ—ଗଣ୍ଡା ଶିଙ୍ଗତୁଲ୍ୟ ଟାଣ ।

୧୬—ଚରଣତଳ—ତଳପା । ରଙ୍ଗକମଳ—ରକ୍ତପଦ୍ମର । ମଦମର୍ଦ୍ଦନକର—ଗର୍ବନାଶକାରୀ । ପଦର—ପାଦର । ବନ୍ଧଛନ୍ଦନ—ବଙ୍କାଭାବେ ଛନ୍ଦା । ଶକ୍ରମନ ଆକର୍ଷଭର—ଇନ୍ଦ୍ରଙ୍କର ମନ ଆକର୍ଷଣରେ ପୂର୍ଣ୍ଣ ଅଥବା ଅତି ଆକର୍ଷକ ।

ବଙ୍କ ମଧ୍ୟର କଣ୍ଠୁ-କରର ଶଙ୍କର ଦମ୍ଭହର ।
ନଟବରର ବଲ୍ଲବବ୍ରତ ମମ ମନର ହର । ୧୭ ।
ଜଗତଜନର ସଦ୍ରବ କର ବଂଶଯନ୍ତ୍ରଧର ।
ଦମ୍ଭ ଭଞ୍ଜନ ମନମଜ୍ଜନ ଶ୍ରବଣ ଜନଙ୍କର । ୧୮ ।
ପଥର ତରଳଇ ତ ସ୍ୱରପ୍ରସରଣ ପ୍ରଚରଣ ।
ମରଣଗଛ ପଲ୍ଲବ ସ୍ୱଚ୍ଛ ବସନ ତ ସ୍ଖଳନ । ୧୯ ।
ଚନ୍ଦ୍ର ତପନ ଜଳ ପବନ ପତଙ୍ଗ ସ୍ତମ୍ଭକର ।
ମମ ଧଇର୍ଯ୍ୟ ମନ ମନଜ ହୃତକର ମନ୍ତ୍ର । ୨୦ ।
ସଙ୍ଗ ସଙ୍ଘଟ ଇଚ୍ଛଇ ଘଟ-ଘଟକ କମଳଜ ।
କର ସଙ୍ଘଟ ବରଲମ୍ପଟ ଅକ୍ଷମନର ଭଞ୍ଜ । ୨୧ ।

---

୧୭—ବଙ୍କ—ବଙ୍କାଥିବ । ମଧ୍ୟର—କଟିର । କଣ୍ଠୁକରର—ଗଳା ଓ ହାତର । ଶଙ୍କରଦମ୍ଭହର—ଶିବଧୈର୍ଯ୍ୟନାଶକ । ଶିବ କୃଷ୍ଣଙ୍କ ତ୍ରିଭଙ୍ଗୀ ଦେଖି ନିଜ ତାଣ୍ଡବନୃତ୍ୟର ଅଙ୍ଗଭଙ୍ଗୀକୁ ତୁଚ୍ଛ ମଣିଲେ ବା ସେ ତ୍ରିଭଙ୍ଗୀଠାଣିରେ ମୁଗ୍ଧ ହେଲେ । ନଟବର—ନଟବର ବେଶଧାରୀ ଶ୍ରୀକୃଷ୍ଣ । ବଲ୍ଲବବ୍ରତ—ସଖୀମାନଙ୍କର ପତିବ୍ରତର ଓ ମମ ମନରହର—ମୋର ମନର ହରଣକାରୀ ।

୧୮—ଜଗତଜନର—ଜଗତ ଲୋକମାନଙ୍କର । ସଦ୍ରବକର—ତରଳତାକାରୀ । ବଂଶଯନ୍ତ୍ରଧର—ବଂଶୀଯନ୍ତ୍ରଧାରୀ । ଶ୍ରବଣଜନଙ୍କର—ଶୁଣିବା ଲୋକମାନଙ୍କର ଦମ୍ଭଭଞ୍ଜନ—ଧୈର୍ଯ୍ୟନାଶନ । ମନର ମଜ୍ଜନକାରୀ, ମନକୁ ମଜାଇ ଦିଏ ।

୧୯—ସ୍ୱରପ୍ରସରଣପ୍ରଚରଣ—ବଂଶୀଧ୍ୱନି ଶ୍ରବଣ ପ୍ରସ୍ତରରେ, ଅର୍ଥାତ୍ ବଂଶୀଧ୍ୱନିର ଯୋଗରେ ପଥର ପାଣି ହୁଏ । ମରଣ ଗଛ—ମଲା ଗଛ । ପଲ୍ଲବସ୍ୱଚ୍ଛ—କଅଁଳିଆ ପତ୍ରରେ ଶୋଭିପାଏ । ବସନ ସ୍ଖଳନ—ଲୁଗା ଫିଟିଯାଏ ।

ଜାତସ୍ତମ୍ଭିତସ୍ତା ପୟାଂସି ସରିତାଂ କାଠିନ୍ୟମାପେଦିରେ । ଗ୍ରାବାଣୋ ଦ୍ରବତ୍ୱବ ସମ୍ବଲନତଃ ସାକ୍ଷାଦମୀ ମାର୍ଦ୍ଦବମ୍ ॥ ସ୍ଥୈର୍ଯ୍ୟଂ ବେପଥୁନା ଜହୁର୍ମୁହୁରଗା ଜାଡ୍ୟାଦ୍‌ଗତିଂ ଜଙ୍ଗମା । ବଂଶୀ ଚୁମ୍ବିତ ହସ୍ତ ଯାମୁନତଟୀ ନୀଡ଼ାକୁଟୁମ୍ବେ ହରୌ ॥
ବି. ମାଧବ ।

୨୦—ତପନ—ସୂର୍ଯ୍ୟ । ପତଙ୍ଗ—ପକ୍ଷୀ । ସ୍ତମ୍ଭକର—ସ୍ତମ୍ଭନକାରୀ ଜଡ଼ ବା ନିଶ୍ଚଳ କରିଦିଏ । ମମ—ମୋର । ହୃତକର—ହରଣକାରୀ । ମନଜମନ୍ତ୍ର—କାମର ମନ୍ତ୍ର । ( ମନଜ—ମନୋଜ ) । ହୃତକର ସ୍ଥାନରେ ହତକର ପାଠ କରିବା ଉଚିତ (ଅବନା ନିୟମର ଅନୁରୋଧରେ) ।

୨୧—ଘଟ ଘଟକ କମଳଜ—ବ୍ରହ୍ମାଣ୍ଡ ଘଟଣାକାରୀ ବ୍ରହ୍ମା । ସଙ୍ଗ ସଙ୍ଘଟ—ସହବାସଘଟନା ବା ମିଳନକୁ । ବରଲମ୍ପଟ—ହେ ବଡ଼ ଲମ୍ପଟିସ୍ତା ଶ୍ରୀକୃଷ୍ଣ । ଅକ୍ଷମନର—ଆଖି ଓ ମନର । ସଙ୍ଘଟ—ବିବାଦ । ଭଞ୍ଜକର—ଭାଙ୍ଗି ଦିଅ,

ଜୟ ଶଙ୍କର ବର ଙ୍କେର ଦତ୍ତ ସଙ୍ଗତ କର ।
ବଲ୍ଲଭ-ପଦ-ସ୍ପର୍ଶ ସମ୍ପଦ ବର ଅମରଙ୍କର । ୨୨ ।
ମନ କଳ୍ପଇ ବଚ ଜଳ୍ପଇ ସତତ ଧରଧର ।
ଅସମ ଛନ୍ଦ ଅଙ୍କର ଧନ୍ଦ ଶ୍ରବଣ ଜନଙ୍କର । ୨୩ ।
ନନ୍ଦନନ୍ଦନ ଜଗବନ୍ଦନ ପଦଦ୍ୱନ୍ଦ୍ୱ ଯତନ ।
ମନ ସନ୍ତତ ସ୍ମରଣବନ୍ତ ଶକ୍ରଜସୁ ନନ୍ଦନ । ୨୪ ।

---

ଅର୍ଥାତ୍ ମନ ଆପଣଙ୍କୁ ଷବ ନଜକୁ ବଡ଼ କହୁଅଛୁ, କିନ୍ତୁ ଅକ୍ଷି କହୁଛୁ ରୂ ଯେତେ ସୁନ୍ଦର ଷବୁକୁ ସେ ସେପର ହୋଇ ନ ଥିବେ । ଅତଏବ ଆପଣ ଦେଖା ଦେଇ ସେ ଦୁହିଙ୍କର ବବାଦ ମେଣ୍ଟାଅ ।

୨୨—ହେ ଶଙ୍କରବର—ଶିବାଧିକ, ଅର୍ଥାତ୍ ଶିବଙ୍କଠାରୁ ବଡ଼, ଜୟଯୁକ୍ତ ହୁଅ । ଶଙ୍କର—ଶୁଭକର, ଅମରଙ୍କରବର—ଦେବତାମାନଙ୍କ ପ୍ରତି ଅନୁଗ୍ରହସ୍ୱରୂପ, ବଲ୍ଲଭପଦ ସ୍ପର୍ଶସମ୍ପଦ—ଅତିପ୍ରୀତିକର ପାଦ ଛୁଇଁବା ରୂପ ସମ୍ପତ୍ତିକୁ ଦତ୍ତସଙ୍ଗତ କର—ଯାଚ ଦେଇ ପ୍ରାପ୍ତ କରାଅ । ହେ ଶିବପୂଜ୍ୟ ତୁମ୍ଭର ପଦ ଛୁଇଁବା ହେଉଛୁ ଦେବତାଙ୍କର ବରପ୍ରାପ୍ତି, ତାହା ମଙ୍ଗଳଜନକ, ତାକୁ ଯାଚ-କର ଆମ୍ଭଙ୍କୁ ଦଅ ।

୨୩—ହେ ଧର ଧର—ଗୋବର୍ଦ୍ଧନଧାରୀ କୃଷ୍ଣ । ଅଙ୍କର—ମୂର୍ଖ ପକ୍ଷରେ । ଅସମ ଛାନ୍ଦ—ବିଷମ ଛନ୍ଦଣୀ ପର । ଶ୍ରବଣଜନଙ୍କର—ଶୁଣିଲା ଲୋକର, ଧନ୍ଦ—ଭ୍ରମ, ଶ୍ରମଜନକ, ଗୋଲକଧନ୍ଦା । ସତତ—ସର୍ବଦା । କଳ୍ପଇ—କଳ୍ପନା କରୁଛୁ, ଏବଂ ବଚ—ବାକ୍ୟ ଜଳ୍ପଇ—କହୁଅଛୁ ।

୨୪—ଜଗତ୍‌ପୂଜ୍ୟ ନନ୍ଦନନ୍ଦନଙ୍କ ପାଦଦ୍ୱୟରୁ ଯତନ (ଶୋଭାକୁ) ଶକ୍ରଜସୁନନ୍ଦନ (ଇନ୍ଦ୍ରଜିତ ସାସନ୍ତର୍ଫିହାରଙ୍କ ପୁତ୍ର, ଅଭିମନ୍ୟୁ ସାମନ୍ତର୍ଫିହାର) । ସନ୍ତତ—ସର୍ବଦା ସ୍ମରଣବନ୍ତ ହୁଏ—ସ୍ମରଣ କରୁଅଛୁ ।

ପ୍ରଥମ ଖଣ୍ଡ

ସ ମା ପ୍ତ

---

ମୁଦ୍ରାକର—ଶ୍ରୀ ଦିବାକର ମିଶ୍ର, ଗୋସ୍ୱାମୀ ପ୍ରେସ, କଟକ—୨ । ୧୯୬୫ ।